ଭକ୍ତ କବି ଅଚ୍ୟୁତାନନ୍ଦ ଦାସଙ୍କ କୃତ

# ସପ୍ତଖଣ୍ଡ ହରିବଂଶ

## ପ୍ରଥମ ଖଣ୍ଡ

ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର



ନୂତନ ମୁଦ୍ରଣ

ପ୍ରାପ୍ତିସ୍ଥାନ

ଧର୍ମଗ୍ରନ୍ଥ ଷ୍ଟୋର

ପ୍ରୋପ୍ରାଇଟର—ଶ୍ରୀ ବିଦ୍ୟାଧର ସାହୁ

ଅଲିଶା ବଜାର, କଟକ-୨

ଫୋନ୍ ନଂ—୨୪୭୯୭

ମୂଲ୍ୟ—ଟ୮-୦୦ଙ୍କା ଆଠଟଙ୍କା ମାତ୍ର

ସେଟ୍‌ର ମୂଲ୍ୟ ଟ ୬୦-୦୦ ( ବନ୍ଧାଇ ଖର୍ଚ୍ଚ ସ୍ୱତନ୍ତ୍ର ଲାଗୁହେବ )

# ସୂଚିପତ୍ର



ସମାପ୍ତ

# ସପ୍ତଖଣ୍ଡ ହରିବଂଶ

## ପ୍ରଥମ ଖଣ୍ଡ

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥

ଯଂ ବ୍ରହ୍ମା ବରୁଣେନ୍ଦ୍ରରୁଦ୍ରମରୁତଃ ସ୍ତୁନ୍ୱନ୍ତି ଦିବ୍ୟୈଃ ସ୍ତବୈ-
ର୍ବେଦୈଃ-ସାଙ୍ଗ ପଦକ୍ରମୋପନିଷଦୈର୍ଗାୟନ୍ତି ଯଂ ସାମଗାଃ ।
ଧ୍ୟାନାବସ୍ଥିତତଦ୍‌ଗତେନ ମନସା ପଶ୍ୟନ୍ତି ଯଂ ଯୋଗିନୋ
ଯସ୍ୟାନ୍ତଂ ନ ବିଦୁଃ ସୁରାସୁରଗଣା ଦେବାୟ ତସ୍ମୈ ନମଃ ॥

ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଲ୍ମଷଂ ।
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିଂ ॥

ତତ୍ରୈବ ଗଙ୍ଗା ଯମୁନା ଚ ତତ୍ର
ଗୋଦାବରୀ ତତ୍ର ସରସ୍ୱତୀ ଚ ।
ସର୍ବାଣି ତୀର୍ଥାନି ବସନ୍ତି ତତ୍ର
ଯତ୍ରାଚ୍ୟୁତୋଦାରକଥା ପ୍ରସଙ୍ଗଃ ॥

ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା ।
ଆଦୌ ଅନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ॥



### ବନ୍ଦନା

ବନ୍ଦଇ ଶ୍ରୀ ଗଣପତି ସୁଧାକରଧାରୀ
ସକଳ ବିଦ୍ୟାରେ ତୁମ୍ଭେ ଅଟ ଅଧିକାରୀ ।
ଅରୁଣ ବର୍ଣ୍ଣ ତୁମ୍ଭର ଶୋଭା ଗଜ ଶିର
ମନୋରଥ ଆସନ ତୋ ବାହନ ଇନ୍ଦୁର ।
ହସ୍ତୀର ବଦନ ତୋର ମନୁଷ୍ୟର କାୟା
ଅଗୋଚର ବୁଦ୍ଧି ତୋର ବିଶ୍ୱକୃତ ମାୟା ।
ତୋର ବୁଦ୍ଧିରେ ତ୍ରିପୁର ଦୈତ୍ୟ ଗଲା ନାଶ
ତେବେ ସୃଷ୍ଟି ହୋଇଲା ଏ ସଂସାର ବିଦଶ ।
ଦେବଙ୍କପରେ ଦେବାଧିଦେବ କୃଷ୍ଣ ସ୍ୱାମୀ
ତେଣୁ ଅଗ୍ରପୂଜ୍ୟ ତୋତେ କଲେ ହଂସଗାମୀ

ଅନାଦି ପୁରୁଷ ତୁମ୍ଭ ସଂସାର ବଢେଇତା
ପାର୍ବତୀ ନନ୍ଦନ ତୋର ସଦାଶିବ ପିତା ।
ପାଶ ଅଙ୍କୁଶ ତୁମ୍ଭର କରେ ଭଗ୍ନ ଦନ୍ତ
ଅନାଦି ପୁରୁଷ ତୋର ନାହିଁ ଆଦି ଅନ୍ତ ।
ବେଦଶାସ୍ତ୍ରର ସମ୍ପନ୍ନ ହୋଇଛୁ ତୋ ଦେଖି
ଭକତଜନ ସୋଦର ନାଥ କର ସାକ୍ଷୀ ।
ନଟ ନାଟକ ଆଦି ଯେ ବିଦ୍ୟା ଭିନ୍ନ ଭିନ୍ନ
ଧ୍ୟାନେ ଚିନ୍ତନ୍ତି ଯାହାକୁ ସଦା ଯୋଗୀଜନ ।
ତୁମ୍ଭେ ଯେ ଅନନ୍ତ କୋଟି ବ୍ରହ୍ମାଣ୍ଡ କାରଣୀ
ଯୋଗାଧିରୂଢ ପୁରୁଷ ପରଂବ୍ରହ୍ମ ସ୍ୱାମୀ
ଅନନ୍ତ ନାଗ ଶୋଭିତ ତୁମ୍ଭ ଜଟାଗ୍ରେ
ପରମାନନ୍ଦ ପୁରୁଷ ମନ ତୋର ଯୋଗେ ।
ଏ ଜଗତ ମଧ୍ୟରେ ତୁ ଅଟୁ ପ୍ରଭୁ ଶ୍ରେଷ୍ଠ
ବେଦ ବେଦାଙ୍ଗ ବିଦ୍ୟାରେ ଅଟୁ ତୁ ଗରିଷ୍ଠ
ଅନାଥ ଜନ ବାନ୍ଧବ ଜଗତ କାରଣ
ମହାବିଘ୍ନମାନଙ୍କର ଅଟୁ ବିନାଶନ ।
ତେଣୁ ବିଘ୍ନରାଜ ନାମ ଅଟଇ ତୋହର
ଏ ମାୟା ସଂସାରୁ ପ୍ରଭୁ ମୋତେ ତୁ ଉଦ୍ଧାର ।
ଏ ଘୋର ସଂସାରେ ପଡ଼ି ହେଉଛି ମୁଁ ବଣା
ତେଣୁ ବିଘ୍ନରାଜ ପାଦପଦ୍ମ କଲି ଠଣା ।
ବସ୍ତ୍ରର ମଣି ମାଣିକ୍ୟ ହୃଦକୁ ତୋ ଶୋଭା
ବର୍ତ୍ତୁଳ ଗଜ ମୁକୁତା ହାର ମନଲୋଭା ।
ନବରତନ ମେଖଳା ଘାଗୁଡ଼ି ଯେ ସାଜେ
ଧୀରେ ଧୀରେ ଗମନ୍ତେ ସେ ରୁଣଝୁଣ ବାଜେ
ପୃଥୁଳ ସୁନ୍ଦର କଳେବର ହରବଳା
ବୁଦ୍ଧିମନ୍ତ ଗୁଣବନ୍ତ ତେଜ ଅନର୍ଗଳା ।
ଜମ୍ବୁନଦୀ କଙ୍କଣ ତୋ ଶୋଭେ ବେଣିହସ୍ତେ
ଜନମ ମରଣ ବାଧା ନ ଲାଗଇ ତୋତେ ।
ସୁଜାଣ ଅତି ପଣ୍ଡିତ ଅଟନ୍ତି ଯେ ପ୍ରାଣୀ
ତୋ ପାଦ ପୂଜା କରନ୍ତି ଶୁଭବେଳ ଜାଣି ।
ଧର୍ମ ଅର୍ଥ କାମ ମୋକ୍ଷ ଯାର ସେବା ବିଧି
ମନୋବାଞ୍ଛା ପୂର୍ଣ୍ଣ ହୋଏ କାର୍ଯ୍ୟ ହୋଏ ସିଦ୍ଧି
ପୂର୍ବରେ ତୁମ୍ଭଙ୍କୁ ପୂଜା କଲେକ ବିରଞ୍ଚି
ତହୁଁ ସେହି ପରମେଷ୍ଠୀ ଜନ ଜନ୍ତୁ ସଞ୍ଚି ।
ତୁମ୍ଭଙ୍କୁ ପୂର୍ବରେ ପୂଜା କଲେ ମାରକଣ୍ଡ
ଜିଣିଲେ ପ୍ରଳୟଖଣ୍ଡ ଖଣ୍ଡି ଯମଦଣ୍ଡ ।
ତୁମ୍ଭଙ୍କୁ ପୂର୍ବରେ ସେବାକଲେ ସୁରପତି
ସ୍ୱର୍ଗେ ଇନ୍ଦ୍ରପଦ ପାଇ ହେଲେ ଶଚୀପତି ।
ଦିଗପାଳ ବରୁଣ ଯେ କଲେ ତୁମ୍ଭ ପୂଜା
ସପତ ବାରିନିଧିରେ ହେଲେ ମହାରାଜା ।
ତୁମ୍ଭଙ୍କୁ ଭକତି ପୂଜା କଲେକ କୁବେର
ଅଷ୍ଟନିଧିରେ ରହିଲା ତାଙ୍କ ଅଧିକାର ।
ଶୁକ ସନକ ଜନକ ଋଷି ଯେ ବଶିଷ୍ଠ
ତୁମ୍ଭ ସେବାରେ ଖଣ୍ଡିଲେ ସକଳ ଅରିଷ୍ଟ ।
ମାନବ ହୋଇ ଯେ ସେବା କରନ୍ତି ତୁମ୍ଭଙ୍କୁ
ଜୀବଥିବା ଯାଏ ଲକ୍ଷ୍ମୀ ନ ଛାଡ଼େ ତାହାକୁ ।
ଅଷ୍ଟ ଐଶ୍ୱର୍ଯ୍ୟ ନାଥ ତୁମ୍ଭେ ଦେଇପାର
ସଂସାର କରତା ନାଥ ମହିମା ଅପାର ।
ତୁମ୍ଭେତ ଅନାଦିନାଥ ତୁମ୍ଭେ ଅଟ ଆଦି
ଜଳ ସ୍ଥଳ ଅନଳକୁ ପାର ତୁମ୍ଭେ ଭେଦି ।
ତୁମ୍ଭ ମହିମା ଅନନ୍ତ ତାର ଅନ୍ତ ନାହିଁ
ମୁଁ କସ କହିବି ନାଥ ନରଦେହ ବହି ।
ତୁମ୍ଭେ ଦେବ ଲମ୍ବୋଦର ସକଳ କାରଣୀ
ଅନୁଗ୍ରହ କର ମୋତେ ବଜ୍ରଶିରୋମଣି ।
ତବ ପାଦପଦ୍ମେ ନିତ୍ୟ ଲାଗୁ ମୋର ସେବା
ଧନଦ୍ରବ୍ୟ ବିଦ୍ୟାବର ଯାଚି ମୋତେ ଦେବା
ସେବା କରିବା ଭଜନ ନୋହେ ମୁହିଁ କିଛି
ତୁମ୍ଭ ନାମ ଗୋଟି ହୃଦମଧ୍ୟେ ଧରୁଅଛି ।
ହରିବଂଶ ପୁରାଣ ମୋ କହିବାକୁ ଇଚ୍ଛା
ତୁମ୍ଭେ ଗଣନାଥ ଦିଅ ପ୍ରସନ୍ନେ ଏ ଭିକ୍ଷା ।
ତେବେ ସେ ବାଞ୍ଛା ମୋହର ହୋଇବାକ ସିଦ୍ଧି
ମୋହର କଣ୍ଠେ ବସିଣ କହିଦେବା ବୁଦ୍ଧି ।
ତୁମ୍ଭର ପ୍ରସନ୍ନେ ନାଥ କହି ଦିବ୍ୟ ବାଣୀ
ମହାପାତକ ବିନାଶ ହେବ ଯାହା ଶୁଣି ।
ତୁମ୍ଭେ ସ୍ୱାମୀ ଜାଣ ମୋର ଗତ ଜନ୍ମକଥା
ମାନବ ଜନ୍ମ ଲଭି ମୁଁ ପାଇଲି ଅବସ୍ଥା ।
ବିଷୟାଦିବନ୍ଧେ ପଡ଼ି ମୁଁ ପାଇଲଇଁ ଦୁଃଖ
ଶାପରୁ କାରଣ ମୋତେ କର ଗଜମୁଖ ।
ହରିବଂଶ ଲେଖିବି ମୁଁ ପୂର୍ବେ ଯା ବଖାଣି
ସାବଧାନେ ଆଜ୍ଞା ମୋତେ ଦେବା ପାଶପାଣି
ଭକ୍ତଜନ ଉଦ୍ଧାରନ୍ତା ସ୍ୱାମୀ ଚିନ୍ତାମଣି
ଗଲଇଦାନ ଭଣି ନାଥ ତେବଙ୍କ ଅଗଣି ।

ଭକ୍ତଜନଙ୍କର ନାଥ ଅଟୁ ପ୍ରାଣନାଥା
ପ୍ରସନ୍ନେ ଦେବାକ ନାଥ କଲ ବାଞ୍ଛା ଯାହା ।
ଜୟ ସର୍ବମଙ୍ଗଳା ଗୋ ଅଟୁ ମାୟାରୂପୀ
ଅନନ୍ତ କୋଟି ବ୍ରହ୍ମାଣ୍ଡଯାକ ଅଛୁ ବ୍ୟାପି ।
ଯେଉଁ ନାମ ସୁମରନ୍ତେ ହୋଏ ବାଞ୍ଛାସିଦ୍ଧି
ସୁନ୍ଦର ଶ୍ୟାମଳ ବର୍ଣ୍ଣ ଭବନାର ଔଧି ।
ଶୁଦ୍ଧ କର୍ମବାମୀ ତୁଗୋ ଶୁଦ୍ଧ ତୋର କାୟା
ଅଖିଳ ବ୍ରହ୍ମାଣ୍ଡ ମଧ୍ୟେ ଖେଳେ ତୋର ମାୟା
ସ୍ଥାବର ଜଙ୍ଗମ ମୂଳେ କୀଟାଦି ପତଙ୍ଗ
ଅବିକାର ବ୍ରହ୍ମ ତୁ ଗୋ ସକଳ ତୋ ଅଙ୍ଗ ।
ପୃଥିବୀ ଆପ ତେଜ ଯେ ବାୟୁ ଆକାଶ
ଏ ପଞ୍ଚଭୂତ ଯେନ ତୋ ସର୍ବ ଅଙ୍ଗେ ବାସ ।
ସ୍ୱେଦଜ ଆଦି ଯେ ଜୀବ ଅଟେ ଚାରିଖାନି
ପଞ୍ଚଭୂତ ଆତ୍ମାକୁ ତୁ ରଚିଲୁ ଗୋ ପୁଣି ।
ପିତାଙ୍କର ପିତା ତୁ ଗୋ ମାତାର ଜନନୀ
ଦିବସର ଜ୍ୟୋତି ତୁ ଗୋ ସୃଷ୍ଟିରେ ରଜନୀ
ଅସୁରଙ୍କ ଗର୍ବ ତୁ ଗୋ ଆପଣେ ନିବାରୁ
ପ୍ରକୃତି ରୂପରେ ତୁ ଗୋ ନାନାରୂପ ଧରୁ ।
ଜୟ ଜୟ ହରି ତବ ଅଗୋଚର ବୁଦ୍ଧି
ମୂଳମନ୍ତ୍ର ଆଦ୍ୟେ ତୁମ୍ଭ ନାମ ମହୌଷଧି ।
ଅକଳିତ ମାୟା ତବ କଳିତ ନୁହଇ
ଅବ୍ୟାହତ ଅଣାକାର ଅଟେ ତୁମ୍ଭ ଦେହି ।
ଋକ ଯଜୁ ସାମାଥର୍ବ ଏହି ଚାରିବେଦ
ଓଁକାର ସୁଷୁମ୍ନା ଜୀବ ପରମତ ଭେଦ ।
ବ୍ରହ୍ମବିଦ୍ୟା ଅଜପା ତୁ ଜପା ଯୋଗମାୟା
ବେଦ ମଧ୍ୟରେ ଓଁକାର ଅଟେ ତୋର କାୟା
ରୂପରେଖ ଆଦିବ୍ରହ୍ମ ତୋହର ତ ନାହିଁ
ମାନବ ଅବତାର ତୋ ମସ୍ତି ଭକ୍ତ ପାଇଁ ।
ନାମ ବନ୍ଧିଲେ ଅବଶ୍ୟ ରୂପେକ ପ୍ରକାଶ
ରୂପ ବନ୍ଧିଲେ ନଶ୍ୱର ଦେହ ଯାଇ ନାଶ ।
ତେଣୁ କରି ଆପଣାର ରୂପ ଅଛୁ ଧରି
କଳ୍ପନାରୁ ସଂସାରକୁ ଆତଯାତ କରି ।
ବ୍ରହ୍ମା ରୁଦ୍ର ଆଦିକରି ଦେବତାନ୍ତ କୋଟି
ଭୂଲୋକ ରଚନା କରି କରୁ ଏହି ସୃଷ୍ଟି ।
ଚାରିବେଦ ଷଡ଼ଶାସ୍ତ୍ର ନ୍ୟାୟ ବ୍ୟାକରଣ
ଜ୍ୟୋତିଷ ନାଟକ ଅଷ୍ଟାଦଶ ଯେ ପୁରାଣ ।

ଜ୍ୟୋତିଙ୍କର ଜ୍ୟୋତି ତୁମ୍ଭେ ଅକ୍ଷରର ଭାବ
ଜାଣ ବେଦ ପଞ୍ଚାଶ ଅକ୍ଷରର ଭାବ ।
ଅନୁଭବ ନାଥ ଆପେ କରୁ ସର୍ବସିଦ୍ଧି
ଏଥୁଁ ବାହାର ନ ଯାଇ ତୋର ମନ ବୁଦ୍ଧି ।
ସକଳ ପ୍ରାଣୀମାନଙ୍କୁ ହେଲେ ନିର୍ଭ କଲ
ଅକ୍ଷୟ ଜ୍ଞାନ ପ୍ରାଣୀଙ୍କି ଜ୍ଞାନରୂପେ ଦେଲ ।
ତୋହର ମହିମା ନାଥ ତୁହି ସିନା ଜାଣୁ
ବୋଲନ୍ତି ଅନନ୍ତ ମାୟାଧର ତୋତେ ତେଣୁ ।
ଅନେକ ମୂରତି ତୁମ୍ଭେ ଏ ସଂସାରେ ଧର
ପ୍ରକୃତି ଭେଦ ପ୍ରାଣୀଙ୍କି ଭିନ୍ନ ଭିନ୍ନ କର ।
ତୁମ୍ଭଠାରୁ ଏ ସଂସାରେ ନାହିଁ ଭିନ୍ନ କାୟା
ଜୀବଠାରୁ ବ୍ରହ୍ମଯାଏ ସବୁ ତୁମ୍ଭ ମାୟା ।
ଇନ୍ଦ୍ର ଆଦି ମହୀଧର ବାସୁକୀ ଦେବତା
କୋଟିରୂପଧାରୀ ତୁମ୍ଭେ ଜଗତ କରତା ।
ଲଞ୍ଚିତ ମାତ୍ର ତୁମ୍ଭଙ୍କୁ ନ ପାରିଲେ ଜାଣି
ମୁଁ କିଞ୍ଚିତ ମାତ୍ର ସିନା କ ଜାଣିବ ପୁଣି ।
ଅନେକ ଜନ୍ମ ଗଲଣି ଚଞ୍ଚଳ ମୋ ମତି
କିଛି ନ ଜାଣଇ ପାଠଶାଠ ବିଦ୍ୟାସ୍ଥିତି ।
ନ ପଢିଲି କାବ୍ୟ ଶାସ୍ତ୍ର ନ ଜାଣେ ପୁରାଣ
କେବଳ ପୂର୍ବ ହେତୁରୁ ହୋଇଲା ସ୍ମରଣ ।
ସୁଜନ ଗୋଷ୍ଠୀରେ ସଙ୍ଗ ନାହିଁ ମୋର ଜାଣ
ମାନବ ଯୋନିରେ ପୁଣି ଲଭିଛି ଜନମ ।
ପୂର୍ବ ଜନ୍ମ ହେତୁ ମୋତେ ହେଲା ଯହିଁ ଦୃଶ୍ୟ
ତେଣୁ ଗ୍ରନ୍ଥ କରିବାକୁ କଲଇ ସାହାସ ।
ସିଦ୍ଧ ବାକ୍ୟ ଶୁଣି ମୋର କଲାଇ ମନୀଷା
ଚଞ୍ଚଳ ଚିତ୍ତେ ମୁଁ ଏଣୁ କରିଛି ଭରସା ।
ବିଦ୍ୱଜ୍ଜନମାନଙ୍କର ଚରଣେ ମୋ ସେବା
ପଦ ଯତି ହୁଡ଼ିଲେ ମୋ ଦୋଷ ନ ଧରିବା
ଅଗାଧ ସାଗର ମୁହିଁ ଲେଉଟୁ ଅଛି ଭାସି
କେତେ କଥା ଦୃଶ୍ୟ ମୋତେ ହେଉଥିବ ଆସି
ପଦପଦ୍ମଙ୍କ ଅମୃତ ଏହୁ ବିବ୍ୟ ବାଣୀ
ପଣ୍ଡିତ ଲୋକଙ୍କଠାରୁ ଯାହା ଅଛି ଶୁଣି ।
ବେଦଜନନୀ ଶାରଦା ଦେବୀ ମହାମାୟା
ସେହି ଯୋଗ୍ଦ ମୋତେ କିଛି କରିବେ ସୁଦୟା
ବିଷ୍ଣୁ ବଲ୍ଲଭୀ ତୁ ଗୋ ଅଟୁ ମାହେଶ୍ୱରୀ
ସକଳ ବିଦ୍ୟାରେ ତୁହି ପୁଣି ଅଧିକାରୀ ।

କାବ୍ୟ ଯେ ନାଟକ ନ୍ୟାୟ ଶାସ୍ତ୍ର ବିଦ୍ୟାମାନ
ବେଦବେଦାଙ୍ଗ ରଚନା ଆଉ ଯେତେ ଜାଣ
ପୁରାଣ ଆଦିର ନାନା ଶାସ୍ତ୍ର ଜଉତିଷ
ଆଗମ ନିଗମ ତନ୍ତ୍ର ମନ୍ତ୍ରହିଁ ଅଭ୍ୟାସ ।
ଯାହାର କୃପାଏ ଏ ସବୁ ବିଦ୍ୟାମାନ ସାଧି ।
କର ଅନୁଗ୍ରହ ମୋତେ କୃପାଜଳନିଧି ।
ତାଳ ବୀଣା ଯନ୍ତ୍ର ଆଉ ଶୋଭିତ ତୋ କରେ
ଧ୍ୱନି କରନ୍ତି ଗାନ୍ଧାର ସଂଗ ଉଦ୍ୟସ୍ୱରେ ।
ଫରହର ଅଙ୍ଗେ ରଙ୍ଗେ ମୋହ ମହାମାୟା
ବିଦ୍ୟାଦାନ କର ମାତ କରି ମୋତେ ଦୟା
ଧବଳ ଅଙ୍ଗେ ଶୋଭିତ ସ୍ୱରୁ କୃଷ୍ଣ କେଶ
ନାନା କୁସୁମେ ମଣ୍ଡିତ ଗନ୍ଧ ଚଉପାଶ ।
ସ୍ୱଚର ଶୋଭିତ କେଶେ ଧନ୍ୟ ତୋ କବରୀ
ସିଂହ ଅଣାକାର କାୟା ଅଟ ମାହେଶ୍ୱରୀ ।
ବିଷ୍ଣୁ ଦେବ ପ୍ରଭୁଙ୍କର ଅଟୁ ତୁଗୋ ଜାୟା
ଧବଳ ଅଙ୍ଗୀ ଜନନୀ ସର୍ବଦା ନିର୍ମାୟା ।
ମୋହର ମାଗୁଣି ମାଗୋ ଏତିକ ତୋ ପାୟେ
ସୁପ୍ରସନ୍ନେ ଆଜ୍ଞା ମୋତେ ଦେବା ମହାମାୟେ
ମୋହର କଣ୍ଠେ ପ୍ରସନ୍ନ ହୁଅ ବିଷ୍ଣୁ ବାମା
କହିବି ମୁଁ ହରିବଂଶ ପୁରାଣ ମହିମା ।
ତୁମ୍ଭେ ଗୋ ଯେବେ ପ୍ରସନ୍ନ ହେବ ଜଗଦ୍ଧାତ୍ରୀ
ଖଣ୍ଡିବ ଦୁଷ୍ଟ ତମାନ ଲଭିବ ସୁମତି ।
ଘୋର ଅନ୍ଧାର ସଂସାର ମାୟା ମୋହ ବନ୍ଧ
ନରତେ ପାପ କରନ୍ତି ପ୍ରାଣୀମାନେ ମନ୍ଦ ।
ଅପବାଦ ଅହଲା ଯେ ହିଂସା ମନ୍ଦ କର୍ମ
ଏ ସବୁ ଜାଣ ଅଟଇ ସଂସାରିକ ଧର୍ମ ।
କହିବି ମୁଁ ହରିବଂଶ ପୁରାଣ ମହିମା
ତୁମ୍ଭେ ପ୍ରସନ୍ନ ହୋଇବ କରୁଣାର ସୀମା ।
କ୍ଲେଶ ଖଣ୍ଡି ଯଶ ଶିରୀ ନିଅ ସବଗତି
ଦୟାକରି ଖଣ୍ଡ ମୋର ଏ ଭବ ଦୁର୍ଗତି ।
ମାନବ ଜନମ ମୁଁ ତ ଗୁଡ଼ ନ ଘାଇଲ
ତେଣୁ ଏମାନ ମୁଁ ତୋତେ କହୁଛି ବୁଝାଇ ।
ଯେବା ପଣ୍ଡିତ ସୁଜାଣ ଜ୍ଞାନ ଭାଗ୍ୟବନ୍ତ
ମୋହ ବନ୍ଧନରେ ପଡ଼ି ନ ଜାଣି ତଦନ୍ତ ।
ଅକର୍ମ ସୁକର୍ମ ପାପ ପୁଣ୍ୟ ମୁଁ ଜାଣିଲି
ସଂସାର ଅଗାଧ ବୋଲି ତେଣୁ ମୁଁ ମଣିଲି ।

ସବୁ କଥା ଏକ କଲି ହରି ନାମ ଘୋଷି
ପାଇଲି ପରମଗତି ମାୟାକୁ ବିନାଶି ।
ଜ୍ଞାନୀଏ ଜାଣନ୍ତି ସିନା ଏଥିର ଯେ ସନ୍ଧି
ବିଷୟାରସରେ ସେହି କେବେ ନୋହେ ବନ୍ଦୀ
ସୁଜ୍ଞଜନମାନଙ୍କର ଅଟେ ମୁହିଁ ଦାସ
ବାଳକମତି ମୋହର ନ ଘେନିବା ଦୋଷ ।
ଜାଣି ନ ଜାଣି କହିବ ମୁହିଁ ହରି ବାଣୀ
ଅନେକ ଜନ୍ମ ପାତକ ଦହି ହେବ ଶୁଣି ।
ବିଷ୍ଣୁ ଚରିତ କେ ଅବା ବିସ୍ତାରି କହିବ
ପିମ୍ପୁଡ଼ି ପର୍ବତେ କି ଗିରି ଟେକାଯିବ ।
ଅକଳିତ ମହିମା ଏ ହରିବଂଶ କଥା
ସୁରଲୋକ ନ ଜାଣନ୍ତି ଜାଣେ ତଉମଥା ।
ସେ କଥା କହିବାକୁ ମୋ ବଳିଲା ମନାଷା ।
ଚଞ୍ଚଳ ଚିତ୍ତରେ ମୁହିଁ କରୁଛି ଭରସା ।
ଅଟନ୍ତି ଯେ ଭାଗ୍ୟବନ୍ତ ପୁଣ୍ୟବନ୍ତ ପ୍ରାଣୀ
ମୁକତି ବାଟ ଫିଟିବ ହରିବଂଶ ଶୁଣି ।
ଯୁକତେ ହରିର ନାମ ପାପ କରେ କ୍ଷୟ
ଯମଦଣ୍ଡ ବାଧାକୁ ନ ଥିବ ଆଉ ଭୟ ।
ତେଣୁ ସେ କଥା କହିବ ବଳିଲା ମନାଷା ।
ହସ୍ତରେ ବାନ୍ଧି ସମୁଦ୍ର ତରିବାକୁ ଆଶା ।
ଅନନ୍ତ କୋଟି ବ୍ରହ୍ମାଣ୍ଡେ ଯେତେ ଜନ୍ତୁ ଅବା
ବିଷ୍ଣୁଙ୍କର ପଦାମ୍ବୁଜେ କରି ସର୍ବେ ସେବା ।
ସେ ହରି ସବୁରି ଜୀବ ଆତ୍ମା ଯେ ଅଟଇ
ହରି ନିବେଦେ ସବୁରି ହୃଦୟରେ ଥାଇ ।
ହରିନାମରେ ପ୍ରାଣୀର ଦୁର୍ଗତି ଛୁଟଇ
ହରିନାମ ସୁମରିଲେ ଯମ ନ ଭେଟଇ ।
ହରି ଏକା ନିର୍ଦ୍ୱନ୍ଦ୍ୱ ଯେ ସବୁ ଜାଣ ଦ୍ୱନ୍ଦ୍ୱ
ତାଙ୍କୁ ଆଶ୍ରେ କଲି ପ୍ରାଣୀ ହେବେ କୁଟ ଛନ୍ଦ ।
ଅବିଦ୍ୟା ବିଦ୍ୟାକୁ ଆଦିକରି ଯେତେ ମନ୍ତ୍ର
ହରିନାମ ବିନା ଜାଣ ନାହିଁ କିଛି ତନ୍ତ୍ର ।
ସଂସାରରେ ହରିନାମ ଗୋଟି ସାରସ୍ୱତ
ହରି ଏହି ସଂସାରର ଅଟନ୍ତି ତାତ ମାତ ।
ଦେବଙ୍କ ଉପରେ ଦେବ ଅଧିଦେବ ହରି
ଯାଗଯଜ୍ଞ ପ୍ରଭୃତିରେ ଆଗ ତାଙ୍କୁ ବରି ।
ସକଳ ପାପ ପୁଣ୍ୟକୁ ହରି ଅଟେ ସାକ୍ଷୀ
ହରିର ନାମ ଜପଇ କପୋତ ଯେ ପକ୍ଷୀ ।

କର୍ମଫଳ ଅନୁକ୍ରମେ ହରେ ପାପବ୍ୟାଧି
ଏହି ସଂସାରକୁ ହରିନାମ ମହୌଷଧି ।
କୁବୁଦ୍ଧି ଅହଙ୍କା ମନ୍ଦପଣ ପାପକର୍ମ
ଏହା ଯେ ଆଚରନ୍ତି ସେ କରନ୍ତି ଅଧର୍ମ ।
ଘୋର ଅନ୍ଧାର ତମିର ଜାଣ ମହାଗରୁ
ହରିନାମ ଗୋଟି ଅଟେ ଇଷ୍ଟ କଳ୍ପତରୁ ।
ସୂତ ବଣ୍ଡବ ବଷସୂ ଉସେ ସବା ଋଷି
ପ୍ରାଣୀମାନେ ଧାଉଁଛନ୍ତି ନାହିଁ ଦବାଶି ।
ମହାରଜ୍ଜୁ ବନ୍ଧନରେ ଆବଦ୍ଧ ସକଳ
ରକ୍ତମାଂସ ଦେହ ଏ ନଥିବ ଚିରକାଳ ।
ବୃଷ୍ଟିହେଲେ କ୍ଷଣେ ଯେହ୍ନେ ଜଳେ ବିମ୍ବଗୋଟି
ତେସନ ପ୍ରକାରେ ଏହି ପଞ୍ଚପ୍ରାଣ ଗୋଟି ।
କହୁଛ କଷ୍ଟରେ ଜାଣ ଛାଡ଼ିବ ଏ ପ୍ରାଣ
ହରିନାମ ନ ଧଇଲେ ହେବ ଅକାରଣ ।
ଜାଣୁ ଜାଣୁ ପ୍ରାଣୀମାନେ ହେଉଛନ୍ତି ଗଞ୍ଜି
ଯମ ସେହି ଯାତନାକୁ ଲେଖି କରେ ପାଞ୍ଜି ।
ଅବସାନ କାଳେ ଜାଣ ହରିନାମ ସଖା
ଯମଧର୍ମ ବସୁରଣ କାଳେ ଥିବ ଏକା ।
ଜୀବଯିବାଯାଏ ପ୍ରାଣୀ ଅର୍ଜି ଥିବେ ଯାହା
ପୁଣି ଅବଶ୍ୟ ଜନମି ଭୁଞ୍ଜଇ ନା ତାହା ।
ମାୟାମୋହେ ପଡ଼ି ଲୋଭ ମୋହଗ୍ରସ୍ତେ ଜଡ଼ି
ଯଥାକାଳରେ ସେ ଏକା ହୋଏ ସବୁ ଛାଡ଼ି ।
ଇଷ୍ଟବନ୍ଧୁ କୁଟୁମ୍ବ ଯେ ଭାରିଯା ସନ୍ତତି
ଅବସାନ କାଳେ କେହି ନ ଥିବେ ତା କତି
ଯେ ଯାହାର ସେ ତାହାର ଆନ ନ ଭୁଞ୍ଜଇ
ମିଛମାହେ ପଡ଼ି ମହାଭବକୁ ବହଇ ।
ଭଲ ମନ୍ଦ ଯେତେକ ସେ ଅର୍ଜଇ ସଂଯୋଗେ
ଆପେ ତାହା ଏକାଭୁଞ୍ଜେ କେହି ନାହିଁ ସଙ୍ଗେ
ଏ କଥା ବିଚାରି ଯେହୁ ଧର୍ମେ କରେ ଲୟ
ଖଣ୍ଡିଣ ମହାପାତକ ହୋଏ ପୁଣ୍ୟମୟ ।
ହରିଙ୍କର ନାମ ବିନା କେହି ନାହିଁ ଶାଖା
ମହାନର୍ଘ ତରଣକୁ ନାମହିଁ ନଉକା ।
ହରିନାମ ଗୋଟି ଜାଣ ଅଟେ ପୁଣି ଧନ
ହରିନାମ ସୁମରନ୍ତେ ମିଳେ ପୁଣ୍ୟମାନ ।
ହରିନାମ ସୁମରନ୍ତେ ପୁଣ୍ୟହୋଏ ଯେତେ
ଜାଣିକରି ହରିନାମ ଉଚ୍ଚାରୁଛି ଚିତ୍ତେ ।

ଶୁଣ ସର୍ବ ଭକ୍ତଜନ ହୋଇ ଏକଚେତା
ଅଷ୍ଟାଦଶ ପୁରାଣ ଯେ କଳ୍ପକ ବିଧାତା ।
ବେଦଙ୍କର ଅର୍ଥତତ୍ତ୍ୱ ଦେବତାଙ୍କ କଥା
ପବିତ୍ର ହୁଅନ୍ତି ତାର ବକତା ଯେ ଶ୍ରୋତା ।
ପୁରାଣ ଭିତରେ ଶ୍ରେଷ୍ଠ ବିଷ୍ଣୁର ମହିମା
ଶୁଣନ୍ତେ ଯମ ଲଙ୍ଘି ନ ପାରେ ତାର ସୀମା
ହରିବଂଶ ଶ୍ରୋତା ଯମ ଅର୍ଗଳ ଭାଙ୍ଗଇ
ଯେ ପାପ ହୃଦରେ ଥାଇ ସକଳ ଖଣ୍ଡଇ ।
ହରିବଂଶ ଶୁଣି ନରେ ଖଣ୍ଡିବ ଯେ ମୃତ୍ୟୁ
ହରିବଂଶ ଶୁଣ ନରେ ମନେ କରି ହେତୁ ।
ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ଧାରା
ହରି କଥା ଶୁଣି ଭବୁ ଯିବ ଯେ ଉଦ୍ଧରି ।
ହରିବଂଶ ଶୁଣ ବଢିଯିବ ସବୁ ବୁଦ୍ଧି
ହରିବଂଶ ଶୁଣ ନରେ ବାଞ୍ଛା ହେବ ସିଦ୍ଧି ।
ରାଜଭୟ ଅଗ୍ନିଭୟ ଆଉ ସର୍ବଭୟ
ହରିବଂଶ ଶୁଣି ନରେ କର ସବୁ କ୍ଷୟ ।
ଶତକୋଟି ବାର ମଣିକର୍ଣ୍ଣିକାକୁ ଗଲେ
ସମାନ ନ ହେବ ହରିବଂଶ ଶ୍ରୋତା ତୁଲେ ।
ବ୍ରହ୍ମାଣ୍ଡରେ ବୁଲି ଯେତେ ତପ ତୀର୍ଥ କରି
କେହି ହରିନାମ ଶ୍ରୋତା ସଙ୍ଗେ ନୋହେ ସରି
ଏହା ବିଚାରିଣ ନରେ ହରିବଂଶ ଶୁଣ
ଧନପୁତ୍ର ବଢ଼ିବ ଯେ ଲଭିବ କାରଣ ।
ହରିନାମ କେବଳ ବେଦାନ୍ତ ଅଟଇ
ସଂସାର ମାୟା ବନ୍ଧନ ଶୁଣନ୍ତେ ଛୁଟଇ ।
ଅଚ୍ୟୁତାନନ୍ଦ ଦାସ ମୁଁ ସ୍ମରେ ଦୀନବନ୍ଧୁ
କର ଅନୁଗ୍ରହ ମୋତେ କୃପାଜଳ ସିନ୍ଧୁ ।

—):●:(—

## ମହାପ୍ରଳୟ ବର୍ଣ୍ଣନ

ଶୁଣ ଆହେ ସୁଜ୍ଞଜନେ ସୁଧାରସ ବାଣୀ
ଶୁକଙ୍କୁ ଯେ ପଚାରିଲେ ପରୀକ୍ଷ ନୃପମଣି ।
ହେ ମୁନିବର ହେ ତୁମ୍ଭେ ପରଂବ୍ରହ୍ମବେତ୍ତା
ଭୂତ ଭବିଷ୍ୟତ ବର୍ତ୍ତମାନ କାଳଜ୍ଞାତା ।
ଅଶେଷ ଶାସ୍ତ୍ର ପୁରାଣେ ପବିତ୍ର ତୋ ଅଙ୍ଗ ।
ଜୀବ ପରମ ଆତ୍ମାକୁ କର ଏକସଙ୍ଗ ।
ପଣ୍ଡିତମାନଙ୍କ ମଧ୍ୟେ ଅଟ ତୁମ୍ଭେ ଶ୍ରେଷ୍ଠ
ଅନାହତ ବ୍ରହ୍ମବେତ୍ତା ଆପଣେ ଗରିଷ୍ଠ ।

ଯଦୁକୁଳନନ୍ଦନ ତୁ ବିଦ୍ୟା ଗୁଣବନ୍ତ
ତୋଠାରୁ ହେ ମୁନି ସିନା ସକଳ ସିଦ୍ଧାନ୍ତ ।
ହେମୁନି ହେ ମୋତେ ତୁମ୍ଭେ ଅନୁଗ୍ରହ କର
କହିବା ଯେ ହରିବଂଶ ପୁରାଣର ସାର ।
ଅପୂର୍ବ କଥା ଗୋଟିଏ ହେ ମୁନି ପଚାରି
ପୁଣ୍ୟକାରୀ ମୁନି ଆହେ। କହିବା ବିସ୍ତରି ।
ହେ ବ୍ୟାସନନ୍ଦନ ମୋର ସନ୍ଦେହକୁ ଫେଡ଼
ତୁମ୍ଭର ପ୍ରସାଦେ ମୋର ଫିଟୁ କର୍ମଜଡ ।
ଯେ ବସ୍ତୁ ମାୟାରେ ଅଛି ସଂସାର ସକଳ
ଆଦ୍ୟଅନ୍ତ ମଧ୍ୟେ ତାର ନାହିଁ ଥଳକୁଳ ।
ଏ ସାରସ୍ୱତ ପୃଥ୍ୱୀକି କରନ୍ତି ଭିଆଣ
କାହାଯୋଗେ କବା ସେହି କହ ବିସ୍ତାରିଣ ।
କାହୁଁ ଅଇଲ ସେ ଜୀବ କାହିଁ ଯାଏ ଅନ୍ତେ
ଜାଣିବି ଛଦନ୍ତ ମୂର୍ତ୍ତି ତୁମ୍ଭର କହନ୍ତେ ।
ପାତାଳ ଯେ ମଧ୍ୟଲୋକ ସ୍ୱର୍ଗଲୋକ ତିନି
ସ୍ୱର୍ଲୋକ ଯେ ମହାଲୋକ ଜନଲୋକ ଘେନି ।
ସ୍ଥାବର ଜଙ୍ଗମ ଆଦି ଜୀବ ଚୁରିଖାନି
ସ୍ୱେଦଜ ଉଦ୍ଭିଜ୍ଜ ଅଣ୍ଡଜ ଜରାୟୁଜ ଘେନି ।
ନାଗଗଣ ଦେବଗଣ ଦିଗପାଳ ମୂଳେ
ବନକନ୍ଦର ଯେ ଗିରି ମେରୁ ଏ ସକଳେ ।
ଅନନ୍ତ କୋଟି ବ୍ରହ୍ମାଣ୍ଡେ ଛନ୍ତି ଯେତେ ଜୀବ
କାହୁଁ ଆସିଥିଲେ ପୁଣ କାହିଁ ସଂହରିବ ।
ଏଥିର ଯା ଆଦି ଅନ୍ତ କହ ତପୋଧନ
ହୋଇବି କୃତାର୍ଥ ଶୁଣି ତୁମ୍ଭର ବଚନ ।
ଏତେ କହି ମୁନିଙ୍କି ସେ ପାଦାସନ ଦେଲେ
ନବରତ୍ନମାଳା ନେଇ କଣ୍ଠେ ଲମ୍ବାଇଲେ
ଧୂପଦୀପ ଗନ୍ଧ ପୁଷ୍ପ ସ୍ୱର୍ଣ୍ଣପାତ୍ରେ ଭରି
ଯଥା ବିଧିମତେ ପୂଜା କଲ ଦଣ୍ଡଧାରୀ ।
ଶ୍ରୀଖଣ୍ଡ ଚନ୍ଦନ ଅଗ୍ରୁ ଧୂପ ଦୀପ ମୂଳେ
ଅନେକ ପୂଜା କରି ସେ ମୁନି ପାଦତଳେ ।
କରପତ୍ର ଯୋଡ଼ି ପୁଣି ଉଠି ଠିଆହୋଇ
କହୁଚି ବିନୟସ୍ୱରେ ସମସ୍ୟା ସେ ଦେଇ ।
ରାଜାଭକ୍ତିଭାବ ଦେଖି ଶୁକ ମହାସନ୍ତ
ପ୍ରସନ୍ନରେ କହନ୍ତି ସେ ଶଙ୍କରର ନାଥ ।
ଶୁଣ ହେ ପରୀକ୍ଷ ତୁମ୍ଭେ ପଚାରିଲ ଯାହା
ଅନୁଗ୍ରହେ ତୁମ୍ଭଙ୍କୁ ମୁଁ କହିବହିଁ ତାହା ।

ବିଶେଷ ବ୍ରହ୍ମାଣ୍ଡେ ଛନ୍ତି ଯେତେକ ଜନ
ହରି ଅଟନ୍ତି ସକଳ ପ୍ରାଣୀଙ୍କ ଜୀବନ ।
ହରିର ବଂଶ ପୁରାଣ ଅତି ପୁଣ୍ୟମୟ
ଶୁଣନ୍ତେ ପଞ୍ଚପାତକ ଯାକ ଯାଏ କ୍ଷୟ ।
ବଂଶାନୁଚରିତ ସୃଷ୍ଟି ସର୍ଜ୍ଜନା ଏ କଥା
ଶୁଣି ଜ୍ଞାନବନ୍ତ ହୁଅ ତୁମ୍ଭେ ମହାରଥୀ ।
ଶରୀର ବ୍ରହ୍ମାଣ୍ଡ ଏକ ନୁହେ ଭିନ୍ନାଭିନ୍ନ
ଶରୀରେ ଯେତେକ ସୃଷ୍ଟି ବ୍ରହ୍ମାଣ୍ଡେ ସେ ଜନ୍ମ
ଏଥିକି ଜାଣ ବିଧାତା କରିଛନ୍ତି ମାୟା
ପୃଥିବୀରେ ମାୟା ଧରି ଭିଆଇଛି ଏହା ।
ପୃଥିବୀ ଯେ ଆପ ତେଜ ବାୟୁବ୍ୟ ଆକାଶ
ପ୍ରାଣପାନ ବ୍ୟାନୋଦାନ ସମାନ ଅଭ୍ୟାସ ।
ପଞ୍ଚଭୂତ ପଞ୍ଚପ୍ରାଣ ବୋଲନ୍ତି ଜ୍ଞାନୀଏ
ହସ୍ତ ପଦ ପାୟୁପସ୍ଥ ମୁଖ କର୍ଣ୍ଣଯାଏ ।
ଚକ୍ଷୁ ଆଦି ଦଶ ଇନ୍ଦ୍ରି ମନରେ ସଂଯୋଗେ
ଏମନ୍ତ ଭିଆଇ ଅଛି ବ୍ରହ୍ମା ପୂର୍ବଯୋଗେ ।
ବିନୋଦ ବିନ୍ଦୁ ତହିଁ ଚଇତନ ମନମୋହ
ପଚିଶ ପ୍ରକୃତି ଘେନି ଆହୋରଚ୍ଛି ଦେହ
ଲୋଭ ମୋହ ଚେତନା ଏ ସର୍ବଶକ୍ତି ମୂଳେ
ଦେହକୁ ମୋହ କରନ୍ତି ଜାଣ ସବୁକାଳେ ।
ଏ ପଞ୍ଚ ମୂଳ ଏଥିରୁ ପଚିଶ ପ୍ରକୃତି
କୀଟରୁ ବ୍ରହ୍ମ ପର୍ଯ୍ୟନ୍ତେ ଶରୀରେ ଅଛନ୍ତି ।
ଏତେ ସଂଯୋଗେ ଉପୁଜେ ଜାଣ ଦେହଟିଗୋଟି
ଏକ ଏକ କରି ରଚିଅଛି ପରମେଷ୍ଠୀ ।
ମନ ପବନ ଦୁହେଁ ଏ ଦେହକୁ କାରଣୀ
ସବୁ ପ୍ରାଣୀଙ୍କ କାରଣ ପ୍ରଭୁ ଚକ୍ରପାଣି ।
ମନରୁ ଯେ କଳପନା ବିନ୍ଦୁ ରୂପ କାୟା
ପବନରୁ ବ୍ରହ୍ମଜ୍ଞାନ ଅନାଦିର ମାୟା ।
ମନରୁ ଜାତ ହୋଇଲା ପୁଣି ଜାଣ ସତ
ସତରୁ ଜାତ ହୋଇଲା ଜାଣ ଏ ଜଗତ ।
ବିନ୍ଦୁରୁ ଜାତ ହୋଇଲା ଜାଣ ତମ ଗୁଣ
ଜ୍ଞାନର ତତ୍ତ୍ୱ ଲକ୍ଷଣ ଏବେ ତୁମ୍ଭେ ଶୁଣ ।
ପୂରକ କୁମ୍ଭକ ପୁଣି ରେଚକ ଏ ତିନି
ପବନ ଊର୍ଦ୍ଧ୍ୱକୁ ଟେକି ଗ୍ରହିବ ଏ ଘେନି ।
ନିଶ୍ୱାସର ଫେରକୁ ଯେ ଲତା ବୋଲି କହି
ଷାଠିଏ ଲତାରେ ଜାଣ ଦଣ୍ଡେକ ବୋଲାଇ ।

ଏମନ୍ତେ ବେନି କଣ୍ଠରେ ଘଡ଼ିଏ ପ୍ରମାଣ
ସ୍ଥିର ଘଡ଼ିରେ ପ୍ରହରେ ବୋଲି ଏହା ଜାଣ ।
ଏମନ୍ତ ସ୍ଥିର ପ୍ରହର ଦୁଇଗୁଣ କରି
ସପ୍ତ ଦିବସ ସର୍ଜିଲ ବିଧାତା ବିସ୍ତରି ।
ଦିବସରେ ସୂର୍ଯ୍ୟଙ୍କର ରଶ୍ମିତେଜ ପ୍ରଭା
ନିଶାପତି ଚନ୍ଦ୍ରଙ୍କର ଆଭା ସହେ ଶୋଭା ।
ରବି ସୋମ ମଙ୍ଗଳ ଯେ ବୁଧ ବୃହସ୍ପତି
ଶୁକ୍ର ଶନିଶ୍ଚର ମୂଳେ ସାତବାର ସ୍ଥିତି ।
ନକ୍ଷତ୍ର ଯେ ସତାଇଶ ପନ୍ଦର ଯେ ତିଥି
ମାସକେ ହୁଏ ପୌର୍ଣ୍ଣମୀ ପୁଣି ସଙ୍କ୍ରାନ୍ତି ।
ପ୍ରତିପଦ ଦ୍ୱିତୀୟା ତୃତୀୟା ଚତୁର୍ଥୀ ପଞ୍ଚମୀ
ଷଷ୍ଠୀ ସପ୍ତମୀ ଅଷ୍ଟମୀ ନବମୀ ଦଶମୀ ।
ଏକାଦଶୀ ଦ୍ୱାଦଶୀ ଯେ ତିଥି ତ୍ରୟୋଦଶୀ
ଚତୁର୍ଦ୍ଦଶୀ ପଉର୍ଣ୍ଣମୀ ଅମାବାସ୍ୟା ନିଶି ।
କୃଷ୍ଣ ଶୁକ୍ଳ କରି ତହିଁ ବେନି ପକ୍ଷ କଲେ
ତିରିଶ ଦିନରେ ମାସେ ଗଣିଣ ଲେଖିଲେ ।
ଅଶ୍ୱିଣୀ ନକ୍ଷତ୍ର ଦ୍ୱିଜା କୃତ୍ତିକା ରୋହିଣୀ
ମୃଗଶିର ଆରଦ୍ରା ଯେ ପୁନର୍ବସୁ ତିନି ।
ପୁଷ୍ୟା ଅଶ୍ଳେଷା ଯେ ମଘା ପୂର୍ବାଫାଲଗୁଣୀ
ଉତ୍ତରଫାଲଗୁଣୀ ଆଉ ହସ୍ତା ଚିତ୍ରା ବେନି ।
ସ୍ୱାତି ବିଶାଖା ଏ ଦୁଇ ଅନୁରାଧା ଜ୍ୟେଷ୍ଠା
ପୂର୍ବା ଉତ୍ତରଷାଢ଼ା ଯେ ଶ୍ରବଣା ଧନିଷ୍ଠା ।
ଶତଭିଷା ପୂର୍ବାଭାଦ୍ରପଦ ଆଦି କରି
ଉତ୍ତରଭାଦ୍ର ରେବତୀ ଏ ବକ୍ଷ କୁମାରୀ ।
ତାର ଚନ୍ଦ୍ରଯୋଗ ଯେନି କରଣ ଆବର
ମେଷ ବୃଷଭ ମିଥୁନ କକଡ଼ା ମାସର ।
ସିଂହ କନ୍ୟା ତୁଳା ବିଚ୍ଛା ଧନୁ ଯେ ମକର ।
କୁମ୍ଭ ମୀନ ଯେନି ମାସ ଅଟଇ ଯେ ବାର ।
ଏ ପ୍ରକାରେ ବାରମାସେ ବାର ଚନ୍ଦ୍ର ବସେ
ବାର ମାସରେ ହୁଅଇ ଜାଣି ତ ବରଷେ ।
ବରଷକ ଭୋଗକରେ ଷଡ଼ଋତୁ ତୁଲେ
ଅୟନେକ ହୁଏ ଜାଣ ଷଡ଼ ମାସ ଗଲେ ।
ଅୟନେକ ପୁଣି ଷଡ଼ମାସରେ ହୁଅଇ
ଦକ୍ଷିଣାୟନ ଉତ୍ତରାୟଣ ଏହି ଦୁଇ ।
ହେମ ଶିଶିର ବସନ୍ତ ନିଦାଘ ବରଷା
ଶରତ ଋତୁକୁ ଯେନି ଷଡ଼ ଋତୁ ଦଶା ।

ଏମାନେ ଭୋଗ କରନ୍ତି ଦୁଇ ଦୁଇ ମାସ
ଷଡ଼ ଋତୁ ଭୋଗ ଶେଷେ ବରଷେକ ଶେଷ ।
କାଳାନ୍ତକ ଯୁଗାନ୍ତକ ଭୋଗାନ୍ତକ ଜାଣି ।
ବାରମାସେ ସାତବାର ଆଉସାତ ପୁଣି ।
ସତ୍ୟ ତ୍ରେତା ଦ୍ୱାପର ଯେ କଳି ଚାରିଯୁଗ
ଦିଗପାଳ ମାନଙ୍କର ଦିବସେକ ଭୋଗ ।
ମନ୍ୱନ୍ତରେ ଗଣ୍ଡାଏ ଯୁଗ ବୋଲି ଜାଣି ।
କାଳ ପ୍ରଳୟେ ମେରୁକୁ ହୁଏ ଆଣ୍ଟୁଆଣି ।
ଏହିପରି ଏକସ୍ତରୀ ଗଣ୍ଡା ଯୁଗ ଗଲେ
ବ୍ରହ୍ମାଙ୍କୁ ଘଡ଼ିଏ ହୁଏ ପୁରାଣେ ଲେଖିଲେ ।
ଏ ବିଧିରେ ବ୍ରହ୍ମାଙ୍କୁ ଯେ ତିରିଶ ଦିବସ
ମାସକ ହୁଏ କହିଲେ ମୁନି ବେଦବ୍ୟାସ ।
ଏ ବିଧି ମାସକୁ ଚାରିକୋଟି ଯାଇ ମନୁ
ଚାରି ସହସ୍ର କୋଡ଼ିଏ ବରଷେକ ଗଣୁ ।
ବ୍ରହ୍ମାର ଅଠର ଲକ୍ଷ ତିରିଶ ବରଷେ
ବ୍ରହ୍ମା ନାଶ ଯାଇ ଯାଣ ତାର କାଳଶେଷେ
ସୁରଲୋକ ସହିତରେ ସର୍ବେ ନାଶ ଯାନ୍ତି
ଶୂନ୍ୟ ପାତାଳପୁରରେ କେହି ନ ରହନ୍ତି ।
ଏଥୁ ଅନନ୍ତରେ ଘୋଟେ ପ୍ରଳୟର ଜଳ
ବ୍ରହ୍ମାଣ୍ଡ ବିନାଶ ଯାଏ ହୁଅଇ ଅଥଳ ।
ବ୍ରହ୍ମା ଦିବସେ ବିଷ୍ଣୁର ସପ୍ତେ ରୂପ ହୋଇ
ମତ୍ସ୍ୟ କଚ୍ଛପ ବରାହ ରୂପେ ବିସ୍ତରଇ ।
ନରସିଂହ ପର୍ଶୁରାମ ଶ୍ରୀରାମ ଜନତ
କୃଷ୍ଣ ବଉଦ୍ଧ କଳକି ଏ ଆଉ ବିଖ୍ୟାତ ।
ରିପୁ ଦାନବ ବିନାଶି ବ୍ରହ୍ମାଙ୍କ ଦିବସେ
ରାମାୟଣ ହରିବଂଶ ଭାରତ ପ୍ରକାଶେ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ବସନ୍ତି ଯେ ଲୋକେ
ସମସ୍ତେ ଅନ୍ତ ହୁଅନ୍ତି ବ୍ରହ୍ମାର ଅନ୍ତକେ ।
ଇନ୍ଦ୍ର ନଇର୍ଋତ ଦିଗପାଳ ଚନ୍ଦ୍ର ସୂର୍ଯ୍ୟ
ଏମାନେ ଯୋଗେ ବିନାଶ ଯାନ୍ତି ପାଇ କାର୍ଯ୍ୟ
ଗ୍ରହ ତାରା ସହିତରେ ଋଷି ଯକ୍ଷଗଣ
ବ୍ରହ୍ମାର ଦିବସେ ସର୍ବେ ନାଶଯାନ୍ତି ପୁଣ ।
ସପତ ସାଗର ନବଦ୍ୱୀପ ଜଳମୟେ
ଏମନ୍ତେ ବ୍ରହ୍ମାର ଭୋଗ ଦିବସେକ ଯାଏ ।
ଯେତେବେଳେ ମହାଜଳ ପୃଥିବୀ ଘୋଟଇ
ଜଳ ଆଘାତେ ପୃଥିବୀଯାକ ବୁଡ଼ିଯାଇ ।

ଗର୍ଜି ବହେ ଅଣଆଶ ମୁରଣ୍ଡ ପବନ
ପ୍ରଚଣ୍ଡ ଘୋରଅନଳ ଉଠେ ଘନ ଘନ ।
ଆବର୍ତ୍ତିକ ମେଘ ପୂର୍ବ ଆଡ଼ୁଁ ଘୋଟଇ
ପଞ୍ଚଶ କ୍ଷଉଣୀ ବଳ ତା ସଙ୍ଗେ ଖଟଇ ।
କ୍ଷୀର ସମୁଦ୍ରରୁ ସେହି ବରଷଇ ନୀର
ନିରତେ ପ୍ରଳୟ ଜଳ ବହଇ ସତ୍ୱର ।
ପର୍ବତମାନ ଘର୍ଷଣ କରେ ଏକସ୍ଥଳ
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ କରେ ସମତୁଲ ।
କୀଟ ପତଙ୍ଗ ଆଦି ଯେ ନ ରହି କଣ୍ଟକ
ସମସ୍ତେ ପ୍ରଳୟ ଜଳେ ଦୁଅନ୍ତି ନିହତ ।
ଭୂଲୋକକୁ ଆଦି କରି ସ୍ୱର୍ଗଲୋକ ଯାଏ
ସପ୍ତ ଦ୍ୱୀପା ପୃଥିବୀ ଶୂନ୍ୟମୟ ହୋଏ ।
ଆବର୍ତ୍ତିକ ସମ୍ବର୍ତ୍ତିକ ଦ୍ରୋଣ ଯେ ପୁଷ୍କର
ଘୋରମେଘ ଘୋଟି ଆସି ହୋଏ ଏକାକାର ।
ଅବନାଶୀ ମେଘମାନେ ହୋଇ କାମରୂପୀ
ସପତ ଭୁବନ ଯାନ୍ତି ନିମିଷକେ ବ୍ୟାପି ।
ଅନେକ ପ୍ରକାରେ ମେଘ ତାହାଙ୍କୁ ଖଟନ୍ତି
ଏକୁ ଏକ ମେଘ ମହା ଯୋଦ୍ଧା ଯେ ଅଟନ୍ତି ।
କୋଟି ୨ ସମୁଦ୍ର ସେ ଶୋଷି ଏକେ ଏକେ
ଜଳପ୍ରମାଣେ ପେଷନ୍ତି ଘୋଟି ସପ୍ତଲୋକେ ।
ସମସ୍ତ ମେଘମାଳ ଯେ ଏକମୁଖ ହୋଇ
ଧାମନ୍ତି ଆକାଶ ମାର୍ଗେ ଜଳକୁ ଆବେଷ୍ଟି ।
ଭୟଙ୍କର ଘଡ଼ଘଡ଼ି ଶବଦ ତଡ଼ିତ
ଝଟ ଝଟ ଝଜୁଳର ଝଜୁର ନିର୍ଘାତ ।
ମରୁତ ନାମେ ପବନ ବହେ ମହାଘୋର
ଆବର୍ତ୍ତିକ ପୂର୍ବଦିଗ କରଣ ଅନ୍ଧାର ।
ପଚାଶ ଯେ ଅକ୍ଷୌହିଣୀ ସଇନ ସଙ୍ଗତେ
କ୍ଷୀର ସମୁଦ୍ରରୁ ନୀର ବରଷେ ନିରତେ ।
ଦ୍ରୋଣ ମେଘ ଯେ ଦକ୍ଷିଣ ଦିଗକୁ ଘୋଟଇ
ତେଇଶି କ୍ଷଉଣୀ ବଳ ତାର ସଙ୍ଗେ ଥାଇ ।
ଘୃତ ସମୁଦ୍ର ନିକଟେ ବରଷନ୍ତି ନୀର
ବହନ ନାମେ ପବନ ବହେ ନିରନ୍ତର ।
ପୁଷ୍କର ମେଘ ପଶ୍ଚିମ ଦିଗର ଯେ ରଜା
ଦଶ ଅକ୍ଷୌହିଣୀ ବଳ ଏହାର ପରଜା ।
ସମୀର ନାମେ ପବନ ବହେ ମହାବଳ
ଇକ୍ଷୁନାମେ ସମୁଦ୍ରରୁ ବରଷଇ ଜଳ ।

ମହାଘୋର ନାଦ କରି ବରଷନ୍ତି ପାଣି
ପବନ ବହେ ପ୍ରଳୟ ବେଳ କାଳ ଜାଣି ।
ଶୂନ୍ୟଲୋକ ଆଦି କରି ବ୍ରହ୍ମାଣ୍ଡ ଯେ ବୁଡୁ
ବରଷନ୍ତି ମେଘମାନେ ଯେ ଯାହାର ବାଞ୍ଛା ।
ନିରନ୍ତରେ ବରଷନ୍ତି ରହି ସପ୍ତ ଲୋକେ
ସ୍ୱର୍ଗ ଭୁବନେ ନ ଥାନ୍ତି ଆଉ ଦେବଲୋକେ
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଏ ସରି
ଓଁକାର ମୂଳ ମନ୍ତ୍ରରେ ଶିଶୁବେଦେ ଭରି ।
କୀଟପତଙ୍ଗ ପ୍ରଭୃତି ଜୀବଜନ୍ତୁ କେହି
ଦେହଧାରୀ ହୋଇ ତହିଁ ଜଣେହେଁ ନ ଥାଇ
ବ୍ରହ୍ମାର ଆୟୁଷବେଳେ ଏତେ ନାଶଯାନ୍ତି
ଶୂନ୍ୟଲୋକ ପର୍ଯ୍ୟନ୍ତେକ ଗୋଟିଏ ନଥାନ୍ତି
ସେତେବେଳେ ଏ ପୃଥିବୀ ହୁଏ ଜଳମୟେ
ମୟୂର ଚଡ଼ିଣ ବ୍ରହ୍ମ ସହସ୍ରେ ବର୍ଷ ଯାଏ ।
ଶୂନ୍ୟସ୍ଥଳେ ଭ୍ରମୁଥାଇ ବିଶ୍ରାମହିଁ ନାହିଁ
ଜଳପ୍ଳବନେ ବ୍ରହ୍ମାଣ୍ଡ ଯହୁଁ ନାଶଯାଇ ।
ବ୍ରହ୍ମସ୍ଥଳେ ହେଲେ ଜଳ ମର୍ତ୍ତ୍ୟଲୋକେ ଲାଗେ
ନିରଞ୍ଜନ ଦେବତାର ପୁର ସୁରଦିଗେ ।
ମହାଭୟଙ୍କର କଳ କଳ ନାଦ କରି
ନିରଞ୍ଜନ ଦେବତାର ଆସନକୁ ଘେରି ।
ତହୁଁ ପେଇ ଅଧହେଲେ ବହେ ଯୁଗପତି
ବ୍ରହ୍ମାଆଦି କରି କେହି ଜାଣେ ନାହିଁ ବର୍ତ୍ତି ।
ଧ୍ରୁବଲୋକ ପର୍ଯ୍ୟନ୍ତେ ଲାଗିଅଛି ଜଳ
ଅନଳ ଶିଖା ଭେଦନ୍ତି ଆକାଶ ମଣ୍ଡଳ ।
ଏ ଅବଧିରେ ସଦାଶିବ ସହସ୍ର ବର୍ଷ ବର୍ତ୍ତି
ବୃଷଭ ଆରୋହି ଶୂନ୍ୟ ମଣ୍ଡଳେ ଭ୍ରମନ୍ତି ।
ଏହିରୂପେ ତିନିକୋଟି ଯୁଗମାନ୍ତୁ ଗଲେ
ଈଶ୍ୱର ଦେବତାଙ୍କୁ ଯେ ଧ୍ୟାନେହୋଏ ଭଲେ
ରୁଦ୍ରପ୍ରଳେ ସୃଷ୍ଟି ନାଶଯାଇ ଯେତେବେଳେ
ପହଁରୁଥାଇ ସେ ନିରଞ୍ଜନ ଦେବ ଜଳେ ।
ପରମବ୍ରହ୍ମ ରୂପକୁ ଧରି ଦେବ ସ୍ୱାମୀ
ମହାର୍ଣ୍ଣବ ଜଳେ କ୍ରୀଡ଼ାକରେ ଅନ୍ତର୍ଯ୍ୟାମୀ ।
ଅଶୀ କୋଟିକଳ୍ପ ଯାଏ ପହଁରଇ ଏକା
ପରମ ଆତ୍ମା ବ୍ୟତେକେ କେହି ନାହିଁ ଶାଖା ।
ଏହି ରୂପରେ ଅନେକ କାଳ କଳ୍ପ ଯାଇ
ନିରଞ୍ଜନ ଦେବତାଙ୍କୁ ବରକ୍ଷକ ହୋଇ ।

ନିରଞ୍ଜନ ଦେବତାର ଯେତେକ ଆୟୁଷ
କାଳସମାପତ ହେଲେ ସେହୁ ଯାନ୍ତି ନାଶ ।
ନିରଞ୍ଜନ ଦେବତାର ଆୟୁଷ ତୁଟଇ
ନିରାକାର ଦେବତାଙ୍କୁ ସଙ୍ଗରେ ଭେଟଇ
ନିରାକାର ପୁରୁଷର ଆକାର ତ ନାହିଁ
ତାହାର ଭେଟ କେମନ୍ତେ ନିରଞ୍ଜନ ପାଇ ।
ନିରାକାର ଆଶ୍ରା କରି ନିରଞ୍ଜନ ହରି
ନିରଞ୍ଜନ ସ୍ଥଳେ ବିଷ୍ଣୁ ପୁରେ ଜଳ ଘେରି ।
ଗରୁଡ଼ ଉପରେ ବସେ ଦେବ ନିରାକାର
ପରମ ଶୂନ୍ୟମଣ୍ଡଳେ କ୍ଷେପେ ଖଗବର ।
କାଳ କାମ ନିଦ୍ରା ଯହିଁ ତିନହେଁ ନ ଥାନ୍ତି
ସତୁରି ଯୋଜନ ମୋଟ ଗରୁଡ଼ ବହନ୍ତି ।
ସେ ମହାପୁରୁଷ ବିଜେ ବିଷ୍ଣୁ କଳା ବହି
ଲୀଳା କରୁଥାନ୍ତି ଆପେ ହୋଇ ଜଳଶାୟୀ ।
ଏ ଅନୁକ୍ରମେ ଅନେକ କୋଟି ଯୁଗଗଲା
ସମୟେ ନାରାୟଣଙ୍କୁ ଗରୁଡ଼ ପୁଚ୍ଛିଲା ।
ଶ୍ରୀଦେବ ହେ ନାରାୟଣ ତୁମ୍ଭେ ମୋର ସ୍ୱାମୀ
ସର୍ବଭୂତେ ଆତ୍ମା ତୁମ୍ଭେ ଶୈଳ ଅନ୍ତର୍ଯ୍ୟାମୀ
ବିଷ୍ଣୁଲୋକ ପର୍ଯ୍ୟନ୍ତେ ଘୋଟିଲା ଏ ଜଳ
ଚତୁର୍ଦ୍ଦଶ ଲୋକେ ନାଶ ଗଲେଣି ସକଳ ।
ଅନନ୍ତ କୋଟି ବ୍ରହ୍ମାଣ୍ଡେ ଜଳପୂର୍ଣ୍ଣ ହୋଇ
ରହିବାକୁ ଆଉ କାହିଁ ସ୍ଥଳେ ଠାବ ନାହିଁ ।
ସ୍ଥାବର କୀଟ ପତଙ୍ଗ କେହୁ ନାହିଁ ବର୍ତ୍ତି
ସଂସାର ଯାକ ହୋଇଲା ସବୁ ଏକମୂର୍ତ୍ତି ।
ସ୍ୱାମୀ ପୃଥ୍ୱୀ ନାଶଗଲା ହେଲା ଜଳମୟ
ଜଳନାଶ ଯାନ୍ତେ ଦେଖ ହୋଇ ଅଗ୍ନିମୟ ।
ଅନଳ ନାଶ ଯାଇଣ ଘୋଟିଲା ପବନ
ପବନ ନାଶ ଯାଆନ୍ତେ ନିରାକାର ଶୂନ୍ୟ ।
ଶୂନ୍ୟର ଉପରେ ସ୍ୱାମୀ ଉଡ଼ୁଅଛୁ ମୁହିଁ
ପିଠିରେ ମୁଁ ବିଶ୍ୱମହାଭାର ଅଛି ବହି ।
ଚଳି ନ ପାରଇ ଦେବ ମହାଭାର ପାଇ
ଅଶକତ ହେବାରୁ ମୁଁ ଶ୍ରୀମୁଖରେ ଜଣାଇ ।
ଗରୁଡ଼ ବଚନ ଶୁଣି ନାରାୟଣ ସ୍ୱାମୀ
ଅନେକ ପ୍ରକାରେ ଦୟା କଲେ ଅନ୍ତର୍ଯ୍ୟାମୀ ।
ବିଶ୍ୱରୂପ ଧରି ସ୍ୱାମୀ ବିସ୍ତାରିଲେ କାୟା
ଗରୁଡ଼ ନ ଜାଣଇ ସେ ବିଶ୍ୱକୂଟ ମାୟା ।
ବିଷ୍ଣୁର ଗର୍ଭ ଭିତରେ ପକ୍ଷୀ ଅଛି ବସି
ସକଳ ସଂସାର ବିଷ୍ଣୁ ଉଦରେ ପ୍ରକାଶି ।
ବ୍ରହ୍ମାଙ୍କୁ ସେ ଆଦି କରି ଦଶଦିଗପାଳେ
ହିମବନ୍ତ ଗରଭରେ ଅଛନ୍ତି ସକଳେ ।
ଅଷ୍ଟକୋଟି ଗିରିବର ଚନ୍ଦ୍ର ଦିବାକର
ଅଷ୍ଟନାଗ ସତାଇଶ ନକ୍ଷତ୍ର ଆଦିର ।
ମାଳଗିରି ବିନ୍ଧ୍ୟଗିରି କୈଳାସ କନ୍ଦର
ମହେନ୍ଦ୍ର କନ୍ଦର୍ପ ବିନ୍ଧ୍ୟମାଳ ଗିରିବର ।
ଚନ୍ଦ୍ରସୂର୍ଯ୍ୟ ତାରକାର ଆତଯାତ ତହିଁ
ସପତ ସମୁଦ୍ର ନଦୀମାନେ ଯାନ୍ତି ବହି ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଏ ସ୍ଥିର
ଓଁକାର ମୂଳ ସାବିତ୍ରୀ ମନ୍ତ୍ର ଆଦି କରି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳର ଯେତେ କୀର୍ତ୍ତି ତହିଁ
ଦେଖିଲା ବିଷ୍ଣୁର ଗର୍ଭେ ସବୁ ଅଛି ରହି ।
ସୃଷ୍ଟିକି ପ୍ରଳୟ କାଳେ ଅଛନ୍ତି ସଂହରି
ପୁଣି ସେ ସ୍ଥାପିବେ ବୋଲି ଗର୍ଭେଛନ୍ତି ଭରି
ଏସନେକ ରୂପ ଦେଖି ବିନତା ତନୟ
ନିଶ୍ଚିନ୍ତେ ତହିଁ ରହିଲା ଗୁଡ଼ ସବୁ ଭୟ ।
ବିଷ୍ଣୁ ଗର୍ଭେ ପାଶୋରିଲା ସବୁ ପକ୍ଷୀରାୟେ
ଏଥୁ ଅନନ୍ତରେ ଶୁଣ ପରୀକ୍ଷିତ ରାୟେ ।
ହରିବଂଶ ପୁରାଣ ତୁ ଶୁଣି ମୋକ୍ଷ ହୁଅ
ସକଳ ପାତକ ତୋର ଦେହୁ ଯାଉ କ୍ଷୟ ।
ଯାହା ଶୁଣନ୍ତେ ହୁଅଇ ସ୍ୱର୍ଗକୁ ନିଶାଣୀ
ଅଳପଙ୍କେ ହୋଏ ଜାଣ ଯମଦଣ୍ଡ ଜିଣି ।
ସୃଷ୍ଟିପ୍ରଳୟ କଥାଏ ଅସମ୍ଭବ ବାଣୀ
ସାବଧାନ ହୋଇ ଶୁଣ ଆହେ ନୃପମଣି ।
ଯେବଣ ଜନେ ଶୁଣନ୍ତି ପ୍ରଳୟର କଥା
ରୋଗଶୋକ ବ୍ୟାଧିଖଣ୍ଡେ ସର୍ବ ମନୋବ୍ୟଥା
ଭୁଞ୍ଜଇ ବିପୁଳ ଲକ୍ଷ୍ମୀ ମନର ସ୍ୱଇଛା
ଧନ ଜନ ଗୋପଲକ୍ଷ୍ମୀ କଲ୍ପେ ଯେବେ ବାଞ୍ଛା
ଜୟ ନୀଳାଚଳନାଥ ନୀଳାଦ୍ରି ବିହାରୀ
ଅବତାର ବ୍ରହ୍ମ ତୁମ୍ଭେ ପ୍ରାଣ ଅଧିକାରୀ ।
ଯୋଗିଜନମାନଙ୍କର ଅଟ ଆଦିମୂଳ
ତୁମ୍ଭ ରୂପ ରେଖ ବର୍ଣ୍ଣ ନାହିଁ ଶୂନ୍ୟଠୁଳ ।
ବେଦଙ୍କର ଶାଖା ତୁମ୍ଭେ ବେଦଙ୍କର ଆତ୍ମା
ତୁମ୍ଭେ ସେ କର୍ମ ଅକର୍ମ ଅଟ ମହାତ୍ମା ।

ଅଖିଳ କୋଟି ବ୍ରହ୍ମାଣ୍ଡେ ତୁମ୍ଭ ଖେଳରଙ୍ଗ
ଜୀବଆତ୍ମା ଜ୍ୟୋତି ତୁମ୍ଭେ ପରଆତ୍ମା ସଙ୍ଗ ।
ନୀଳ ଇନ୍ଦୀବର ପୁଷ୍ପ ପ୍ରାୟ ଶୋଭା ଦେହି
ତୁମ୍ଭ ଆଦ୍ୟ ଅନ୍ତ ମଧ୍ୟ ନ ଜାଣନ୍ତି କେହି ।
ଦେବଙ୍କ ଉପରେ ତୁମ୍ଭେ ଅଟ ଦେବ ହରି
ଶରଣପଞ୍ଜର ନାଥ ତୁମ୍ଭେ ଦେହଧାରୀ ।
କର ଚରଣ ନାସିକା ବହ ମୁଖ କର୍ଣ୍ଣ
ପଞ୍ଚଇନ୍ଦ୍ରି ତ୍ୟାଗୀ ତୁମ୍ଭେ ହୁଅ ଏକବର୍ଣ୍ଣ ।
ବିକଚ ପଦ୍ମ ପତ୍ରାୟ ତୁମ୍ଭ ବେନି ଆଖି
ଅନେକ ଜନ୍ମ ପାତକ ଖଣ୍ଡେ ଯାହା ଦେଖି ।
ଜଗତକଳୁଷ ପ୍ରଭୁ ତୁମ୍ଭେ ଗଙ୍ଗାଧର
ନୀଳମେଘରେ ଯେସନ ଶୋଭା ତଡ଼ିତର ।
ଲଲାଟେ ଶୋଭିତ ଚିତା ଶୋହେ ଶଙ୍ଖବର୍ଣ୍ଣ
ରତ୍ନ ରେଖାର ତିଳକ ଗୋଟି ଶୋଭାବନ ।
ବିସ୍ତାର ତୋ ଭୁଜଦଣ୍ଡ ସଂସାର ଆରମ୍ଭ
ତୋ ଯେଣୁ ସିନା ସର୍ଜିଲ ବ୍ରହ୍ମା ଏହି ଭବ ।
ବିସ୍ତାର ତୁମ୍ଭ ହୃଦୟ ଭବଭର ପୃଥ୍ୱୀ
ସଂକୀର୍ଣ୍ଣ ତୋ ମଝା କି ସେ ହରିର ଆକୃତ ।
ଦକ୍ଷିଣରେ ବଳଭଦ୍ର ମଧ୍ୟରେ ସୁଭଦ୍ରା
ଆପେ ତିନିରୂପ ହୁଅ ଯେଣୁ ଯୋଗମୁଦ୍ରା ।
ଅଗ୍ନିକୋଣେ ମହୋଦଧି କୋଣାରକ ତଟେ
ବିଜୟ ଶ୍ରୀ ଜଗନ୍ନାଥ କଳ୍ପ ବଟପୃଷ୍ଠେ ।
ବ୍ରହ୍ମା ଇନ୍ଦ୍ର ଆଦିକରି ଦେବ ତ୍ରିପୁରାରି
ସକଳ ଦେବତା ତୋତେ ଥାନ୍ତି ସେବାକରି
ଦେବଙ୍କ ଭକତ ଯେଣୁ ଶରାନନ୍ଦରୂପୀ
ସକଳ ପ୍ରାଣୀଙ୍କି ତୁମ୍ଭେ ହୃଦେ ଅଛ ବ୍ୟାପି ।
ଦାରେ ଦେଖିଲେ ସ୍ୱାମୀଙ୍କି ପାପ ଯାଇ ନାଶ
କାଳ କାମ ମୋହ ଯାଇ ଫିଟେ କାଳଫାଶ ।
ନମସ୍ତେ ହେ ଜଗନ୍ନାଥ ସକଳ କାରଣ
ନମସ୍ତେ ହେ ଜଗନ୍ନାଥ ତୁଳସୀରମଣ ।
ଯେଉଁ ପାଦପଦ୍ମ ବ୍ରହ୍ମା ନପାଇଲେ ଲେଶ
ସେହି ପାଦପଦ୍ମେ ଥାଉ ମୋହର ଯେ ଆଶ
ସେହି ପାଦପଦ୍ମ ନଟେ ସଦାଜୟ ଘୋଷ
ଜଗନ୍ନାଥ ପାଦ ସେବେ ଅଚ୍ୟୁତାନନ୍ଦ ଦାସ ।

—୦—

## ସୃଷ୍ଟି ପ୍ରକରଣ

ଏଥୁଅନ୍ତେ ପରୀକ୍ଷିତ ନାମେ ମହାରାଜା
ଶୁକମୁନିଙ୍କ ଚରଣେ କଲେ ଅର୍ଘ୍ୟପୂଜା ।
ହେମୁନି ପ୍ରଳୟ କଥା କହିଲ ମୋ ଆଗେ
ସଂସାର ସମ୍ଭବ ପୁଣ ହେଲା କେଉଁ ବାଗେ ।
ସେକଥାଗୋଟି ମୋ ଆଗେ କହ ତପୋବନ୍ତ
ଶୁଣିଲେ ପାତକମାନ ହୋଇବ ନିହତ ।
କହନ୍ତି ଯେ ଇଦଂ ପ୍ରତିବାକ୍ୟ ମହାମୁନି
ଶୁଣନ୍ତୁ ପରୀକ୍ଷରାଜା ସୁଧାରସ ଧ୍ୱନି ।
ଯେତେବେଳେ ପୃଥିବୀରେ ପ୍ରଳୟ ହୋଇଲା
ଜନଜନ୍ତୁ ଗୋଟିଏକ ତହିଁ ନ ରହିଲା ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ଚନ୍ଦ୍ର ନଇର୍ତ ଯମ
ବସୁବିଶ୍ୱେଦେବା ରବି ତାରାଗଣ ସୋମ ।
ପିଶାଚ କିନ୍ନର ଯକ୍ଷ ଗନ୍ଧର୍ବ ସହିତେ
ନକ୍ଷତ୍ର ଯୋଗକରଣ ବରୁଣ ସମେତେ ।
ମନୁ ଯୁଗପତି ଯେତେ ସଂସାର ଧାରଣ
ସ୍ଥାବର ଜଙ୍ଗମମୂଳେ ନାଶଗଲେ ପୁଣ ।
ପବନ ବଇଶ୍ୱାନର ଈଶ୍ୱରର ମୂଳେ
ସବୁ ନାଶ ଗଲା ମହା ପ୍ରଳୟର ଜଳେ
ଦେହଧାରୀଯାକ ସବୁ ଗଲେ ଯନ୍ତୁଁ କ୍ଷୟ
ସକଳ ବ୍ରହ୍ମାଣ୍ଡ ହେଲା ମହାଜଳମୟ ।
ଭୂଲୋକ ଯେ ଭୁବଲୋକ ସ୍ୱର୍ଲୋକ ଏ ତିନି
ମହର୍ଲୋକ ଆଦିକରି ଯେତେକ ମେଦିନୀ ।
ଜନଲୋକ ତପଲୋକ ସତ୍ୟଲୋକ ଯେଣୁ
ମହାପ୍ରଳୟକାଳେ ଏ ନାଶଗଲେ ପୁଣି ।
ପାତାଳ ସପତଲୋକ ଯେତେ ତଳପୁରେ
ତଳାତଳ ଅତିତଳ ରସାତଳ ଠାରେ ।
ମହାତଳ ପାତାଳକୁ ଯେଣୁ ସାତପୁର
ଚଉଦ ଭୁବନ ରଚିଥିଲା ବେଦବର ।
ଏହିପରି ନାଗଲୋକେ ସ୍ୱର୍ଗଦିଗପାଳେ
ମହା ପ୍ରଳୟ ଜଳରେ ପଡ଼ି ବୁଡ଼ିମଲେ ।
ରୂପରେଖ ନାହିଁ କିଛି ସବୁ ଗଲେ କ୍ଷୟ
ଚଉଦ ଭୁବନ ଯାକ ହେଲା ଶୂନ୍ୟମୟ ।
ଏକମାତ୍ର ତ୍ରିକ୍ଳାମ୍ବର ବସ୍ତୁ ଥିଲେ ରହି
ଜଳ ବଟପୃଷ୍ଠେ ହୋଇ ସେ ଉତ୍ତାନଶାୟୀ ।

ସୁରଲୋକ ନରଲୋକ ଋଷି ମହାଋଷି
ସିଦ୍ଧ ସାଧୁ ସାଧକେ ଯେ ବିଷ୍ଣୁ ଗର୍ଭେ ପଶି
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଏ ସୃଷ୍ଟି
ଓଁକାର ସାବିତ୍ରୀ ତନ୍ତ୍ର ମନ୍ତ୍ର ବେଦସୃଷ୍ଟି ।
ସକଳ ବ୍ରହ୍ମାଣ୍ଡ ଯାର ବିଶ୍ୱଗର୍ଭେ ଭରି
ବଟପତ୍ରରେ ଶୟନ କଲେକ ମୁରାରି ।
ପଞ୍ଚାଶ ପାଖୁଡ଼ା ଷଡ଼ଚକ୍ର ବନ୍ଧ ମୁଦ୍ରା
ମହାଶୂନ୍ୟ ମଣ୍ଡଳରେ ଗଲେ ଯୋଗନିଦ୍ରା ।
ମନପବନ ଜୀବାତ୍ମାକୁ କଲେ ଏକଗୋଷ୍ଠୀ
ସର୍ବେବରେ ପ୍ରକାଶିଲେ ହଂସରୂପ ଗୋଟି ।
ବ୍ରହ୍ମକୁଣ୍ଡଳୀ ଲଗିଲାକ କାହିଁଶ ମଣ୍ଡଳେ
ପରମ ଆତ୍ମାକୁ ଧ୍ୟାନ ରହଇ ନିଶ୍ଚଳେ ।
ଅମର ଗିରି ଉପରେ ପୁଷ୍ପେକ ଫୁଟିଲା
ଅଷ୍ଟଦଳ କମଳ ସେ ହୋଇ ବିକାଶିଲା ।
ଅଷ୍ଟାଙ୍ଗ ଯୋଗର ମୂଳ ତଳଭିଶୀ ଜ୍ଞାନ
ଷଡ଼ଚକ୍ରର ବାସନାମାନଙ୍କର ସ୍ଥାନ ।
ଅଦ୍ଭୁତେ ନାଭିକ ରୁ ହୋଇଲାକ ଜାତ
ଜଗତ ବାସନାରୂପେ ହୋଇଲା ବିଦିତ ।
ଉପମା ଦେବାକୁ ତାକୁ ପଟାନ୍ତର ନାହିଁ
କୋଟିଏ ସୂର୍ଯ୍ୟର ତେଜ ବିଧ୍ୱଂସୁଛି ତହିଁ ।
ଷାଠିଏ କୋଟି ଯୋଜନ ପଦ୍ମନାଡ଼ ଗୋଟି
ଜଳ ପ୍ରଳୟ ହୁଅନ୍ତେ ଉପରକୁ ଫୁଟି ।
ତଇବଗୋଟି ପାଖୁଡ଼ା ଫୁଟିଲା ଉପରେ
ଚରାଚର ପୃଥିବୀକ ଘୋଟିଲା ତେଜରେ ।
ସହସ୍ରେକ ଯୁଗ ଯାଏ ରହିଲା ସେ ଘୋଟି
ସୁଗନ୍ଧରେ ଆମୋଦିଲା ଚରାଚର ସୃଷ୍ଟି ।
ଯେତେବେଳେ ପଦ୍ମଫୁଲ ଫୁଟି ବିକାଶିଲା
ଶୂନ୍ୟ ଉଡ଼ି ଆସି ଏକ ଭ୍ରମର ବସିଲା ।
ସୁବର୍ଣ୍ଣ ବିନ୍ଦୁପରାୟ ସେ ଭ୍ରମର କାୟା
ଆପେ ଅନ୍ତର୍ଯ୍ୟାମୀ ନାଥ ରଚିଲାକ ମାୟା ।
ପୁଷ୍ପ ଉପରେ ବସିଲା ସେ ଭ୍ରମର ପକ୍ଷୀ
ଶ୍ରଦ୍ଧାରେ ଚୁମ୍ବିଲା ବସି ଶ୍ରମକୁ ଉପେକ୍ଷି ।
ଫୁଲରୁ ଯେ ମକରନ୍ଦ ହୋଇଲାକ ବୃଷ୍ଟି
ତାର ଆସ୍ୱାଦନେ ତୋଷ ଚରାଚର ସୃଷ୍ଟି ।
ସେ ନାଭିକମଳକୁ ଯେ ଭ୍ରମର ଚୁମ୍ବିଲା
ତତକ୍ଷଣେ ସେହି ଦେବ ତନୁକୁ ଧଇଲା ।
ମହତ ଆଶ୍ରା କରି ସେ ପାଇ ସିଦ୍ଧିଅଙ୍ଗ
କଳ୍ପେ ପର୍ଯ୍ୟନ୍ତ ନ ପାଇ ସେ କାହାର ସଙ୍ଗ
ତେତେବେଳେ ତାର ବୁଦ୍ଧି ହୋଇଲାକ ଆନ
ଧ୍ୟାନେ ବିଷ୍ଣୁଙ୍କୁ ଦେଖିଲା ପାଇ ଦିବ୍ୟ ଜ୍ଞାନ ।
ସାମ ଯଜୁ ଋକବେଦ ଅଥର୍ବ ଯେ ସିଦ୍ଧି
ଆନ ଗ୍ରନ୍ଥମାନ ହେଲା ସିଦ୍ଧ ଅଙ୍ଗ ଭେଦ ।
ବେଦର ଅନ୍ତ ଜାଣି ସେ ବେଦାନ୍ତ ପାଇଲା
ଓଁକାର ଶବ୍ଦ ବୃହତ ସାମକୁ ଗାଇଲା ।
ମନ ପବନ ଚୈତନ୍ୟ ତହୁଁ ବିଶ୍ୱଖଣ୍ଡ
ଏ ବିଶ୍ୱକର୍ମରୁ ଜାତ ହେଲେ ବିଶ୍ୱମୁଣ୍ଡ ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ମୂରତି
ଏ ବିଶ୍ୱକର୍ମରୁ ପୁଣି ହେଲା ବିଶ୍ୱଗତି ।
ଚତୁର୍ମୁଖେ ବେଦଧ୍ୱନି କଲାକ ରଚନ
ଅପୂର୍ବ ଧ୍ୱନି ଶୁଭିଲା ଏ ତିନି ଭୁବନ ।
ସୃଜିତେତ ପୁଣ୍ୟମୟ ହୋଇଛି ମେଦିନୀ
ସପତସ୍ୱରରେ ବ୍ରହ୍ମା କଲେ ବେଦଧ୍ୱନି ।
ଅଚେତନ ହୋଇ ସ୍ୱାମୀ ଯାଇଥିଲେ ନିଦ୍ରା
ଚକ୍ଷୁ ଫେଡ଼ଣ ଛାଡ଼ିଲେ ଅଙ୍ଗେ ଯୋଗମୁଦ୍ରା
ଚକ୍ଷୁ ମେଲଣ ଛାଡ଼ିଲେ ପ୍ରଭୁ ବିଶ୍ୱବାସ
ନାଭି କମଳେ ବସିଛି ଏକଇ ପୁରୁଷ ।
ଚତୁର୍ମୁଖେ ଚତୁର୍ବେଦ କମଣ୍ଡଳୁ କରେ
ବୃହତ ସାମଧ୍ୱନି ସେ କରେ ନିରନ୍ତରେ ।
ଶୁଦ୍ଧ ସୁବର୍ଣ୍ଣର ଜ୍ୟୋତି ଅଟେ ତାର କାୟା
ଦେଖି ଦେବ ନାରାୟଣ କଲେ ତାକୁ ଦୟା ।
ନାଭିକମଳ ଉପରେ ପିତାମହ ସ୍ୱାମୀ
କରପଦ୍ମ ଯୋଡ଼ି ପୁଣି ଚରଣେ ପ୍ରଣମି ।
ଅନେକ ସ୍ତୁତି ବଚନ ଅନ୍ତର୍ଗତେ ଗୁଣି
ଚତୁର ମୁଖରେ ପୁଣି ସ୍ତୁତି ବାଣୀ ଭଣି ।
ଜୟତୁ ନିରାକାର ହେ ଦେବଙ୍କ ଦେବତା
ଜୟତୁ ନିରାକାର ହେ ସଂସାର କରତା ।
ଜୟତୁ ଜଗନ୍ନାଥ ଦେବ ଆଦିକନ୍ଦ
ଜୟତୁ ନାରାୟଣ ହେ ପରମ ଆନନ୍ଦ ।
ଜୟତୁ ନୀଳାଦ୍ରି ନାଥ ନିରାକାର ରେଖା
ଜୟତୁ ନିରାକାର ହେ ସଂସାର ନାୟକା ।
ସ୍ୱାମୀ ତୋ ତତ୍ତ୍ୱ ସୁମୂର୍ତ୍ତି ଆନ ଦେଖି ନାହିଁ
ତୋର ରୂପରେଖ ବର୍ଣ୍ଣି ଅଛି ଆଉ କାହିଁ ।

ଅନାମ ଅରୂପ ତୋର ଅବ୍ୟକ୍ତ ଜ୍ୟୋତି
ଅତୁଳ ଅମୋହ ତୁ ଯେ ଅଶ୍ରୁତ ଅମୂର୍ତ୍ତି ।
ଶତ୍ରୁମିତ୍ର ଉଦାସୀନ ଏ ତୋହର ନାହିଁ
କୀଟୁ ବ୍ରହ୍ମପରଯନ୍ତେ ଉର୍ଦ୍ଧେ ଅଛୁ ବହି ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ହିଁ ସୃଜି
ସଂସାର ଖେଳଘର କେ ପାରେ ଆକଳି ।
ଏମନ୍ତେ ଅନେକ ସ୍ତୁତି କଲେ ବେଦବର
ଶୁଣିଣ ଦୟା କରିଲ ହୃଦେ ବିଷ୍ଣୁ କ୍ରଭ ।
ବ୍ରହ୍ମାଙ୍କୁ ଚାହିଁଣ ସ୍ୱାମୀ ବଚନ ବୋଇଲେ
ଉପାୟରେ ସୃଷ୍ଟି ଗୋଟା ଉଆଅ ତୁ ଭଲେ
ସ୍ଥାବର ଜଙ୍ଗମ ଆଦି ଜୀବ ଚାରିଖାନି
କୀଟୁଁ ବ୍ରହ୍ମ ପରଯନ୍ତେ ଉଆଅ ଧରଣୀ ।
ମେରୁମନ୍ଦର ପର୍ବତ ଆଦି ଦିଗପାଳ
ସପତ ସମୁଦ୍ର ନଦୀ ବନ ଗିରିମାଳ ।
ମୂର୍ତ୍ତିମନ୍ତ ପ୍ରତିମା ତୁ ବସା ଯହିଁ ତହିଁ
ପ୍ରତିମାଙ୍କ ପୂଜାବିଧି ଉଆଇବୁ ତୁହି ।
ହେଲେ ଶାନ୍ତି ପରସାଦ ଶ୍ରୀମୁଖର ବାଣୀ
ସପତଦ୍ୱୀପା ପୃଥ୍ୱୀରେ ହୁଅ ତୁ କାରଣୀ ।
ସକଳ ପ୍ରାଣୀଙ୍କର ତୁ ହେବୁ ଜୀବଦାତା
ସକଳ ବ୍ରହ୍ମାଣ୍ଡର ତୁ ହେବୁ ପିତା ମାତା ।
ଯୋଗାରୂଢ଼େ ପ୍ରଭୁ ଏତେ ବଚନ କହିଲେ
ପରମଯୋଗୀ ସମାଧି ଯୋଗରେ ବସିଲେ ।
ବ୍ରହ୍ମାପଦ ପାଇ ଧାତା ସେଠାରୁ ଉଠିଲେ
ଯେବଣ ପ୍ରକାରେ ଏହି ସୃଷ୍ଟି ନିର୍ମ୍ମ କଲେ ।
ବିଶ୍ୱ ଚରାଚରକୁ ଯେ ଭିନ୍ନ ଭିନ୍ନ ପ୍ରତି
ଏକା ପରଂବ୍ରହ୍ମ ହେଲେ କେତେକ ମୂରତି
ଏମନ୍ତେ ସେ ବେଦପତି ଶୂନ୍ୟେ ଧ୍ୟାନକରି
ଅଜପା ମହାମନ୍ତ୍ରକୁ ମନରେ ସୁମରି ।
ସପତ ସ୍ୱରରେ ଚାରି ବେଦକୁ ପଢ଼ିଲେ
ବତିଶ ଅଣାକାର ଯେ ତହୁଁ ପ୍ରକାଶିଲେ ।
ବେଦ ଅକ୍ଷର ଛନ୍ଦଲେ କରି ଛନଠାବ
ସର୍ଜିଲେ ଆନ ଆନ କରି ନାନାଜୀବ ।
ଆଠ ଅକ୍ଷର ବର୍ଣ୍ଣ ଯେ ଅବନା ଜପିଲେ
ସାବିତ୍ରୀ ନାମରେ କନ୍ୟା ତହୁଁ ଜାତକଲେ ।
ଅପୂର୍ବ ସୁନ୍ଦରୀ ସେହି ହୋଇ ନବଯୁବା
ନାହିଁ ତାଙ୍କୁ ପଟାନ୍ତର ଉପମା କି ଦେବା ।

ଅଖିଳ ବ୍ରହ୍ମାଣ୍ଡ ଗୋଟି ଅଟେ ଜୀବଦାତା
ଓଁକାରରୁ ଜନମିଲେ ଦେବଙ୍କର ମାତା ।
ଯାଗ ଯଜ୍ଞ ହୋମ ହବି ଯହିଁରେ ଯେ ବିଧି
ଏହି ଚବିଶ ଅକ୍ଷର ବ୍ରହ୍ମା କରି ସିଦ୍ଧି ।
ଏ ବେଦକନ୍ୟା ହୋଇଲେ ସଂସାରକାରିଣୀ
ବ୍ରହ୍ମା ଭାରିଯା ଅନାଦି ଆଦି ଠାକୁରାଣୀ ।
ସୃଷ୍ଟି ଉଆଣ ପୁରାଣ ହରିବଂଶ ବାଣୀ
ଅଚ୍ୟୁତାନନ୍ଦ ଦାସ ଯେ ଭଜେ ଚକ୍ରପାଣି ।

—o—

## ବଂଶାନୁ ଚରିତ

କହନ୍ତି ଯେ ଶୁକମୁନି ଶୁଣ ନୃପମଣି
ଏଥୁ ଅନନ୍ତରେ ମହାରସ ଦିବ୍ୟବାଣୀ ।
ବଂଶାନୁଚରିତ ହରିବଂଶ କଥା ଆଦି
ମୁକତିର ପଥ ଏ ଯେ ଜ୍ଞାନକୁ ସମ୍ପାଦି ।
ଏକମନା ହୋଇ ତୁମ୍ଭେ ଶୁଣ ମହାରଜା
ଗାୟତ୍ରୀ ସାବିତ୍ରୀ ଦୁଇ ବ୍ରହ୍ମାଙ୍କ ଭାରିଜା ।
ଏ ବେଦ ଜାତକଲେ ଯେ ଚାରିଗୋଟି ପୁତ୍ର
ଚାରିହେଁ ସଞ୍ଚିଲେ ଚରାଚର ଏ ଜଗତ ।
ଶୁକ ସନାତନ ମୁନି ନାରଦ ଏ ତିନି
ଯୋଗାରୂଢ଼ ହେଲେ ବ୍ରହ୍ମଚର୍ଯ୍ୟ ଦୀକ୍ଷା ଘେନି
ବିଧାତାସମାନ ହେଲେ ଏ ପରମଯୋଗୀ
ଜନ୍ମହୋଇ ପୁଣି ଗଲେ ସଂସାରକୁ ତ୍ୟାଗୀ
ସଂସାର ତ୍ୟାଗୀ ହୁଅନ୍ତେ କଲେ ସାଧୁ ସଙ୍ଗ
ମହାଶୂନ୍ୟର ଭିତରେ ଗୋପ୍ୟ କଲେ ଅଙ୍ଗ
ସଂସାରଇଚ୍ଛା ଛାଡ଼ିଲେ ତେଜି ମାୟାମୋହ
ପରଂବ୍ରହ୍ମେ ଲୀନ କଲେ ଆପଣାର ଦେହ ।
ଧାତା ବିଚାରିଲେ ଏବେ କରିବି କି ବୁଦ୍ଧି
ହିପୁତ୍ର ଜାତକରି ନ ହେଲା କାର୍ଯ୍ୟସିଦ୍ଧି ।
ଏତେକ ବୋଲି ସାବିତ୍ରୀ ଅଙ୍ଗସଙ୍ଗ ରସେ
ପୁତ୍ର ଏକ ଜାତ କଲେ କେତେକ ଦିବସେ
ଦକ୍ଷପ୍ରଜାପତି ବୋଲି ଦେଲେ ତାଙ୍କ ନାମ
ଅପୂର୍ବ ମୂରତି କି ସେ ଅଭିନବ କାମ ।
ତେଜୋବନ୍ତ ବୁଦ୍ଧିମନ୍ତ ଅଟଇ ସେ ସୁତ
ସାବିତ୍ରୀ ଯାହାର ମାତା ବ୍ରହ୍ମା ଯାର ତାତ ।
ସର୍ବଗୁଣେ ସୁଲକ୍ଷଣ ଧାତାପୁତ୍ର ଗୋଟି ।
ସର୍ବକର୍ମ ଧର୍ମ କି ବିଜ୍ଞସୁ ପରମେଷ୍ଠୀ ।

ସେ ପୁତ୍ରକୁ ବେଦପଢ଼ ଗ୍ରନ୍ଥକୁ ହକାରି
ବୋଇଲେ ନନ୍ଦନ ସୃଷ୍ଟି ଭିଆ ଯତ୍ନକରି ।
ପୁତ୍ର ଦାର ଧନ ଜନ ଆଦି ଯେତେ କର୍ମ
ଆପଣେ ଭିଆଅ ପାଇଁ ସାଂସାରିକ ଧର୍ମ ।
ପିତାଙ୍କର ଆଜ୍ଞା ପାଇ ପୁତ୍ର ଚଳିଗଲ
ପଞ୍ଚାଶ ସହସ୍ର ପୁତ୍ରମାନଙ୍କୁ ଜାତକଲ ।
ବୋଇଲେ ରେ ବାବୁ ତୁମ୍ଭ ସୃଷ୍ଟିପାଇଁ ନର
ପିତାଙ୍କର ଆଜ୍ଞାପାଇ ଚଳିଲେ କୁମର ।
ଥୋକାଏ ଦୂରେ ନାରଦ ମୁନିଙ୍କି ଦେଖିଲେ
ଦୂରୁ ନମସ୍କାର କରି ପାଶେ ଚଳିଗଲେ ।
ଜେଉଁ ତା ଗ୍ରନ୍ଥେ ପୁଣେ ପ୍ରବେଶିଲେ ଯାଇଁ
ନମସ୍କାର କରି ପୁଣି ଆଗେ ଛିଡ଼ାହୋଇ ।
ନାରଦ ବୋଇଲେ କେଣେ ଯିବ ଆରେ ବାବା
କୁମର ବୋଇଲେ ଏହି ସଂସାର ରଚିବା ।
ତେବେ ସିନା ପୃଥିବୀରେ ହୋଇବୁ କାରେଣୀ
ଏମନ୍ତ ଶୁଣି କହନ୍ତି ନାରଦ ଯେ ମୁନି ।
ଅହନ୍ତା କରି ନାରଦେ ବୁଝିଁ କୁମରଙ୍କୁ
କେମନ୍ତେ ସୃଷ୍ଟି ବହିବ ଯାଇ ରେ ମଣ୍ଡଳୁ
ସଂସାରେ ଧନ୍ଦାରେ ପଡ଼ି ହେଉଥିବ ଧନ୍ଦ
ଆମ୍ଭଭଳି ଲୋକ ଯେ ନ ପାରି ହେଲୁ ଛନ୍ଦ ।
ଅଜ୍ଞାନ ବାଳକ ତୁମ୍ଭେ ନ କରି ବିଇଜ
ସ୍ୱର୍ଗ ମର୍ତ୍ତ ପାତାଳରେ ପାଇବଟି ଲାଜ ।
ଆବର ସିନା ବାବୁରେ କହିବା କଥାଏ
ସୃଷ୍ଟିଯାକ ଭୂମି ତୁମ୍ଭେ ଦେଖରେ ତନୟେ
ଏତେକ କହି ନାରଦେ ପୁତ୍ରଙ୍କୁ ବୁଝିଁଲେ
ଉପହାସ କରି ପୁଣ ବଚନ ବୋଇଲେ ।
ତୁମ୍ଭେ ସମସ୍ତେ ବାଳକ ନ ଜାଣ କପଟ
କେମନ୍ତେ ସୃଷ୍ଟି କରିବ ବିଷ୍ଣୁ ମାୟାକୂଟ
ବିଷ୍ଣୁଙ୍କୁ ଆଗ ପ୍ରସନ୍ନ କର ତୁମ୍ଭେ ଯାଇଁ
ଯୁଗରାଜ୍ୟ କର ପଛେ ସୃଷ୍ଟିକି ଭିଆଇ ।
ବିଷ୍ଣୁ ସେବଲେ ପାଇବ ସିନା ସଦବୁଦ୍ଧି
ଯେତେକ କାର୍ଯ୍ୟ କରିବ ହେବ ସବୁ ସିଦ୍ଧି ।
ସକଳ ସିଦ୍ଧିଦାୟକ ବିଷ୍ଣୁ ଯେ କାରଣ
ସବୁଗୁଣେ ଗୁଣବନ୍ତ ଦେବ ନାରାୟଣ ।
ବିଷ୍ଣୁ ସେବା କର ବାବୁ ବିଷ୍ଣୁ ସବୁରୂପୀ
ଅଶେଷ କୋଟି ବ୍ରହ୍ମାଣ୍ଡଯାକ ଅଛି ବ୍ୟାପୀ ।

ଯନ୍ତ୍ରି ଲେଉଡ଼ିବ ଚନ୍ତ୍ରିରେ ଦେବ ନାରାୟଣ
ସାବଧାନ ହୋଇ ଏବେ ପୁତ୍ରମାନେ ଶୁଣ ।
ଭକତକୁ ସୁପ୍ରସନ୍ନ ହୁନ୍ତି ଭବତ୍ରାସ୍ତି
ବିଷ୍ଣୁ ବିନା ଏ ପୃଥ୍ୱୀରେ ଅନ୍ୟ କେହି ନାହିଁ
ଏ ସଂସାର ଯାକ ଘ ର ଘୋଟିଅଛି ମାୟା
ଯେ ପ୍ରାଣୀ ବଣା ହୋଇ ସେବିଷ୍ଣୁ ଭିଦୋରେହା ।
ଏହା ଶୁଣି କୁମରେ ଯେ ବିଷ୍ଣୁ ଲେଉଡ଼ିଲେ
ଭେଟ ନ ପାଇଣ ସେହି ପୃଥ୍ୱୀରେ ବୁଲିଲେ
ଏହିମତେ ଚନ୍ତ୍ରି ଜାଣ କେତେଦିନ ଗଲ
ତଦନ୍ତ କରି ନ ପାରି ବିଷ୍ଣୁ ମାୟା ଲୀଳା ।
ଏହାଶୁଣି ପ୍ରଜାପତି ମନେ କ୍ରୋଧ କଲେ
ଅକାଇଣେ ଏତେ ପୁତ୍ର ମୋର ନାଶଗଲେ ।
ଅନେକ କାଳ ଗଲଣି ନଇଲେ ମୋ ପାଶ
ସେ ପୁତ୍ରମାନଙ୍କୁ ଆଉ ଅଛି କି ମୋ ଆଶ ।
ବିଚାର କଲେ ଏବେ ମୁଁ କରିବି କି ବୁଦ୍ଧି
ପଞ୍ଚାଶ ସହସ୍ର ପୁତ୍ରେ କଲେକ ଅବଧି ।
ସୃଷ୍ଟି ଭିଆଇବା ପାଇଁ ଯାଇ ହେଲେ ବଣା
କେତେ ମୁଁ ସହିବି ଆଉ ଲୋକଙ୍କ ଗଞ୍ଜଣା ।
ସଂସାର ସର୍ଜିବା ପାଇଁ ପିତା ଦେଲେ ଆଜ୍ଞା
ତାହାଙ୍କ ବଚନ ଏବେ ହୋଇଲା ଅବଜ୍ଞା ।
ଏମନ୍ତ ବିଚାରି ସେହି ଦକ୍ଷ ପ୍ରଜାପତି
ପୁଣି କଲ୍ୟଣାରୁ ଜାତ କଲେକ ସନ୍ତତି ।
ସେ ପଞ୍ଚ ଶ ସହସ୍ରଙ୍କୁ ବେଦ ପଢ଼ାଇଲେ
ସୃଷ୍ଟି ଭିଆଇବା ପାଇଁ ତାଙ୍କୁ ଆଜ୍ଞା ଦେଲେ
ଚଳିଲେ ସେ ପୁତ୍ରମାନେ ପିତାଙ୍କ ଆଦେଶେ
ଯାଇଁ ଯାଇଁ ମିଳିଲେକ ନାରଦଙ୍କ ପାଶେ ।
ଜ୍ୟେଷ୍ଠଭ୍ରାତାଙ୍କୁ ଦେଖିଣ ପ୍ରଜାପତି ବାଳେ
ଶୁତିଲେ ସେ ନମସ୍କାର କରି ପାଦତଳେ ।
ନାରଦେ ବୋଇଲେ ତୁମ୍ଭେ କେଣିକରେ ଯିବ
ଏଥିର ସନ୍ଦେଶ ବାବୁ ଆମ୍ଭଙ୍କୁ କହିବ
ପୁତ୍ରେ ବୋଇଲେ ଆମ୍ଭଙ୍କୁ ଆଜ୍ଞାଦେଲେ ଦକ୍ଷ
ସୃଷ୍ଟି ସର୍ଜନା କରିଣ ଆମ୍ଭେ ହେବୁ ରକ୍ଷ ।
ସକଳ ସଂସାର ଆମ୍ଭେ ଭିଆଇବୁ ଯୋଗେ
ନାରଦେ ବୋଇଲେ ବିଷ୍ଣୁ ଭେଟ ଯାଇଆଗେ
ବିଷ୍ଣୁଙ୍କୁ ନ ଭେଟିଲେ ନ ହେବ କିଛି କାର୍ଯ୍ୟ
ପଛେ ପାଇବ ପୁତ୍ରରେ ତୁମ୍ଭେ ବଡ଼ ଲାଜ ।

କ୍ରମରେ ବୋଇଲେ ପିତା ଯଥାର୍ଥ ଅଟଇ
ବିଷ୍ଣୁ ବିନା କେହି ଚରାଚର ନ ଗଢଇ ।
ବିଷ୍ଣୁ ଯେବେ ନ ଦେବେଟି ଶ୍ରୀମୁଖ ବଚନ
ଯେତେକ କାର୍ଯ୍ୟ କରିବା ସବୁ ଅକାରଣ ।
ଏତେକ ବୋଲି କ୍ରମରେ ବିଷ୍ଣୁ ଲୋଡ଼ିଗଲେ
ଅନେକ କାଳ ବୁଲି ସେ ଭେଟ ନ ପାଇଲେ
ଏକ ଏକ ଗଲେ ସେହି ଦିଗମ୍ବର ହୋଇ
କେ କାହିଁ ଅଛୁ କା କଥା ନ ଜାଣିଲେ କେହି
କୃଷ୍ଣ କରନ୍ତି ନାରଦ ମୁନି ବ୍ରହ୍ମବୃଷୀ
ହିଂସା କହିଲେ ସାବତ ପୁତ୍ର ଗୁଣ ଧରି ।
ସତ୍ୟ ବଚନ କହିଣ ଭାବେ ଭଣ୍ଡିଦେଲେ ।
କହିସ୍ତ ଭାଇ ପୁତ୍ରଙ୍କୁ ପୃଥ୍ୱୀ ଭ୍ରମାଇଲେ ।
ଏମନ୍ତେ ଲକ୍ଷ କ୍ରମର କାରଣ ନୋହିଲେ
ଦକ୍ଷ ପ୍ରଜାପତି ବସି ମନେ ଚିନ୍ତାକଲେ ।
ଅର୍ଜିଲି ମୁଁ ଗୁଣବନ୍ତ ପୁତ୍ର ବହୁ ଦୁଃଖେ
ପୃଥ୍ୱୀକି କାରଣ ବିନା ଗେଲେ ଏକେ ଏକେ ।
ଏତେ ଏତେ ପୁତ୍ରେ ମୋର ଅକାରଣେ ଗଲେ
ନାରଦ ବୁଦ୍ଧିରେ ମୋର ପୁତ୍ରେ ବୁଲି ମଲେ
ସ୍ୱଣ୍ଡାଳ ସାବତ ଶୁଦ୍ର ହିଂସା ମନେ ଧରି
ପୁତ୍ର କଷ୍ଟ ଦେଇ ମୋତେ କୁବୁଦ୍ଧି ବିସ୍ତରି ।
ଜ୍ୟେଷ୍ଠ ଶ୍ରେଷ୍ଠ ପୁତ୍ରେ ମୋର ଜ୍ଞାନେଧ୍ୟାନେଗୁରୁ
ଅଜାତଶତ୍ରୁ ସେ ବ୍ରହ୍ମବେତ୍ତା ମହାମେରୁ ।
ସତ ସୁବୁଦ୍ଧି ବାଞ୍ଛା ସେ ପୁତ୍ରେ ନାଶଗଲେ
ଏଡ଼େ ବଳବନ୍ତ ପୁତ୍ରେ ବ୍ୟର୍ଥ ହୋଇଲେ ।
ଦିଗପାଳ ସମ ପୁତ୍ରେ ହୋଇଲେ ନିରେଖ
ନାରଦ ଯୋଗୁଁ ମୋହର ହେଲା ଏତେଦୁଃଖ
ତପୋଧନ ହୋଇ ଯେବେ ଘରେ ବଇରାଗୀ
ବଇଦ ହୋଇ ଶସ୍ତ୍ରରେ ହୋଏ ଯେବେରୋଗୀ
ସୋଦରହୋଇ ଯେବେ ସୋହେ ଏକୁଲରେଖା
ପିତା ହୋଇଣ ପୁତ୍ରକୁ ଦିଏ ଯେବେ ଖେଦ ।
କୁଳସ୍ତ୍ରୀ ହୋଇ ଯେବେ ଗୁଡ଼େ ଜାତିଲଜ୍ଜା
ପ୍ରଜାପତି ହୋଇ ଯେବେ ନାଶ କରେରାଜ୍ୟ ।
ଏ ନାରଦ ସବାଳ୍ୟରେ ବ୍ରହ୍ମଚର୍ଯ୍ୟ ରୂପ
ଜାଣୁ ଜାଣୁ କେମନ୍ତେ ସେ ଅର୍ଜିଲା ଏ ପାପ
ସୋଦର ହୋଇ ସେ କଲା କୁଳଚ୍ଛେଦ ଭେଦ
ସବୁକାଳେ ତା ଶସ୍ତ୍ରରେ ଥାଉ ବଳ ବାଦ ।

ଏସନକ ଶାପ ଯହୁଁ ପ୍ରଜାପତି ଦେଲେ
ଦସ୍ତପ୍ରସାରି ନାରଦ ତାହାଙ୍କୁ ବୋଇଲେ ।
ପାଣି ବଜାଇଣ ସେ ଯେ ଗଲେ ବ୍ରହ୍ମଲୋକ
ମନର ଅତି ଆନନ୍ଦେ ହୋଇଣ ନିଃଶଙ୍କ ।
ଏଥୁଅନନ୍ତରେ ଦୃଷ୍ଟେ ଶୁଣ ମହୀପତି
ଦକ୍ଷ ତହୁଁ ଗଲେ ଯହିଁ ବ୍ରହ୍ମା ବସିଛନ୍ତି ।
ସକଳ ବୃତ୍ତାନ୍ତ ତାଙ୍କୁ କହିଲେ ବୁଝାଇ
ନାରଦ ବଚନେ ଗଲେ ଦିଗମ୍ବର ହୋଇ ।
ଗଲେ ସେ ପୁତ୍ରେ ନୋହିଲା କାର୍ଯ୍ୟକର୍ତ୍ତୁ ସିଦ୍ଧି
ସଂସାର ଧାରଣା ପୁତ୍ରେ ଦେଲେ କାହିଁ ବଧି ।
ପୁତ୍ରଶୋକେ ହୋଇଲି ମୁଁ ଏବେ ମହାକଷ୍ଟି
ମୋର ଭିଆଣେ ନୋହିବ ଆଉ ନବସୃଷ୍ଟି
ଏମନ୍ତ ଶୁଣି ସେ ବ୍ରହ୍ମା ଅନ୍ତର୍ଗତେ ଭାଳି
ନବପୁତ୍ର ଜାତ କଲେ କାର୍ଯ୍ୟବନ୍ତ ବଳୀ ।
ଅତ୍ରି ଅଙ୍ଗିର ପୁଲସ୍ତି ମରୀଚ ପ୍ରଚେତା
କଶ୍ୟପ ବଶିଷ୍ଠ ଭୃଗୁ କ୍ରତୁ ବ୍ରହ୍ମବେତ୍ତା ।
ଏ ନବକ୍ରମରେ ହେଲେ ଧାତାଙ୍କର ପୁତ୍ର
ନବସୃଷ୍ଟି କରିବାକୁ ନବମୁନି ଜାତ ।
ଏ ନବ ପୁତ୍ରଙ୍କ ଯୋଗୁଁ ବ୍ରହ୍ମାଣ୍ଡ ସମ୍ଭବ
ପଶୁ ପକ୍ଷୀ ବୃକ୍ଷ ଦେବ ଦାନବ ମାନବ ।
ସ୍ୱେଦ ଅଣ୍ଡଜ ଉଦ୍ଭିଦ ଜରାୟୁଜ ସ୍ଥିର
ଆକାର ଉକାର ଆଉ ମକାରରୁ କ୍ଷର ।
ଏମାନେ ଏ ନବ ପୁତ୍ରଠାରୁ ଜାତ ହେଲେ
ଶୁଣ ହେ ପରୀକ୍ଷ ବୋଲି ଶୁକ ଯେ କହିଲେ
ଭୃଗୁଙ୍କ ଭାରିଯା ଜାଣ ଭାର୍ଗବୀ ଯେ ନାରୀ
ଭାର୍ଗବ ବୋଲି ପୁତ୍ରେକ ହୋଇଲା ତାହାରି
ମରୀଚ ପୁତ୍ର ରୁଚକ ନାମେ ମହାମୁନି
ରୁଚକ ପୁତ୍ର ଅଟଇ ମୁନି ଯମଦଗ୍ନି
ଜମଦଗ୍ନିର ଭାରିଯା ରେଣୁକା ସୁନ୍ଦରୀ
ଜାତକଲେ ପର୍ଶୁରାମ ଆଦି ପୁତ୍ରଚାରି ।
ଅଙ୍ଗିର ଋଷିର ପୁତ୍ର ଅଙ୍ଗିରସ ଯତି
ସେ ଅଙ୍ଗିରସଙ୍କ ପୁତ୍ର ହେଲେ ବୃହସ୍ପତି ।
ବୃହସ୍ପତିଙ୍କ ନନ୍ଦନ ଭରଦ୍ୱାଜ ମୁନି
ତାହାଙ୍କ ନନ୍ଦନ ଦ୍ରୋଣାଚାର୍ଯ୍ୟ ବ୍ରାହ୍ମଣି ।
ଦ୍ରୋଣପୁତ୍ର ଅଶ୍ୱତ୍ଥାମା ନାମେ ତପସ୍ୱୀ
ସିଦ୍ଧପଙ୍କ ହେଲେ ନିରଞ୍ଜନ ସେବାକରି ।

ପୁଲସ୍ତ୍ୟ ମୁନିର ପୁତ୍ର ନାମ ପଉଲସ୍ତି
କାରୁଣୀ ନାମେ ଭାର୍ଯ୍ୟା ତାର ରୂପବନ୍ତୀ ।
ବିଶ୍ୱାବସୁ ନାମେ ଆଠପୁତ୍ର ହେଲେ ତାର
ବିଶ୍ରବା ନାମେ ଯେ ଋଷି ହୋଇଲେ ଆବର ।
ବୈଶ୍ରବଣ ନାମରେ ବିଶ୍ରବା ନନ୍ଦନ
ରାବଣ ଯେ କୁମ୍ଭକର୍ଣ୍ଣ ବିଭୀଷଣ ଜାଣ ।
ନଳ କୁବେର ଯେ ବୈଶ୍ରବଣର ସୁତ
ଚତୁର୍ଥ ଗାୟତ୍ରୀଠାରୁ ଯେଉଁ ପୁତ୍ର ଜାତ ।
ବେଦମନ୍ତ୍ରେ ଜଡ଼ା ସେହି ତାର ଶୁଦ୍ଧ କାୟା
ସେ ପୁତ୍ରଠାରେ କରନ୍ତି ପିତା ବଡ଼ ଦୟା ।
ବିଭୁଙ୍କର ପୁତ୍ର ନାମ ଅଟେ ବୃହଦ୍ରୂପ
ଯେବଣ ନନ୍ଦନ ନାମ ଅଟଇ କଶ୍ୟପ ।
ସେ ଋଷିର ତେରଗୋଟି ଭାର୍ଯ୍ୟା ଯୁକତେ
ଏହାଙ୍କ ତହୁଁ ଜନମ ନାନାବର୍ଣ୍ଣ ଯେତେ ।
ଦିତି ଅଦିତି ବିନତା କଦ୍ରୁ ଚନ୍ଦ୍ରାବନ୍ତୀ
ସୁପ୍ସା ମାୟା ଉପୂଳା ଯେ ଶୀଳା ରୂପକାନ୍ତି ।
ମେଖଳା ଯେ ତିଳୋତ୍ତମା ଲୋଚନା ଆବର
ଏ ତେର ଭାର୍ଯ୍ୟା ଅଟେ କଶ୍ୟପ ଋଷିର ।
ଦିତିର ତହୁଁ ଦଇତ୍ୟମାନେ ଉପୁଜିଲେ
ଅଦିତି ଦେବୀ ଗର୍ଭରୁ ଦେବତା ଜନ୍ମିଲେ ।
କଦ୍ରୁ ର ତହୁଁ ଜନମ ହେଲେ ନାଗପୁଣ
ପକ୍ଷୀଏ ଅଟନ୍ତି ଜାଣ ବିନତାନନ୍ଦନ ।
ଭୂତ ପ୍ରେତ ଉପୁଜିଲେ ସୁପ୍ସା ମାୟାଠାରୁ
ଗ୍ରହେ ଉପୁଜିଲେ ଚନ୍ଦ୍ରାବନ୍ତୀର ଗର୍ଭରୁ ।
ମାନବଙ୍କ ଗର୍ଭଧାରୀ ଉପୂଳା ହୋଇଲେ
ଶୀଳ ନାମେ କନ୍ୟା ତାରଗଣ ଜାତ କଲେ ।
ମତ୍ସ୍ୟ କୂର୍ମଙ୍କ ଜନନୀ ମେଖଳା ଅଟଇ
ତିଳୋତ୍ତମା ଗର୍ଭୁ ପଶୁପତଙ୍ଗ ହୁଅଇ ।
ଲୋଚନା ତହୁଁ ସକଳ ଜନ ଉତପତ୍ତି
ସ୍ଥାବରଙ୍କ ମାତା ଅଟେ ଦେବୀ ରୂପକାନ୍ତି ।
କଶ୍ୟପଙ୍କଠାରୁ ଜାତ ସ୍ୱରଖାଣୀ ଜୀବ
ସର୍ପ ପତଙ୍ଗ ସହିତେ ଦେବତା ଗନ୍ଧର୍ବ ।
ପୁଲହ ସୁକାର୍ତ୍ତି ପ୍ରଜାଗଣ ପୁତ୍ର ତିନ
ଜାତ କଲେ ଏହି ଚରାଚର ଯେ ମେଦିନୀ ।
ଋକ ଯଜୁ ସାମ ବେଦ ଅଥର୍ବ କରତା
ବ୍ରାହ୍ମଣମାନଙ୍କର ସେ ହେଲେ ଜୀବଦାତା ।
କଲେ ହବି ହୋମ ସନ୍ଧ୍ୟା ଜପ ତପ ଯାଗ
ଯାଗରୁ ଏହାଙ୍କୁ ଆଗ ଦେବ ହବିର୍ଭାଗ ।
ଏହାଙ୍କୁ ନ ବରି ଯେହୁ କରେ ହୋମବିଧି
ତାର ବଳ କର୍ମମାନ ନୋହେ କେବେ ସିଦ୍ଧି
ଆବର ଧାତାର ପୁତ୍ର ବଶିଷ୍ଠ ଯେ ମୁନି
ସୂର୍ଯ୍ୟବଂଶ ପୁରୋହିତ ଅଟନ୍ତି ସେ ଜ୍ଞାନୀ ।
ବଶିଷ୍ଠ ଭାର୍ଯ୍ୟା ନାମ ଅଟେ ଅରୁନ୍ଧତୀ
ଅରୁନ୍ଧତୀ ତହୁଁ ଜାତ ମୁନି ଯେ ଶକ୍ତି ।
ଶକ୍ତିଙ୍କଠାରୁ ଜାତ ପରାଶର ହେଲେ
ବେଦବ୍ୟାସ ନାମେ ପୁତ୍ର ତହୁଁ ଉପୁଜିଲେ ।
ତାହାଙ୍କ ନନ୍ଦନ ଆମ୍ଭେ ଶୁକମୁନି ହେଲୁ
ଅନେକ କାଳ ପର୍ଯ୍ୟନ୍ତ ମାତୃଗର୍ଭେ ଥିଲୁ ।
ପାଇଲୁ ମାତାର ଗର୍ଭେ ଥାଇ ବିଦ୍ୟାଜ୍ଞାନ
ଅଜାତ ଯେ ବ୍ରହ୍ମବେତ୍ତା ରୂପେ ବିଦ୍ୟମାନ ।

—୦—

## ଚନ୍ଦ୍ର ଜନ୍ମ

ଆଉରେକ ପୁତ୍ର ଧାତାର ଅତ୍ରିନାମେ ଯତି
ଅନସୂୟା ନାମେ ତାର ପତ୍ନୀ ପ୍ରିୟବତୀ ।
ଅପୂର୍ବ ସୁନ୍ଦରୀ ତାକୁ ନାହିଁ ନା ଉପମା
ତ୍ରୈଲୋକ୍ୟ ମଧ୍ୟରେ ସେହି ଅପୂର୍ବ ପ୍ରତିମା
ସୁପ୍ରସିଦ୍ଧ ମୋହିନୀ ସେ ନବଯୁବା ବାଳୀ
ପବିତ୍ର ବ୍ରହ୍ମପତ୍ନୀ ସେ ଅଗ୍ନିତୁଲ୍ୟ ଝଳି ।
ପତିବ୍ରତା ଶିରୋମଣି ଅଟେ ଅନସୂୟା
ରୂପଗୁଣ ଦେଖି ମୋହ ହୋଏ ମୁନିକାୟା ।
ଭାର୍ଯ୍ୟାକୁ କ୍ଷଣେ ପାଶୁଁ ନ ଛାଡ଼ଇ ମୁନି
ଯେଣିକି ଗଲେ ସଙ୍ଗରେ ତାକୁ ଥାନ୍ତି ଘେନି
ସ୍ୱାମୀର ସଉଭାଗୀ ସେ ଅଟଇ ପୁଣ୍ୟଦେହୀ
ତିନି ଭୁବନେ ତାହାକୁ ସମ କେହି ନାହିଁ ।
ଏକଦିନେ ଅନସୂୟା ସେହି ପୁଣ୍ୟ ନାରୀ
ମୁନିଙ୍କ ସଙ୍ଗତେ ଗଲେ ଗଙ୍ଗାସ୍ନାନ କରି ।
ଦଣ୍ଡ କମଣ୍ଡଳୁ ଆଦି ଯତ୍ନେ କୂଳେ ଥୋଇ
ଗଙ୍ଗା ନଦୀକୂଳେ ମୁନି ଉଭା ହେଲେ ଯାଇଁ ।
ପଶିଣ ସ୍ନାନକରନ୍ତି ବୁଡ଼ି ଗଙ୍ଗାଜଳେ
ସନ୍ଧ୍ୟା ତର୍ପଣ ସାରିଲେ ଆସି ରହି କୂଳେ ।
ମୁନିଙ୍କ ସଙ୍ଗେ ଜଳରେ ପଶି ଅନସୂୟା
ପବିତ୍ର ଜଳ ଭିତରେ ପଖାଳିଲେ କାୟା ।

ମହାଗଙ୍ଗାର ଜଳରେ ବୁଡ଼ିଲା ସୁନ୍ଦରୀ
କଟାକ୍ଷରେ ଗଙ୍ଗାଦେବୀ ନେଲେ ତାଙ୍କୁ ହରି ।
ପାତାଳ ଭବନରେ ନେଇ ଥୋଇଲେ ସୁନ୍ଦରୀ
ସନ୍ଧ୍ୟା ସାରିଣ ଗୃହାନ୍ତ ମୁନି ତତକ୍ଷଣ ।
ଘଡ଼ିଏ ପର୍ଯ୍ୟନ୍ତେ କୂଳେ ରହିଛନ୍ତି ଚାହିଁ
ଏକାବେଳେ ବୁଡ଼ି ପୁଣ ନ ଉଠିଲା ଦେହି ।
ମୁନିଙ୍କର ପଞ୍ଚଭୂତ ଆତ୍ମା ଅନସୂୟା
ପତ୍ନୀ ନ ଦେଖି ମୁଣ୍ଡର ଜକଳିତ କାୟା ।
ଝର ଝର ନୟନରୁ ବୁହେ ଅଶ୍ରୁଜଳ
ଛନ ଛନ ମନ ପ୍ରାଣ ଉଡ଼େ ଅନ୍ତସ୍ଥଳ ।
ଚାହିଁଲେ ଜଳ ଭିତରେ ମୁନି ପୁଣି ପଶି
ଦଣ୍ଡଧେନ ପାଣିପାକ ଦଗାଣ୍ଡନ୍ତି ଋଷି ।
ଅନେକ ପ୍ରକାରେ ଲୋଡ଼ି ନ ପାଇ ଭାରିଯା
ତପସ୍ୟା ସହିତ ମୁନି ସବୁ କଲା ତ୍ୟଜ୍ୟା ।
ଗଙ୍ଗାକୂଳେ ବସି ଏକ ମୃଗଛାଲ ମାଡ଼ି
ଦଣ୍ଡକମଣ୍ଡଳୁ ରଖି କର୍ମମାନ ଛାଡ଼ି ।
ପତ୍ନୀ ରୂପ ଗୁଣମାନ ଭାବୁଛନ୍ତି ମୁନି
ଭକନେ ପୁଣି ରୋଦନ୍ତି କରି ଉଚ୍ଚଧ୍ୱନି ।
ନିରନ୍ତେ ବେନି ଲୋଚନୁ ଲୋତକ ଗଳଇ
ଶୁଦ୍ଧ ସ୍ଫଟିକ ଜାଣି ସେ କ୍ଷିତିରେ ପଡ଼ଇ ।
ନୟନ କୋଣରୁ ଲୁହ ବହେ ଅତିବେଗେ
ଦଧିର ବର୍ତ୍ତି ଦିଶଇ ପଡ଼ି ମୁନି ଅଙ୍ଗେ ।
ସବୁ ଲୁହପାକ ଗଡ଼ି ଏକଠାବେ ପଡ଼ି
ତକାବାନ୍ଧିଲା ବୁନ୍ଦାଏ ନ ଗଳକ ଗଡ଼ି ।
ମାଜିଲା ଦର୍ପଣ ପ୍ରାୟ ଦିଶଇ ତା ଜ୍ୟୋତି
ଅତ୍ୟନ୍ତ ସୁନ୍ଦର ଦିବ୍ୟ ସୁସଞ୍ଜ ମୂରତି ।
ଅନସୂୟାକୁ ନ ଦେଖି ଅସାଷ୍ଟମ ହୋଇ
କୋପେ ଗଙ୍ଗାଙ୍କୁ ସେ ମୁନି କଟାକ୍ଷରେ ଚାହିଁ ।
ମୁନି ବୋଇଲେ ଗଙ୍ଗା ତୁ ମହାପାପ କଲୁ
ଅଦୋଷେ ପତ୍ନୀକି ମୋର ବୁଡ଼ାଇ ରଖିଲୁ ।
ବ୍ରହ୍ମସ୍ତ୍ରୀ ନାଶକରି ହେଲୁ ମହାପାପୀ
ତୀର୍ଥଙ୍କମଧ୍ୟେ ନ ବସି ହେଲୁ କାଳରୂପୀ ।
ଯେବେମୋର ଭାରିଯାକୁ ନ ଦେବୁ ତୁ ଆଣି
ଗଣ୍ଡୂଷ କରି ଭକ୍ଷିବି ତୋତେ ମୁଁ ଏକ୍ଷଣି ।
ପୂର୍ବେ ଯେସନ ଅଗସ୍ତି ପିଇ ଜଳ ଗ୍ରାସି
ସାତ ସମୁଦ୍ର ଶୁଖାଇ ବ୍ରହ୍ମତେଜେ ଶୋଷି
କ କରିବୁ ଜାଣି ଯିବୁ ମୋର ହୋଇଦୋଷୀ
ତୋ ଜଳ ଶୋଷି ମୁଁ ନେବି ଭାରିଯା ସୁକେଶୀ
ଏତେବୋଲି ମୁନି ତୋଳି ଜାହ୍ନୁସାର ପାଣି
ସତ୍ୟ ସତ୍ୟ ସତ୍ୟ ବୋଲି ତିନିବାର ଭଣି ।
ଜାଣି କାଶୀବାସୀ ଆସି ଗଙ୍ଗାଙ୍କୁ କହିଲେ
ମୁନିର ପତ୍ନୀକି ଆଣି ଦିଅ ଗୋ ବୋଇଲେ ।
ଈଶ୍ୱରଙ୍କ ବଚନରେ ଗଙ୍ଗା ଦେବୀ ଯାଇ
ଅତ୍ରି ଋଷି ଭାରିଯାକୁ ଆଣିଦେଲେ ତହିଁ ।
ନିଜ ପତ୍ନୀ ଦେଖି ମୁନି ସନ୍ତୋଷ ହୋଇଲେ
ବଦନେ ଚୁମ୍ବନଦେଇ କୋଳେ ବସାଇଲେ
ଅତ୍ରି ଋଷି ନୟନରୁ ଗଳିଲା ଯେ ନୀର
ଠୁଳହୋଇ ମନ୍ଦା ବାନ୍ଧି ରହି ଏକଠାର ।
ଶୁଦ୍ଧସ୍ଫଟିକ ପରାୟ ଦିଶେ ଦିବ୍ୟ ଜ୍ୟୋତି
ସର୍ବଗୁଣେ ସୁନ୍ଦର ସେ କନ୍ଦର୍ପ ମୂରତି ।
ଦେଖି ଈଶ୍ୱର ତାହାକୁ ତୋଳଧରି କରେ
ବଳି ବଳି କରି ରଖି ପୁରୁଷ ଆକାର ।
ଅମୃତ ନୟନେ ଚାହିଁ ଦିବ୍ୟଦୃଷ୍ଟି ଦେଇ
ପୁରୁଷେକ ହେଲା ମହାବଳବନ୍ତ ହୋଇ ।
ଗୋକ୍ଷୀର ଶୁକଳ ବର୍ଣ୍ଣ ମୁକୁତାର ଜ୍ୟୋତି
ସର୍ବଗୁଣେ ସୁଲକ୍ଷଣ ମଧୁର ମୂରତି ।
କୁମରଦିବ୍ୟ ମୂରତି ଦେଖି କାଶୀବାସୀ
ଆଶ୍ୱାସନା କରି ଧୀରେ ବଚନ ପ୍ରକାଶି ।
ଅତ୍ରି ଋଷିଙ୍କର ତୁମ୍ଭେ ଅଟ ପୁତ୍ର ଗୋଟି
ଆମ୍ଭେ ସନ୍ତୋଷ ହୋଇଲୁ ତୁମେ ରଖି ଦୃଷ୍ଟି
ବ୍ରହ୍ମାଙ୍କର ନାତି ତୁମ୍ଭେ ମହାଋଷି ବଂଶ
ଜାତି ଗୋତ୍ରରେ ତୁମ୍ଭଙ୍କୁ ନାହିଁ ସମକକ୍ଷ ।
ଅଯୋନି ସମ୍ଭୂତ ତୁ ଯେ ଅଟୁ ପୁଣ୍ୟମୟ
ଯୁଗେ ଯୁଗେ ଅମର ଯେ ହେଉ ତୋର କାୟ
ଅମୃତଲୋଚନେ ଯେଣୁ ଦେଲୁ ଆମ୍ଭେ ଦୃଷ୍ଟି
ନିରନ୍ତେ ଅମୃତ ତେଣୁ କରୁଥିବୁ ବୃଷ୍ଟି ।
ଏତେବୋଲି ଅନୁସୂୟା କୋଳେ ସମର୍ପିଲେ
ଅତ୍ରି ମହାଋଷିଙ୍କର ସନ୍ନିଧିରେ ଦେଲେ ।
ଅତିଯତ୍ନ କରି ତୁମ୍ଭେ ପାଳ ହୋ ଏହାକୁ
କୁଳକୁ ଏ କୁଳଦୀପ ହୋଇବ ତୁମ୍ଭଙ୍କୁ ।
ଶୁକମୁନି ବୋଲନ୍ତି ହୋ ପରୀକ୍ଷିତ ରଜା
ଈଶ୍ୱର ମୁଣ୍ଡରେ ଚନ୍ଦ୍ର ରହି ପାଏ ପୂଜା ।

ଦେଖୁଛ ଆତଯାତ ଆକାଶେ ତେଜଛୁ ।
ଜନମ ମରଣ ବାଧା ନ ଜାଣଇ କିଛୁ ।
ସବୁ ଜୀବମାନଙ୍କର ଅଟେ ଜୀବଦାତା
ବହନ୍ତା ପୁରୁଷ ଭାର ନାହିଁ ଲଭ ହାନ ।
ପଞ୍ଚଭୂତ ଆତ୍ମାକୁ ନସ ଆବୋରୁଛୁ ଏକା
ଯାହାରେ ଦୁଷ୍ମନ୍ତ ବ୍ରହ୍ମାଣ୍ଡଖାନ ଜୀବଲେଖା ।



## ଚନ୍ଦ୍ରର କଳଙ୍କ ଧାରଣ ବୃତ୍ତାନ୍ତ

ଏକଥା ଶୁଣି ପରୀକ୍ଷ ନାମେ ମହାରଜା
ଶୁକମୁନିର ଚରଣେ କଲେ ବହୁ ପୂଜା ।
ଚନ୍ଦ୍ରଙ୍କ ଜନମ କଥା ତୁମ୍ଭ ମୁଖୁ ଶୁଣି
ଆବର କଥାଏ ମୋତେ କହ ମହାମୁନି ।
ମନରେ ସଂଶୟ ମୋର ଲାଗିଲା ବହୁତ
ଏହା ଆଦ୍ୟପ୍ରାନ୍ତ କରି କହ ତପୋବନ୍ତ ।
ଏତେବଡ଼ ଦେବତା ଯେ ଅଟେ ନିଶାକର
ସ୍ୱଦେହେ କଳଙ୍କ କମ୍ପା ହୋଇଲା ତାଙ୍କର ।
ଛିଡ଼ନ୍ତି ବଢ଼ନ୍ତି ପୁଣି ପକ୍ଷେକ ଆବର
ଦୟାକରି କହ ମୁନି ମୋହର ଆଗର ।
କେଉଁ ପାପ କରିବାରୁ କିବା କେଉଁ ଦୋଷେ
କଳାଏ କଳାଏ କ୍ଷୟବୃଦ୍ଧି ମାସେ ମାସେ ।
ଶୁକମୁନି ବୋଲେ ତୁହେ ପଚାରିଲୁ ଯାହା
ତୋର ସନ୍ଦେହ ଫେଡ଼ିଣ କହିଦେବା ତାହା
ଯେତେବେଳେ ସେ ଚନ୍ଦ୍ରକୁ କରବେଲେ ଶିବ
ଆଶ୍ୱାସି ବଚନ କହି ସେହି ମହାଦେବ ।
ଚନ୍ଦ୍ରକୁ ଯେ ଆକାଶରେ କଲେ ଅଧିକାରୀ
ବୃହସ୍ପତିଙ୍କି ହକାରି ଦେବ ତ୍ରିପୁରାରି ।
ଆହେ ବୃହସ୍ପତି ତୁମ୍ଭେ ତ୍ରିଲୋକ ପ୍ରସିଦ୍ଧି
ଚନ୍ଦ୍ରଦେବତାକୁ ଶିକ୍ଷା ଦେବ ବିଦ୍ୟାବୁଦ୍ଧି ।
ଏସନକ ଆଜ୍ଞା ଯହୁଁ ସଦାଶିବ ଦେଲେ
ଚନ୍ଦ୍ରଦେବତାଙ୍କୁ ଘେନି ବୃହସ୍ପତି ଗଲେ ।
ଆଗହୁଁ ବୃହସ୍ପତିର ଥିଲେ ଯେତେ ଛାତ୍ର
ତାହାଙ୍କ ସଙ୍ଗରେ ଚନ୍ଦ୍ର ପଢ଼ନ୍ତି ଯେ ପାଠ ।
ଅକ୍ଷର ମୂଳେ ଅଟଇ ଯେତେ ମନ୍ତ୍ରସିଦ୍ଧି
ଅଷ୍ଟ ଦିବସର ମଧ୍ୟେ ସବୁବିଦ୍ୟା ସାଧି ।
ଜାତିସ୍ମର ରୂପେ ସେହି ହୋଇଛି ଜନମ
ଭୋଜନ ଶୟନ ନାହିଁ ବଞ୍ଚଇ ସେ ଦିନ ।
ନାନା ବିଦ୍ୟାରେ ନିପୁଣ ହେଲେ ଚନ୍ଦ୍ରଦେବ
ବୃହସ୍ପତି ପାଖେ ରହି ଆଚରନ୍ତି ସର୍ବ ।
ଏଥୁ ଅନନ୍ତରେ ଯହୁଁ କେତେଦିନ ଗଲା
ଚନ୍ଦ୍ରଙ୍କୁ ଦେଖିଣ ତାରା କାମେ ବଶ ହେଲା ।
ଅସାଷ୍ଟମ ହୋଇ ଜାଲି ନ ପାରଇ ଚଳି
ଚନ୍ଦ୍ରଦେବତା ସୁନ୍ଦର ରୂପ ଝଳ ଝଳ ।
କାମ ପଞ୍ଚବାଣ ପଡ଼ି ଜଳିଲା ତା ଅଙ୍ଗେ
ଚିନ୍ତାଭରେ ତନୁ ତାର ରହିଲା ବିଭଙ୍ଗେ ।
ଚନ୍ଦ୍ରରୂପ ଗୁଣ ଭାଳି ମନେ ମନେ ଗୁଣି
ଘୋର ଦିବସ ସ୍ୱପନେ ଦେଖଇ ତରୁଣୀ ।
ଗ୍ଲାନି କ୍ଷୁଧା ତୃଷା ନିଦ୍ରା ଗୃହ ବିଧି କଥା
ଦଶମ ଦଶାକୁ ଭଜ ପାଇଲା ଅବସ୍ଥା ।
କେଶ ବାସ ଅସମ୍ଭାଳ ବଦନ ଦେଖା
ଚନ୍ଦ୍ରଦେବତାକୁ ବଳି ଥାଇ କାଟଣ୍ଡି
ଏମନ୍ତେ କେତେକ ଦିନ ଯହୁଁ ଗଡ଼ିଯାନ୍ତେ
ଚନ୍ଦ୍ରକୁ ଡକାଇ ଦିନେ କହିଲା ଏକାନ୍ତେ ।
ତୁମ୍ଭେ ଚନ୍ଦ୍ରଦେବତା ହୋ ପ୍ରତିକାର କର
ଏ କାମମୁଖରୁ ମୋତେ ବାହେରକ ଉଦ୍ଧର ।
ତୋ ରୂପ ଗୁଣକୁ ଦେଖି ବଳିଲା ମନୀଷା
ସୁଲକ୍ଷଣ ପୁରୁଷ ତୁ ପୂର ମୋର ଆଶା ।
ନାସ୍ତି କଲେ ସ୍ତ୍ରୀହତ୍ୟା ଲାଗିବଟି ତୋତେ
ତୁ ମୋହର ପ୍ରାଣବନ୍ଧୁ ରଖ ତୁହେ ମୋତେ
ଏତେକ ବୋଲି ସୁନ୍ଦରୀ ଗୁରୁତଳ୍ପ ଲଜ୍ଜା
ଚନ୍ଦ୍ରକୁ ଯେ କୋଳକଲା ଗୁରୁର ଭାରିଯା ।
ଚନ୍ଦ୍ରମା ସଙ୍ଗରେ ଭାବ କଲା ଦେବୀ ତାରା
ପାପକୁ ନ ଡରି ଚନ୍ଦ୍ର କଲା ପରଦାରା ।
ଯଦ୍ୟପି ଜଳ ଅଗ୍ନି କି କରି ଏକଠାବ
ତରଳ ମିଳାଇଗଲା ପ୍ରାପ୍ତ ଏହି ଭାବ ।
ବସିଥିବା ଘୃତଖଣ୍ଡ ସମ ନାରୀ ଅଙ୍ଗ
ତରଳିଲା ଅଗ୍ନି ତୁଲ୍ୟ ପାଇ ପୁଂସ ସଙ୍ଗ ।
ଏମନ୍ତେ ବେନି ଜନର ବଢ଼ିଲା ପୀରତି
ବୃହସ୍ପତି ସେହି କଥା କେତେ ନ ଜାଣନ୍ତି ।
ପଦ୍ମିନୀ ଚିତ୍ରିଣୀ ଆଉ ଶଙ୍ଖିନୀ ହସ୍ତିନୀ
ଏମନ୍ତେ ଚଉଜାତିରେ ଦୁଷ୍ମନ୍ତ କାମିନୀ ।
ପୁରୁଷଙ୍କି ଚଉଜାତି ଅଟନ୍ତି ସଜନ
ଶଶ ମୃଗ ବୃଷ ଅଶ୍ୱଜାତି ଏହି ଜାଣ ।

ଶଶଜାତ ପୁରୁଷର ପଦ୍ମ ମା ଯେ ଯୋଗ୍ୟା
ମୃଗଜ ତ ପୁରୁଷର ଚିତ୍ରିଣୀ ଯେ ଶ୍ରେଷ୍ଠା ।
ବୃଷ ଜାତ ପୁରୁଷର ଯୋଗ୍ୟା ଯେ ଶଙ୍ଖିନୀ
ଅଶ୍ୱଜାତ ପୁରୁଷକୁ ଶ୍ରେଷ୍ଠ ହସ୍ତିନୀ ।
ଯେତେବେଳେ ଧାତା ଏହି ସୃଷ୍ଟି ରଚିଥିଲା
ସ୍ତ୍ରୀ ପୁରୁଷକୁ ଯେମନ୍ତ ପ୍ରକାର ରଚିଲା ।
ଯେବଣ ପୁରୁଷକୁ ଯେ କଲା ଯେଉଁ କନ୍ୟା
ପଣ୍ଡିତ ଲୋକମାନେ ତା ବିଚାରନ୍ତି ପିନା ।
ବେଦଶାସ୍ତ୍ର ନ ଜାଣି ଯେ କରନ୍ତି ବିଭା
ଅପ୍ରିତିକ୍ରା ବୋଲ୍ଲୁରଣୀ ହୁଅନ୍ତି ବିଧବା ।
ଶଶ ସଙ୍ଗେ ହସ୍ତିନୀର ଭେଟ ନ କରିବ
ବୋଲ୍ଲୁରଣୀ ହେବ କନ୍ୟା କୁଳ ନାଶିଯିବ ।
ଅଶ୍ୱ ସଙ୍ଗେ କରାଇଲେ ପଦ୍ମିନୀ ସଂଯୋଗ
ଘଟିବ ସେହି କନ୍ୟାକୁ ନିଶ୍ଚେ ମୃତ୍ୟୁଯୋଗ ।
ବିଧାତା ରଚିଥିଲେ କେବେ ନ କରିବ ଆନ
ଜାଣି ଶୁଣି ବିଭା ଦେବ ବେଦର ବିଧାନ ।
ବୃହସ୍ପତି ବୃଷଜାତ ପୁରୁଷ ଅଟନ୍ତି
ପଦ୍ମିନୀ ଜାତି ଅଟଇ ତାର ରୂପବତୀ ।
ଚନ୍ଦ୍ରମ ଯେ ଶଶଜାତ ପୁରୁଷ ଅଟଇ
ତେଣୁ ତାର ସଙ୍ଗ ତାର ପୀରତି ବଢ଼ାଇ ।
କେତେଦିନ ଗର୍ଭବାସ ହେଲା ତାଙ୍କୁ ବାଳୀ
ଦିନକୁ ଦିନ ପୀରତି ବଢ଼ିଲା ଦ୍ୱିଗୁଣ ।
ସମ୍ପୂର୍ଣ୍ଣ ଦଶମାସରେ କଲା ଯେ ପ୍ରସବ
ପୁତ୍ରଜାତ କଲା ରୂପେ ଜନେ କାମଦେବ ।
ଅତ୍ୟନ୍ତ ସୁନ୍ଦର ରୂପ ସେହି ବାଳବର
ରୂପଗୁଣରେ କାମଦେବ ନୋହେ ସମକକ୍ଷ ।
ବୃହସ୍ପତି ପାଞ୍ଜି ଯେବେ ଚକ୍ଷଣେ ଗଣିଲେ
ଏ ପୁତ୍ର ଆମ୍ଭର ନୁହେଁ ଧ୍ୟାନରେ ଜାଣିଲେ ।
କୁଳକୁ ଦୂଷଣ ହେବ ବୋଲି ନ କହିଲେ
ପୁତ୍ର ରୂପଗୁଣ ଦେଖି ଯତନେ ପାଳିଲେ ।
ଧାର୍ମିକ ପଣ୍ଡିତ ଯେହୁ ଗୁଣବନ୍ତ ଗାଈ
ଅକର୍ମ କଥା ଗୋପନ କଲେ ତେଣୁ ଚହିଁ ।
ଆୟୁ ବଳ ଧନ ଗୃହ ଛିଦ୍ର ଆତ୍ମନାମ
ଗୁରୁନାମ ଧନ ନାଶ ବର୍ଣ୍ଣ ଅପମାନ ।
ଏ ନବ କର୍ମ ଗୋପନ ଯେହୁ କରିପାରି
ନିଶ୍ଚେ ଜାଣିବେ ସେ ନର ଦେବଲୋକ ପରି

ଅନ୍ତର୍ଗତେ ବୃହସ୍ପତି ବିଚାରି ଏ କଥା
ଫେଡ଼ି ନ କହିଲେ ମନେ ପାଇ ବଡ଼ବ୍ୟଥା
ଗୁରୁ ବୋଇଲେ ସ୍ତ୍ରୀଙ୍କି ନ ଯିବ ବିଶ୍ୱାସ
ଯେ ବିଶ୍ୱାସ ଯିବ ତାର ଅଳପ ଆୟୁଷ ।
ସର୍ପ ରଜା ବାଘ ଭାଲୁ କୁମ୍ଭୀର ଯେ ହସ୍ତୀ
ଖଡ଼୍ଗଧାରୀ ଶିଙ୍ଘ ଧାରୀ ଯେ ଯୁବତୀ ।
କାଳର ଉଗର ଜାଣ ଏମାନେ ଅଟନ୍ତି
ବିଶ୍ୱାସ ନ ଯିବ ବୋଲି କହି ବୃହସ୍ପତି ।
ଜାଣି ଶୁଣି ଏମାନଙ୍କୁ ବିଶ୍ୱାସ ଯେ ଗଲା
ନିଶ୍ଚୟ ଜାଣିମ ସେହି ଆୟୁଥାଉଁ ମଲା ।
ବୃହସ୍ପତି ବୋଲନ୍ତି ଯେ ଯୁବତୀଏ ମନ୍ଦ
ଚନ୍ଦ୍ରକୁ ସୁନ୍ଦର ଦେଖି ତାର କଲା ଛନ୍ଦ ।
ଆତ୍ମପର ସ୍ୱାମୀକି ଯେ କଲା ପରିତ୍ୟାଜ୍ୟା
କୁଳବତୀ ସ୍ତ୍ରୀ ହୋଇ ଗୁପ୍ତଲାଜ ଲଜ୍ଜା ।
ବୃଦ୍ଧସ୍ତ୍ରୀ ହୋଇନାହିଁ ପାପକୁ ତା ଚିତ୍ତ
ବାକ୍ସ୍ତମନ୍ତ ଶିଶୁର ସଙ୍ଗରେ ପୀରତି ।
ସ୍ୱେଚ୍ଛାପୀରତିକ ଏହି କଲା ପୁଣି ଇଚ୍ଛା
ବେଶ୍ୟାପରା ବଳେ କଲା ରମଣ ସ୍ୱଇଚ୍ଛା ।
ପୁଣି ବିଚାରିଲେ ଚନ୍ଦ୍ର ମୋତେ ନଷ୍ଟକଲା
ଗୁରୁପତ୍ନୀ ବୋଲି ମନେ ବିଚାର ନ କଲା ।
ଗୁଣବନ୍ତ ହୋଇ ଏତ ଅରଜିଲା ପାପ
ଦୋଷ ଅନୁରୂପେ ଦେବା ଏହାକୁ ଯେ ଶାପ
ଜାଣି ଯେବେ ଚନ୍ଦ୍ର କଲା ଗୁରୁପତ୍ନୀ ଭୋଗ
ନ ଯାଉ ନ ମରୁ ପୀଡ଼ା ଦେଉ ସଦା ରୋଗ ।
ଆମ୍ଭଙ୍କୁ କଳଙ୍କ ଭୂରେ ଦେଲା ଜନମୁଖେ
ଏ ପାପ ଖଣ୍ଡନ ନୋହୁ ଥାଅ ମହାଦୁଃଖେ ।
ଶୁକମୁନ ବୋଇଲେ ହେ ପରୀକ୍ଷିତ ଶୁଣ
ତୁମ୍ଭେ ପଚାରିଲ ଚନ୍ଦ୍ର ଦେବତାର ଗୁଣ ।
ସେହି ଦୋଷରୁ ଚନ୍ଦ୍ରର କଳଙ୍କ ମୁରତି
ପକ୍ଷେ ପକ୍ଷେ ଧରଇ ସେ ଭିନ୍ନ ଭିନ୍ନ ଗତି ।
ଗୁରୁଙ୍କର ଶାପକୁ ସେ କରୁଛନ୍ତି ଭୋଗ
ନ ଯାଅନ୍ତି ନ ମରନ୍ତି ଗୁରୁଶାପ ଯୋଗ ।
ଦେବତାମାନଙ୍କୁ କଲାକର୍ମ ପାଉ ନାହିଁ
ମାନବ ଗୁରୁକୁ ପାଉ ଯିବ ଅବା କାହିଁ ।

—o—

## ବୁଧର ବୃତ୍ତାନ୍ତ

ଏଥୁଅନନ୍ତରେ ପୁଣି ପରୀକ୍ଷିତ ରାଜେନ୍ଦ୍ର
ବିନୟ ଭାବକୁ ବହି ପଚାରି ମୁନି ପାଦେନ୍ଦ୍ର ।
ହେ ମୁନି ଚନ୍ଦ୍ରଙ୍କ ଠାରୁ ପୁତ୍ର ଜାତହେଲା
ଏଥିଉତ୍ତାରୁ କେବଣ କୃତ୍ୟ ସେହି କଲା ।
ସେହିକଥା ମହାମୁନି କହିବାକ ମୋତେ
ତେବେ ମୋ ମନ ମାନିବ ପିବଇଁ ଶ୍ରବଣତେ
ଶୁକଋଷି ମୁନିର ନାତି କହନ୍ତି ଏ ବାଣୀ
ଯାହା ପଚାରିଲ ସୋମବଂଶ ନୃପମଣି ।
ତାରାର ଗର୍ଭରୁ ଜାତ ଯେବଣ ବାଳକ
ଦିଗପାଳ ସମାନ ସେ ଶ୍ରେଷ୍ଠ ହୋଇଲେକ ।
ବୁଧ ନାମ ବହିଲା ସେ ଚନ୍ଦ୍ରର ନନ୍ଦନ
ତପେ ତୋଷିଲା ପାର୍ବତୀପତି ତ୍ରିଲୋଚନ ।
କୃଷ୍ଣ ଶୁକ୍ଳ ଏକାଦଶୀ ତିଥି ବୁଧବାର
ବାଣିଜ୍ୟ କରଣ ଯୋଗ ମାହେନ୍ଦ୍ର ଯେ ସାର
ରେବତୀ ନକ୍ଷତ୍ର ଜାଣ ବେଳ ପାଞ୍ଚଘଡ଼ି
ଜନ୍ମହୋଇ ପୁତ୍ର ତହିଁ ବେଳେ ସିଂହରଢ଼ି ।
ବୃହସ୍ପତି ଗଣିଲେ ଯେ କରେ ଖଡ଼ି ଘେନି
ଏହି ଯେ ପାଳିବ ଚରାଚର ଯେ ମେଦିନୀ ।
ଅନେକ ଯତ୍ନେ ପାଳିଲେ ତାକୁ ବୃହସ୍ପତି
ଶିଖାଇଲେ ବେଦମନ୍ତ୍ର ଆଦି ଜ୍ଞାନ ଗତି ।
ଦିନକୁ ଦିନ ତା ବୁଦ୍ଧି ବର୍ଦ୍ଧମାନ ହେଲା
ସୁସଙ୍ଗ ପାଇଣ ପୁତ୍ର ସୁବୁଦ୍ଧି ଶିଖିଲା ।
ଶିବଧ୍ୟାନ କରି ପଞ୍ଚାକ୍ଷରକୁ ଜପିଲା
ଗଳାରେ ରୁଦ୍ରାକ୍ଷମାଳ ଭୂଷଣ କରିଲା ।
ବିଭୂତି ଭୂଷଣ ଅଙ୍ଗେ କଷାବସ୍ତ୍ର ପିନ୍ଧି
ନିତି ସେବାକରେ ଶିବ ଚରଣକୁ ବନ୍ଦି ।
ଫଳ ମୂଳ ଆହାର ତା ଶିରେ ଜଟାଭାର
କୁଶଶଯ୍ୟା କରିଣ ସେ ଶୁଇଲା ତଥିର ।
ଶୀତ ବରଷା ନବାଧ ସହଇ ତା ଅଙ୍ଗେ
ଇଷ୍ଟବନ୍ଧୁ କୁଟୁମ୍ବଙ୍କେ ନାହାନ୍ତି ତା ସଙ୍ଗେ ।
ମନପବନ ବାୟୁକୁ କଲା ଏକ ଯୋଗ
ସର୍ବନାମ ସୁମରଇ ଦେହ କରି ତ୍ୟାଗ ।
ମନ ଇନ୍ଦ୍ରିୟ ନିଗ୍ରହ ସାଧିଲାକ ଜ୍ଞାନ
ସଦାଶିବ ଦେବଙ୍କର କମ୍ପିଲା ଆସନ ।

କପିଳାସ ପୁର ତେଜି ଦେବ କାଶୀବାସୀ
ବୁଧର ତପସ୍ୟା ସ୍ଥାନେ ପ୍ରବେଶିଲେ ଆସି ।
ଡିବ ଡିବ ଡମ୍ବରୁ ଯେ ବାଜେ ନବକୋଟି ।
କଣ୍ଠତଟେ ମୁଣ୍ଡମାଳ ଲଙ୍ଗଟ ଭୃକୁଟୀ ।
ନନ୍ଦୀ ଭୃକୁଟୀ ଏ ବାମ ଡାହାଣରେ ମିଳି
ସଦାନନ୍ଦ ଶୋଭା ଅର୍ଦ୍ଧଚନ୍ଦ୍ର ଯେ ମଉଳି
କୃଷ୍ଣ ପିଙ୍ଗଳ ଯେ ଜଟା ଶୋଭାବନ ମାଥେ ।
ତ୍ରିଶୂଳ ଡମ୍ବରୁ ଶୋଭା ପାଉଅଛି ହାତେ
ଲଲାଟେ ନୟନ ଜଟା ମଧ୍ୟେ ଗଙ୍ଗାଜଳ
ବାସୁକୀ ସର୍ପ କୁଣ୍ଡଳ ଲୁଳେ ଗଣ୍ଡସ୍ଥଳ ।
ଘୋର ଶବଦ କରନ୍ତି ଫୁଫୁକାର କରି
ଦ୍ୱାଦଶରୁଦ୍ର ସଙ୍ଗତେ ଦେବ ତ୍ରିପୁରାରି ।
ଶିଶୁବେଦ ଅଧ୍ୟୟନ ଦକ୍ଷିଣ ମୁଖରେ
ଝଟକଇ କାଳାନଳ ଗରଳ କଣ୍ଠରେ ।
ଅର୍ଦ୍ଧ ଅଙ୍ଗରେ ଅମ୍ବିକା କପିଳା ମଉଳି
ଶିବଗଣରେ ଶୋଭିତ ଦେବ ଯେ ତ୍ରିଶୂଳୀ ।
ହିମବନ୍ତ ନନ୍ଦିନୀ ହେ ଗଙ୍ଗା ବସୁମତୀ
ଏକେ ଏକେ ପାର୍ଶ୍ୱରେ ରହି ଖଟୁଛନ୍ତି ।
ଷଡ଼ାନନ ଗଣପତି ଅଛନ୍ତି ପାର୍ଶ୍ୱେ
ସଦାଶିବ ଆସୁଛନ୍ତି ଅତ୍ୟନ୍ତ ଉଲ୍ଲାସେ ।
ବ୍ୟାଘ୍ରଚର୍ମ ପରିଧାନ କରି କଟୀସ୍ଥଳେ
ଅନାଦି ସିଦ୍ଧ ପୁରୁଷବର ମହାଯୋଗେ ।
ତାଣ୍ଡବ ଭୈରବେ ହେଳ ସଦା ଯାର ମତି
ଅନୁଗ୍ରହ ସାଗର ସେ ଭବ ନିବାରନ୍ତି ।
ଏସନେ ସୁବେଶ ହୋଇ ଦେବ କାଶୀବାସୀ
ବୁଧ ଅଗ୍ରତେ ମିଳିଲେ ବେଗହୋଇ ଆସି
ପ୍ରସନ୍ନେ ଯେ ମହାଦେବ ବୋଇଲେ ତାଙ୍କୁ ଡାକି
ବରମାଗ କୁମରରେ ଯେ ତୋହର ଇଚ୍ଛା ।
ସଦାଶିବଙ୍କ ବଚନେ ବୁଧ ମହାମତି
କରପଦ୍ମକୁ ଯୋଡ଼ିଣ ସ୍ତୁତିରେ ଜଣାନ୍ତି ।
ବୁଧ ବୋଇଲେ ସ୍ୱାମୀହେ ଦେବ ଯେବେ ବର
ସତ୍ୟକରି ପ୍ରଭୁ କହ ମୋହର ଆଗର ।
କହନ୍ତି ବରହସିତ ହୋଇ ଶୂଳପାଣି
ତୁମ୍ଭେ ଯାହା ମାଗିବ ତା ଦେବା ଏହିକ୍ଷଣି ।
ବୁଧ ବୋଲେ ସ୍ୱାମୀ ବର ମାଗିବି ତୁମ୍ଭଙ୍କୁ
କାମ୍ୟ ବ୍ରହ୍ମ ବେଦକଥା ଦେବ ଯେ ଆମ୍ଭଙ୍କୁ ।

ସକଳ ସଂସାରେ ଏହି ସିନା କର୍ମ ବିଦ୍ୟା
ଯୋଗୀଙ୍କ ଯୋଗ ଭଙ୍ଗେ ହେବ ଯୋଗସିଦ୍ଧା ।
ଆରେକକଥା ଯେ ମୋତେ ଦେବ ଦେବରାୟେ
ବନସ୍ତର ଆୟତନ ଶତଯୁଣ ଯାଏ ।
ଏହି ଭୂମି ମଧ୍ୟେ ଯେତେ ଜନ୍ତୁଜନ୍ତ ଅବା
ସମସ୍ତେ ଯେ ରୂପବନ୍ତ ହେବେ ନବଯୁବା ।
ସିଦ୍ଧ ସାଧ୍ୟ ଦେବତା ଯେ ଗନ୍ଧର୍ବ କିନ୍ନର
ଦାନବ ମାନବ ଆଦି ନାଗ ବିଦ୍ୟାଧର ।
ବ୍ରହ୍ମା ରୁଦ୍ର ସନ୍ତତେ ଯେ ଭୂମି ନ ମାଡ଼ିବେ
ବଳେ ପଶିଲେ ତହିଁରେ ସ୍ତ୍ରୀସ୍ୱରୂପ ହେବେ ।
ଏଥୁ ପାର ହେଲେ ପୁଣି ପାଇବେ ସ୍ୱଦେହ
କହେ ପ୍ରଭୁ ଭୋଳାନାଥ ହେ ଏହି ବର ଦିଅ ।
ସଦାଶିବ ବୋଇଲେ ଯା ମାଗିଲୁରେ ବାଳା
ଯେ କୁମର ମନବାଞ୍ଛା ସିଦ୍ଧ ତା କରିବା ।
ଅସ୍ତୁ ହେଉ ବୋଲି ଚହୁଁ ଗଲେ ଅନ୍ତର୍ଦ୍ଧାନେ
ନିଶ୍ଚିନ୍ତେ ରହିଲେ ବୁଧ ମନୋହର ବନେ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଯେ ଜନ
ଆବର ଯେତେକ ଚହୁଁ ପଶୁପକ୍ଷିଗଣ
କୃଷ୍ଣାଜିନ ବାଘ୍ରଛିଆ ବରାହ ସମ୍ବର
ସିଂହ ଶାର୍ଦ୍ଦୂଳ ଆସିଣ ଏକାଠି ବିହର ।
ହରଉଦ୍ୟାନ ଅଟଇ ସେ ବନର ନାମ
ଶିବଙ୍କ ଆଜ୍ଞାପ୍ରମାଣେ ଅଛୁ ତହିଁ କାମ ।
ସେ ବନ ମାଡ଼ଇ ଯେତୁ ହୁଅଇ ସେ ସ୍ତ୍ରୀ
ଈଶ୍ୱରମାୟାକୁ ଆନ କେହୁ କହିପାରି ।
ସମସ୍ତେ ସ୍ତ୍ରୀ ପୁରୁଷ ଜଣେ କେହିଁ ନାହିଁ
ଏକାକେ ପୁରୁଷ ବୁଧ ଅଛୁ ତହିଁ ରହି ।
କରଇ ସେ କାମଭୋଗ ଈଶ୍ୱରଙ୍କ ବରେ
ବଣ୍ଡିଶ ସିଂହାସନ ଅଛଇ ତହିଁରେ ।
ଚନ୍ଦ୍ରର ସମାନେ ବୁଧ କରେ ବଇଭୋଗ ।
ବେଦଶାସ୍ତ୍ର ଶିଖିଅଛୁ ସାଧିଅଛୁ ଯୋଗ ।
ଆବର ସେ ବିଶେଷରେ ସାଧେ ବ୍ରହ୍ମବିଦ୍ୟା
ସର୍ବଗୁଣେ ସୁଲକ୍ଷଣ ଅଟେ ଯୋଗସିଦ୍ଧା ।
ଏସନେ ସେ ଅକଣ୍ଟକ ମସ୍ତି ଭୋଗ କରି
ମର୍ତ୍ତ୍ୟମଣ୍ଡଳରେ କେହି ରାଜା ନୋହେ ସରି ।
ନିଶ୍ଚିନ୍ତେ ରହିଲ ତହିଁ ବୁଧ ମହାମତି
ଦଇବ ପୁରୁଷ ସିନା ଏମନ୍ତ ବିହନ୍ତି ।

ସୂର୍ଯ୍ୟବଂଶୀ ରାଜା ନାମ ବୈବସ୍ୱତ ମନୁ
ଇକ୍ଷ୍ୱାକୁ ନାମେ ହୋଇଲା ତାହାର ଯେ ସୂନୁ ।
ସେହି ଇକ୍ଷ୍ୱାକୁର ପୁତ୍ର ରଘୁରାଜ ହେଲା
ସେହି ଠାରୁ ରଘୁବଂଶ ନାମ ବୋଲାଇଲା ।
ସେ ରଘୁରାଜାର ପୁତ୍ର ଅଶ୍ୱସେନ ହୋଇ
ଅଶ୍ୱସେନ ପୁତ୍ର ଅଜମିତ୍ର ଯେ ବୋଲାଇ ।
ମାନ୍ଧାତା ନାମରେ ଅଜମିତ୍ରର ତନୁଜ
ଦିଲୀପନାମେ ହୋଇଲା ତାହାର ଆତ୍ମଜ ।
ତାହାର ନନ୍ଦନ ପାରେଶ୍ୱର ନାମେ ରାଜା
ପୃଥ୍ୱୀ ପାଳଇ ସେହି ସେନ ଜନପ୍ରଜା ।
ପାରେଶ୍ୱର ନନ୍ଦନ ଯେ ଶୂରସେନ ଜାଣ
ଶୂରସେନ ପୁତ୍ରହେଲା ଉତ୍ତଙ୍ଗ ରାଜନ ।
ଅରୁଣ ନାମେ ହୋଇଲା ତାହାର ତନୁଜ
ଜଳପି ନାମେ ହୋଇଲା ତାହାର ଆତ୍ମଜ ।
ପ୍ରତାପୀ ସେ ରାଜା ଗୋଟା ହେଲା ଦଣ୍ଡଧାରୀ
ରହିବନେ ଏଥାକୁ କେ ନାହିଁ ସମସରି ।
ଜମ୍ବୁ ଦ୍ୱୀପ ପୃଥ୍ୱୀ ଲକ୍ଷ ଯୋଜନ ଅଟଇ
ସକଳ ରାଜାଙ୍କ ପାଦତଳେ ଖଟିଥାଇ ।
ଅଯୋଧ୍ୟାପୁରରେ ସେହି ଅଟେ ମହାରାଜା
ତାହାର ପାଦେ ଖଟନ୍ତି ବହୁତ ପରଜା ।
ସଂଗ୍ରାମେ ସେ ଶୂରବନ୍ତ ଅଟେ ରଣରଙ୍କା
ଦେବ ଦାନବରେ ନାହିଁ ତାହାକୁ ତା ଶଙ୍କା
ଏକଦିନେ ସେହି ରାଜା ସମଦଣ୍ଡ ସାଜି
ମୃଗୟା ବନୋଦେ ଯାଏ ସେନ ଗଜବାଜି ।
ରଥ ଗଜ ଅଶ୍ୱ ସଙ୍ଗେ ଚତୁରଙ୍ଗ ଦଳ
ଅପ୍ରମିତ ପଦାତିକେ ହୋଇଛି ଗହଳ ।
ମାର ମାର ଧର ଧର ଘୋର ଧ୍ୱନି କରି
ବନସ୍ତ ଭିତରେ ସର୍ବେ ଅସ୍ତ୍ର ଶସ୍ତ୍ର ଧରି ।
ଦଇବର ଘଟସୂତ୍ର କେ କରିବ ଆନ
ପ୍ରବେଶ ହୋଇଲେ ହର ଉଦ୍ୟାନ କାନନ ।
ସମସ୍ତେ ବାଟ ଗୁଡ଼ିଣ ଝଂସାଇ ପଶିଲେ
ବିଶ୍ୱନାଥଙ୍କ ଆଗରେ ସ୍ତ୍ରୀରୂପ ଧଇଲେ ।
ରାଜାର ପାତ୍ର ଅମାତ୍ୟ ଲୋକ ଆଦି କରି
ସେ ଭୂମି ମାଡ଼ିବା ମାତ୍ରେ ସର୍ବେ ହେଲେ ସ୍ତ୍ରୀ
ସ୍ତନ ଯଉବନ, ଗୁଡ଼ ପୁରୁଷର କେଶ
ଖୋସାଖୋସଣି ନବୀନ ଯୁବତୀ ସଦୃଶ ।

ନାସାରେ ବସଣୀ ତାଙ୍କ ପଦ୍ମରେ ନୂପୁର
ଲଳରେ ମୁଖ ଚଳକୁ ଘୋଡ଼ ନୂପବର ।
ଏରୂପେ ବରୂପ ହେଲେ ରାଜା ଅଙ୍ଗବଳ
ଏକୁ ଆରେକ ବୃତ୍ତାନ୍ତ ହୋଇ ଜଳ ଜଳ ।
ସବୁର ସ୍ତନ ଯୌବନ ଦେଖିଣ ଖେଦନ୍ତ
କାହିଁରେ ଆଜ ପଶିଲ୍ ବୋଲଣ ବୋଲନ୍ତ
କେମନ୍ତେ ଜାଣିମା କାହୁଁ କାହାର ଏ ମାୟା
ପୁରୁଷ ହୋଇ ବହିଲ୍ ସ୍ତ୍ରିଶଙ୍କର କାୟା ।
ଅଶ୍ରୁତି ଯେ ଅଗୋଚର ହୋଇଲା ଏ କଥା
ଅକାରଣେ ଦେହ ଯେଣ ପାଇଁଲ୍ ଅବସ୍ଥା
କେ କଲା ଏତେକ କୃତ୍ୟ ଜାଣିମା କେମନ୍ତେ
ଜଳନ୍ଧର ବନ୍ଧ୍ୟା ଆଣି ଥାପିଲା କେ ଏଥେ ।
ଏତେକ ବର୍ତ୍ତର ତହୁଁ ଗଲେ ଅନ୍ତକ୍ଷେଗେ
ନଗର ଏକ ଦେଖିଲେ ଅଛି ଅଗ୍ରଭାଗେ ।
ଧାଡ଼କାରେ ମିଳଲେ ସେ ନଗ୍ର ସନ୍ନିଧାନେ
ନଗର ଦେଖି ସନ୍ତୋଷ ହେଲେ ମନେ ମନେ
ସେ ନଗର ଭିତରକୁ ପଶନ୍ତେ କୁମାରୀ
ପୁରୁଷ ଜଣେ ନାହାନ୍ତି ସମସ୍ତେ ତ ସ୍ତ୍ରିରୀ ।
ପୁରୁଷ ମାନଙ୍କ ଚିହ୍ନି ଜଣେ କେହୁ ନାହିଁ
କେଜ୍ଞ କେଳ ଚନ୍ତାଗ୍ରସ୍ତ ହେଲେ ତାହା ଗୁହିଁ
ଧଇଁର୍ଯ୍ୟ ହୀନ ହୋଇଲେ ସବୁ ସ୍ତିରୀ ବେଶି
ବୁଦ୍ଧି ବଳ ହରାଇଲେ ଜାଗେମ ହୋଇ ଦୁଃଖୀ ।
ନଗର ଭିତରେ ପଶି ଖଣ୍ଡେଦୂର ଗଲେ
ବୁଧଙ୍କ ଗୃହରେ ଯାଇ ପ୍ରବେଶ ହୋଇଲେ ।
ବକଳ ବୃତ୍ତାନ୍ତ ପୂର୍ବ କଥାକୁ ସୁମରି
ବୁଧ ଭଗ୍ବରଲେ କାହୁଁ ଆଇଲ ସୁନ୍ଦରୀ ।
ଅପୂର୍ବ ସୁନ୍ଦରୀ ତୁମ୍ଭେ ବନେ ଦେଖି ନାହୁଁ
ଏ ଦେଶ ଭିତରେ କମା ପଶିଲ ଗୋ କାହୁଁ
ଚନ୍ତାଭର ହୋଇବାରୁ ବାକ୍ୟ ନ ସ୍ଫୁରଇ
କମା ଭ୍ରମୂଅଛ ତୁମ୍ଭେ ସ୍ତିରୀ ରୂପ ହୋଇ ।
ବୁଧର ବଚନ ଶୁଣି ରାଜା କହେ ଧୀର
ଅମଳନ ସୂର୍ଯ୍ୟବଂଶୀ ଇଲପି ନୃପତି ।
ଉବତଳେ ମୋତେ କେହି ନାହିଁ ସମସର
ନବଖଣ୍ଡ ମେଦିନୀରେ ଅଟେ ଦଣ୍ଡଧାରୀ ।
ସମଦଣ୍ଡ ଯେନ ମୁହିଁ ମୃଗୟା ଅଇଲ
କେବଣ ଶାପେ ଏ ବନେ ସ୍ତୀରୂପ ପାଇଲ ।

ବଳଶୌର୍ଯ୍ୟ ନାଶ କଲ ହରଇ ବଭୂତି
କାଳବଶେ ଆସି ହେଲ ସ୍ତିରୀ ରୂପ ଏଥି ।
କେବଣ ପୁରୁଷ କଲା ଏସନକ ମାୟା
ସୈନ୍ୟ ସହିତେ ଧଇଲ୍ ସ୍ତିରୀଙ୍କର କାୟା ।
ଇଲପି କହିଲା ଯହୁଁ ଏସନକ ବାଣୀ
ହସିଲେକ ଚନ୍ଦ୍ରସୁତ ରାଜା କଥା ଶୁଣି ।
ବୁଧ ବୋଇଲା ମୁଁ ଯାହା ଲେଡ଼ୁଥିଲ ଯୋଗେ
ଦଇବ ପୁରୁଷ ଆଣି ଦେଲା ତାହାଙ୍କ ଭାଗ୍ୟେ ।
ପ୍ରତ୍ୟକ୍ଷେ ରାଜା ଏ ସୂର୍ଯ୍ୟବଂଶେ ଉତପତ୍ତି
ଉତ୍ତମ ମୋ ବଲ୍ଲଭପ୍ରିୟ ହେବ ଏ ଯୁବତୀ ।
ଏ ବନସ୍ତ ମାଡ଼ନ୍ତେ ଏ ସ୍ତିରୀରୂପ ହେଲ
ଆଦର ବିଶେଷ ମୋର ଗୃହକୁ ଅଇଲ ।
ଦଇବ ଆଣି ଏହାକୁ କଲା ମୋତେ ଭେଟ
କଷ୍ଟେ ଜାଣିଲ ହାଇଲ ଆଜ ପୁଣ୍ୟବାଟ ।
ଏହାର ଗର୍ଭରେ ଯେବେ ହୋଇବ ତନୁଜ
ସପ୍ତଦ୍ୱୀପା ପୃଥ୍ୱୀରେ ହେବ ମହାରାଜ ।
ଏହାକୁ ଯେଣ ସମସ୍ତେ ମୁହିଁ ବଳସିବ
ବବଧ କ୍ରୀଡ଼ା ଭୋଗ ମୁଁ ଏହାସଙ୍ଗେ କରିବ ।
ଏତେ ବୋଲି ଇଲପିଙ୍କ ଭିତରକୁ ନେଲେ
ଅନ୍ତଃପୁରେ ଯୁବତୀଙ୍କ ସଙ୍ଗରେ ଥୋଇଲେ ।
କୁଳ ଗୋତ୍ର ଗୁଣମାନ ମନରେ ସୁମରି
ସୁଖେ ବଳସିଲା ଚିହ୍ନି ସଉଭାଗୀ ନାରୀ ।
ବିଶେଷେ ପୁରୁଷ ପୁଣି ଯୁବତୀ ହୋଇଲ
ଦେବ ନର ନାଗଲୋକ ସକଳ ମୋହିଲା ।
ଯୁବତୀ ରୂପକୁ ଧରି ସେ ଇଲପି ରାଜା
ବୁଧଙ୍କର ହୋଇଲାକ ପ୍ରିୟବତୀ ଭାର୍ଯ୍ୟା ।
ଦଣ୍ଡ ସିଂହାସନ ସବୁ ସେହି ପାଶୋରିଲା
ବୁଧର ଘରଣୀ ହୋଇ କର୍ମ ଆଦରିଲା ।
ପାତ୍ର ମିତ୍ର ଯେ ଅମାତ୍ୟ ବଳ ଥିଲେ ଯେତେ
ସ୍ତିରୀ ରୂପ ହୋଇ ଚିହ୍ନି ରହିଲେ ସମସ୍ତେ ।
ଯେଉଁ ରୂପକୁ ଧଇଲା ସେ ଇଲପି ରାୟେ
ସ୍ତିରୀଲଙ୍କୁ ବହିଲେ ଗଜ ଓଟ ହୟେ ।
ଠାବେ ଠାବେ ରହିଲେ ସେ ବନେ ସଙ୍ଗପାଇ
ପାସୋରିଲେ ଆପଣାର ଘର ଗ୍ରାମ ଚିହ୍ନି ।
ଯୁଗତେ ଯେ ଜାତି ତାକୁ ଲାଗେ ସେହି ସୁଖ
ଶାନ୍ତ ମନରେ ରହିଲେ ନୋହିଲେ ବମୁଖ ।

ଇଲ ଯେ ମହାରାଜା ସ୍ତ୍ରୀଲିଙ୍ଗ ବହିଲା
ସ୍ତ୍ରୀସ୍ୱରୂପ'ଧରି ମହାସୁଖ ସେ ପାଇଲା ।
ଏମନ୍ତ ତାଙ୍କର ଚଳି ଗଲା କେତେ ବର୍ଷ
ସମସ୍ତେ ଇଲ ରାଜା ହେଲା ଗର୍ଭବାସ ।
ପ୍ରତାପବନ୍ତ ପୁଏକ ଗର୍ଭ ଜାତ କଲା
ପୁରୁରବା ବୋଲି ନାମ ବୁଧସୁତ ହେଲା ।
ସପ୍ତଦ୍ୱୀପା ପୃଥ୍ୱୀରେ ହେଲା ଏକରାଜା
ଦେବତା ନର କିନ୍ନର କଲେ ତାଙ୍କୁ ପୂଜା ।
ସେ ପୁରୁରବା ଭାରିଯା ଉର୍ବଶୀ ସୁନ୍ଦରୀ
ଅନୁପ ନାମେ ପୁଏକ ହୋଇଲା ତାହାରି ।
ଅନୁପର ପୁତ୍ର ହେଲା ନହୁଷ ନୃମଣି
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ସେ ମାଇଲା ବରଣି ।
ସ୍ୱର୍ଗେ ସେ ଇନ୍ଦ୍ରକୁ ଜିଣି ଇନ୍ଦ୍ର ପଦ ନେଲା
ନହୁଷ ଇନ୍ଦ୍ର ବୋଲି ସେ ସ୍ୱର୍ଗେ ବୋଲାଇଲା ।
ଋଷିଙ୍କ କନ୍ଧରେ ଆପେ ହାନ୍ଦୋଳା ବୁହାଇ ।
ସର୍ପ ସର୍ପ ବେଗ କରି ଯାଅ ହେ ବୋଲଇ ।
ଋଷି ଶାପ ଦେଲେ ସର୍ପ ହୋଇଲୁ ଆମ୍ଭଙ୍କୁ
ଏ ଦେହଲେଛୁ ତୁ ସର୍ପ ହୋଇ ଯା ବନକୁ ।
ଅଗସ୍ତି ଋଷିର ଶାପ ମେଣ୍ଟିଣ ନ ଗଲା
ସର୍ପ ହୋଇ ସେ ନହୁଷ ବନସ୍ତେ ରହିଲା ।
ନହୁଷର ପୁତ୍ର ନାମ ଅଟଇ ଯଯାତି
ଯଯାତିର ପୁତ୍ର ଯଦୁ ନାମେ ନରପତି ।
ଯଦୁଠାରୁ ହୋଇବାରୁ ନାମ ଯଦୁବଂଶ
ଦୁଃସହ ବଳବନ୍ତ ସେ ବଟେ ରୁଦ୍ର ଅଂଶ ।
ଯଦୁର ଭାରିଯା ନାମ ଲେହୁତା ସୁନ୍ଦରୀ
ସାତଗୋଟା ପୁତ୍ର ଜାତ ହୋଇଲେ ତାହାରି ।
ଭୋଜ ଅନ୍ଧକ କୁମୁଦ କୁରୁ ଯେ ଆବର
ବୃଷ୍ଣି ଯାଦବ ଚହାଣ ଏ ସାତ କୁମର ।
ଏହାଙ୍କ ଠାରୁ ଯେ ସାତବଂଶ ଜାତ ହେଲେ
ମଥୁରାକଟକେ ରାଜ୍ୟ କରିଣ ରହିଲେ ।
ଭୋଜନାମେ ପୁତ୍ର ସବୁ ଭାଇଠାରୁ ଜ୍ୟେଷ୍ଠ
ଭାଇମାନଙ୍କୁ ଆଦେଶ ପାଳଇ ସେ ଶ୍ରେଷ୍ଠ ।
ଭୋଜରାଜାର ହୋଇଲା ବେନି ଯେ ତନୁଜା
ସାତବଂଶର କାରେଣି ହେଲେ ସେ ଆତ୍ମଜା ।
ଭୋଜର ଜ୍ୟେଷ୍ଠ ତନୁଜ ଆବରଞ୍ଜନ
ଅଭିନବ ନାମେ ଜାଣେ ତାହାର ନନ୍ଦନ ।

ଅଭିନବର ଯେ ପୁତ୍ର ଅଶ୍ୱରଥ ହୋଇଲା ।
ଅଶ୍ୱରଥର ପୁତ୍ର ଜନଂଜୟ ବୋଲାଇଲା ।
ଜନଞ୍ଜୟ ପୁତ୍ର ନାମେ ହୋଇଲା ଅଜୟ
ପନ୍ନଗଭୂଷଣ ବୋଲି ତାହାର ତନୟ ।
ନାରାୟଣ ବିନୁ ମୁଖେ କିଛି ସେ ନ କହେ
ସେବା କରେ ନାରାୟଣ ଦେବତାର ପାଶେ
ଆବର୍ତ୍ତିକ ନାମେ ପୁତ୍ର ତାହାର ହୋଇଲା
ସେହି ପୁତ୍ର ନାରାୟଣ ସେବାରେ ରହିଲା ।
ତାର ନନ୍ଦନ ଭୂପାଙ୍ଗ ବୋଲି ମହାଶୟ ।
କୃତଧ୍ୱଜ ନାମେ ହେଲା ତାହାର ତନୟ ।
କୃତଧ୍ୱଜର ନନ୍ଦନ ନାମ ମୃଗସେନ
ଗୋପାଳ ନାମେ ହୋଇଲା ତାହାର ନନ୍ଦନ
ଗୋପାଳ ସେ ନର ପୁତ୍ର ଉଦ୍ଧାଳକ ରାଜ
ଉଗ୍ରସେନ ନାମେ ହେଲା ତାହାର ତନୁଜ ।
ମଥୁରାରେ ଉଗ୍ରସେନ ନୃପତି ଅଟଇ
ସାତବଂଶ ଯାଦବ ତା ପାରୁଶେ ଖଟଇ ।
ପ୍ରତାପ ତେଜୋବନ୍ତ ସେ ଉଗ୍ରସେନ ରାୟ
କୁଳ ମର୍ଯ୍ୟାଦାବନ୍ତ ସେ ଅଟେ ପୁଣ୍ୟମୟ ।
ବଡ଼ ଗୁଣବନ୍ତ ସେହି ମହାବଳବନ୍ତ
ଶସ୍ତ୍ର ଶାସ୍ତ୍ରରେ ଅର୍ଜିତ ଜ୍ଞାନବନ୍ତ ତାତା ।
ଉଗ୍ରସେନ ପାଟମାଣି ଅଟେ ରୂପବତୀ
ରତିକି ସେ ପଟାନ୍ତର ପଦ୍ମିନୀ ସେ ଜାତି ।
ପଦ୍ମକଳ ଦେଶ ରାଜା ପଦ୍ମନ କେଶରୀ
ତାହାଠାରୁ ଜନ୍ମିଥିଲା ଇନ୍ଦୁମତୀ ନାରୀ ।
ସୁକୁମାରୀ ସୁନ୍ଦରୀ ସେ ରୂପ ଗୁଣରାଶି
ଉଗ୍ରସେନକୁ ସେ କନ୍ୟା ସମର୍ପିଲା ଆସି ।
ପତିବ୍ରତା ଶିରୋମଣି ଉଗ୍ରସେନ ବାମା
ଦେବପୁତ୍ର ବେନି କନ୍ୟା ଜାତକଲା ରାମା ।
ଦେବକୀ ଦୈବକୀ ଦୁଇ କନ୍ୟାଙ୍କର ନାମ
ସୁକୁମାରୀ ସୁଲକ୍ଷଣ ରୂପ ଅନୁପମା ।
ଉଗ୍ରସେନର ନନ୍ଦନ ନାମ କଂସାସୁର
ତ୍ରୈଲୋକ୍ୟ ବିଖ୍ୟାତ ତାର ମହିମା ଅପାର ।
ଉଗ୍ରସେନ ପୁତ୍ର ଯେଣୁ କଂସାସୁର ମଲ୍ଲ
କୁଳକୁ କଳଙ୍କ ହେଲା ରାଜ୍ୟକୁ ସେ କାଳ ।
ଗୁରୁ ଗଉରବ ସେ ଯେ ନ ମାନଇ କିଛି
ଅହର୍ନିଶି ପାପକରେ ଧର୍ମକୁ ନ ଗଛି ।

ଗୋରୁ ବ୍ରାହ୍ମଣ ଆଦି ସେ ସକଳ ଛେଦଇ
ପରଧନ ପରସ୍ତ୍ରୀ ଦେଖିଲେ ହରଇ ।
ଦେବତା ବ୍ରାହ୍ମଣ ଆଦି ନ ମାନଇ କିଛି
ତପୋବନଙ୍କୁ ଦେଖିଲେ ବେଗେ ପୋଡ଼ି ଭଷି
ଯାକୁ ଦେଖେ ଯଦା ତାକୁ ପ୍ରାଣେ ବଧ କରି
ବଳାତ୍କାରେ ହରେ ଦେଖି ସୁନ୍ଦର୍ଯ୍ୟ ନାରୀ ।
ଅସୁର ପ୍ରକୃତି ତାର ଗର୍ବ ନାହିଁ ଦୟା
ଛଳ ମନ କପଟ ତା ହୃଦେ ବଡ଼ ମାୟା ।
ରାଜାର କୁମର ସେହୁ ବଳବନ୍ତ ଯହୁଁ
ଯାଦବ ବଳମାନେ ସେ ନ ବୋଲନ୍ତି ତହୁଁ ।
ଲୋହିତ ପିଙ୍ଗଳ ବର୍ଣ୍ଣ ତାର ଦେନି ଆଖି
ଡରନ୍ତି ନଗର ନରନାରୀ ତାହା ଦେଖି ।
କଂସର ଗୁମୁରେ ଉଗ୍ରଦୋହିଲେ କେ ଡରେ
ନଗ୍ର ଛାଡ଼ି ନରନାରୀ ଗଲେ ଦେଶାନ୍ତରେ ।
ପଡ଼ିଲାକ ହାଟ ବାଟ ବଜାର ଯେ ଯେଣୁ
ଘରେ ଘରେ ସମସ୍ତଙ୍କୁ ଲାଗିଲା ଉଚାଟ ।
ସକଳେ ଯାଦବବଳ ପଳାଇଲେ ଛାଡ଼ି
ଛିନ୍ନଭିନ୍ନ ହୋଇ ପଳାନ୍ତି ବନଗିରି ନାଡ଼ି ।
ପ୍ରାଣର ସକଳେ କେହି ଦିଗମ୍ବର ହେଲେ
କନ୍ଦମୂଳ ଭକ୍ଷି ଗିରି କନ୍ଦରେ ପଶିଲେ ।
କେବଣ ଯାଦବ ଯାଇଁ ରହିଲେ ବିଦେଶେ
କେହି ବା ରହିଲେ ଯାଇଁ କୁଣ୍ଡିନଗ୍ର ଦେଶେ ।
କେବଣ ଯାଦବେ ମତ୍ସ୍ୟ ଦେଶରେ ରହିଲେ
କେହି ବା ଯାଇ ହସ୍ତିନା ପୁରେ ବାସକଲେ
କେବଣ ଯାଦବମାନେ କଂସ ଭୟ ପାଇ
ଜରାସନ୍ଧ ନୃପତିର ସେବା କଲେ ଯାଇଁ ।
ଧାର୍ମିକ ଯାଦବମାନେ ପୁଣ୍ୟବନ୍ତ ଦେଖି
କଂସ ଆଶ୍ରେ କରି ଥୋକେ ରହିଲେକ ତହିଁ ।
ଦର୍ପିଷ୍ଟ ଦାନବ ଅଟେ ସେହି କଂସ ବୀର
ପାଦଭରେ ବସୁନ୍ଧରୀ ପାଇ ମହାଭାର ।
ଦେବ ଦାନବ ମାନବ ଜିଣିଲା ସେ ରଣେ
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ହେଲା ଏକ ଜଣେ ।
ଭୋଜବଂଶେ ଜନ୍ମକରି ହୋଇଲା ଅସୁର
ମେରୁ ପ୍ରଦକ୍ଷିଣ କଲା କଂସ ମହାବୀର ।
ଯାର ପଣ୍ଡିତ ଧାର୍ମିକ ଉଗ୍ରସେନ ପିତା
ଯାର ପରମ ସାଧ୍ୱୀ ଇନ୍ଦୁମତୀ ମାତା ।
ସେହି ମହାସତୀ ଜାଣ ଅଟେ ପତିବ୍ରତା
ସାଧ୍ୱୀମାନଙ୍କ ସଙ୍ଗେ ହୋଇଛି ଗଣିତା ।
ତାହାର ଗର୍ଭରୁ ଜାତ ହୋଇଣ ସେ ପୁତ୍ର
ସେ କେମନ୍ତେ ଅସୁର ହୋଇ ନ ମାନିଲା ଗୋତ୍ର
ଏ କଥା ସନ୍ଦେହି ମୋତେ କହ ମହାମୁନି
ପାପକ୍ଷୟ ହେବ ମୋର ଶ୍ରୁତିପଥେ ଶୁଣି ।
ଅଭିମନ୍ୟୁତାନ ଏସ ବୋଲେ ବୋଲି ହରି ହରି
ହରିଙ୍କି ଭଜିଲେ ସିନା ଭବୁଁ ଯିବ ତରି ।

—୫—

## କଂସ ଜନ୍ମ, ରାଜତ୍ୱ ପ୍ରାପ୍ତି ଓ ଗୋମନ୍ତ ଋଷିର ଶାପ ଏବଂ ବଳି ବାମନ ଚରିତ

ଶୁକମୁନି ବୋଇଲେ ହେ ପରୀକ୍ଷିତ ରାୟେ
ମନଦେଇ ଶୁଣ ଅଭିମନ୍ୟୁର ତନୟେ ।
ସାବଧାନ ହୋଇ ତୁହେ ଶୁଣ ନୃପମଣି
ମୋତେ ପୁଚ୍ଛାକଲ କଂସ ପୂର୍ବଜନ୍ମ ବାଣୀ
କଂସ ହେବେ ଉଗ୍ରସେନ ପୁତ୍ର ହୋଇଥାନ୍ତା
ଯଦୁ ଭୋଜବଂଶକୁ ସେ କର୍ମା ଦଣ୍ଡ ଦ୍ୟନ୍ତା ।
ଦୁଷ୍ଟପଣେ ରାଜ୍ୟକରେ ହୋଇ ଦୁଷ୍ଟମତି
କେମନ୍ତେ ଛାଡ଼ିବ ସେହୁ ଅସୁର ପ୍ରକୃତି ।
ଦାନବର ବୀର୍ଯ୍ୟେ ଯହୁଁ ହୋଇଲାକ ଜାତ ।
ତେଣୁ ସେହୁ କରୁଅଛି ଅନ୍ୟାୟ ବହୁତ ।
ଯଦୁରାଜାର ଭାରିଯା ନାମ ତିଳୋତ୍ତମା
ସାତପୁତ୍ର ଜାତ କଲା ନାହିଁ ତା ଉପମା ।
ଭୋଜ ବଷ୍ଟୁକୁ ମାନନ୍ତି ଦେବ ଭଗବାନ
ଚନ୍ଦ୍ରଣ ଆଦି ସେ ସବ ବଂଶ ବର୍ଦ୍ଧମାନ ।
ଯଦୁ ଆଦି ସାତବଂଶ ହେଲେ ଉତ୍ପତ୍ତି
ମଥୁରା ଦେଶରେ ଉଗ୍ରସେନ ନରପତି ।
ଭୋଜନ ମେ ପୁତ୍ର ଅଟେ ସବୁଠାରୁ ଶ୍ରେଷ୍ଠ
ସମସ୍ତ ଭସ୍ୱର ତାର ମାଥେ ବାନ୍ଧ ପାଟ ।
ଯଦୁ ନାମରେ ଯେତେକ ପୁତ୍ରଗୋଟି ଥିଲା
ଯାଦବ ବଂଶରେ ସେହି ଅଧିକାରୀ ହେଲା ।
ତେଣୁ ସେହି ଉଗ୍ରସେନ ମଥୁରା ନୃପତି
ଆଉର ଯାଦବବଳ ଯେତେକ ଅଛନ୍ତି ।
ପାତ୍ର ଅମାତ୍ୟ ଗଣରେ ଖଟନ୍ତି ରାଜାକୁ
ଉଗ୍ରସେନ ଅତିସୁଖେ ପାଳଇ ରାଜ୍ୟକୁ ।

ଅନ୍ଧକ ବଂଶରେ ଜାତ ସତ୍ରାଜିତସାର
ବୃଷ୍ଣି ବଂଶରେ ଜନମ ହୋଇଲା ଅକ୍ରୂର ।
ଭୋଜବଂଶରେ ଜନମ ହୋଇଲା ଉଦ୍ଧବ
ଚହାଣ ବଂଶରେ ଜାଣ ସାତ୍ୟକ ସମ୍ଭବ ।
କୁମ୍ଭ ବଂଶରେ ଜାତ ଅନାଧୃଷ୍ଟ ବୀର
କୁରୁବଂଶ ବସୁଦେବ ଧାର୍ମିକ ପ୍ରବର
ଏହିରୂପେ ସାତବଂଶ ହୋଇଲେ ଯାଦବ
ଶୁଣ ତୁ ହେ ମହାରାଜା ଏଥିର ପ୍ରସ୍ତାବ ।
ଜଗତଜିତା ଯାଦବେ ଛପନ ଯେ କୋଟି
ଏକେ ଏକେ ଶକତା ଯେ ବଳେ ଜଗଜେଠୀ
ଜଣେ ଜଣେ ପାରନ୍ତି ସେ ଜିଣି ସୁରପତି
ତାହାଙ୍କୁ ଦେଖିଲେ ଭୟ କରେ ଜଳପତି ।
ରଣରଙ୍ଗା ଯାଦବେ ଯେ ସମସ୍ତେ ଯୋଦ୍ଧା
ଛପନ କୋଟି ଯାଦବ ତହିଁରେ ପ୍ରସିଦ୍ଧା ।
ପୃଥିବୀର ଭାରତର ଉଶ୍ୱାସିବା ପାଇଁ
ଯତନେ ଯାଦବଦଳ ବିଧାତା ଭିଆଇ ।
ଏହାଙ୍କର ପୁତ୍ର ନାତି ଅଟନ୍ତି ଯେ ଜନ
ସଂକ୍ଷେପି ତା କହିବାକୁ କେ ହେବ ସୁଜନ ।
ଯୁଗକେ ଜାଣ ଯାଦବେ ପ୍ରତ୍ୟକ୍ଷ ଦେବତା
ଧାର୍ମିକ ବିବେକୀ ପୁଣି ପୃଥ୍ୱୀରେ ଶକତା ।
ସମସ୍ତେ ସୁଜ୍ଞାନୀ ମେଳ ସଦା ସାଧୁସଙ୍ଗେ
ହିଂସା ଅହଙ୍କାର ନାହିଁ କାହାରହିଁ ଅଙ୍ଗେ ।
ଗୁରୁ ଅତିଥି ଦେବତା ପିତୃ ସେବା କରି
ବିହରନ୍ତି ଯାଦବେ ଯେ ଧର୍ମକୁ ଆଚରି ।
ବିବେକବନ୍ତ ସୁଶୀଳ ସାଧୁ ଗୁଣବନ୍ତ
ବୀର ଶୂର ବଳବନ୍ତା ଅଟନ୍ତି ସମସ୍ତ ।
ଦାନେ ସାବଧାନ ସିଦ୍ଧ ସାଧନାଦି ଯୋଗ
ଚତୁଃପାଦ ଲକ୍ଷ୍ମୀ ଯେଣୁ ଅଇଶ୍ୱର୍ଯ୍ୟ ଭୋଗ
କ୍ଷଣକେ ଯାଦବେ କିଛି ନାହିଁ ପୁଣି ଚିନ୍ତା
ବେଦଶାସ୍ତ୍ର ପଢ଼ି ସର୍ବେ ଜ୍ଞାନମାର୍ଗେ ରତା ।
କିଛି ମାତ୍ର ପାପନାହିଁ ସର୍ବେ ପୁଣ୍ୟବେଷ୍ଟା
ପରଧନ ପରନାରୀ ନ ହରନ୍ତି କେହି ।
ନିଜଧର୍ମ ବ୍ୟତିରେକେ ଆନ ନ ଜାଣନ୍ତି
ସାବିତ୍ରୀ ସମାନ ତାଙ୍କ ନାରୀ ମହାସତୀ ।
ନଗ୍ର ନାରୀଏ ସମସ୍ତେ ବିଶୁଦ୍ଧ ଅଟନ୍ତି
ସୁବର୍ଣ୍ଣ କଳଶମାନ ପୀଢ଼ାରେ ବସାନ୍ତି ।
ନେତ ପାଟପତନୀ ଯେ ଉଡ଼େ ଫରହର
ଇନ୍ଦ୍ରଭୁବନ ତାହାକୁ ନୋହେ ସଟାନ୍ତର ।
ସବୁକାଳେ ସେ ଭୁବନେ ବହଇ ବସନ୍ତ
ସେ ରାଜାର ମହିମା କେ କରିପାରେ ଅନ୍ତ ।
ଯେତେବେଳେ ଇଚ୍ଛା କରେ ସେହି ଯେଉଁ ଦ୍ରବ୍ୟ
ଅକସ୍ମାତେ ସେ ରଜାଙ୍କୁ ମିଳେ ଆସି ସର୍ବ
ବ୍ରାହ୍ମଣ ବୈଶ୍ୟ କ୍ଷତ୍ରିୟ ଶୂଦ୍ର ଜାତି ଚାରି
ତାଙ୍କୁ ମୂଳକରି ତହିଁ ସର୍ବେ ଛନ୍ତି ପୂରି ।
କୁଳ ଅକୁଳ ସଙ୍କୁଳ କୋଟି ନେ ଛପନ
ଏହାଙ୍କ ମୂଳେ ବସଇ ମଥୁରା ରାଜନ ।
ଯେ ଯାହାର ଆଶ୍ରୟରେ ସେ ଥାଆନ୍ତି ସକଳ
ଅନୁକ୍ଷଣେ ଧର୍ମକଥା ବିସ୍ତରେ ମଙ୍ଗଳ ।
ଦଶଲକ୍ଷ ଘର ତହିଁ ବସେ ଜନ ପ୍ରଜା
ସୁଚରିତ୍ରେ ପ୍ରଜା ପାଳେ ଉଗ୍ରସେନ ରାଜା ।
ରାଜାଙ୍କର ଗଉରବ ପାଇ ତହିଁ ଲୋକେ
ଦେଶ ଘୋଷ କରତନ ନ ଯେଣନ୍ତି ଥୋକେ
କେ ରାଜତ କେ ମାହନ୍ତ କେବା ମନ୍ତ୍ରୀ ହୋନ୍ତି
କେ ଅଟେ ସାମନ୍ତ କେହି ଅଟେ ମହାରଥୀ ।
କେ ଖଟଣୀ କେ ପାହାରୀ କେହି ବା ପଦାତି
ଡଗର ହୋଇ ନଗରେ କେହି ବା ବୁଲନ୍ତି
ସାତବଂଶ ଯାଦବ ଯେ ରାଜାଙ୍କ ବିଗ୍ରହ
ଉଗ୍ରସେନ ରଜା ତାଙ୍କୁ କରୁଥାଇ ସ୍ନେହ ।
ସତ୍ରାଜିତ ଅନାଧୃଷ୍ଟ ଉଦ୍ଧବ ସାତ୍ୟକ
ବସୁଦେବ କୃତବର୍ମା ଷଷ୍ଠଜଣ ଲେଖା ।
ରାଜାର ସଙ୍ଗେ ଏମାନେ ରାଜ୍ୟକୁ ଜାରେଣୀ
ଲଙ୍ଘି ନ ପାରଇ ଉଗ୍ରସେନ ତାଙ୍କ ବାଣୀ ।
ହାରି ଗୁହାରି ବିଷର ଯେତେ ରାଜ୍ୟବିଧି
ରଜା ସନ୍ନିଧିରେ ଥାଇ କରୁଛନ୍ତି ସିଦ୍ଧି ।
ପରବସ୍ତ୍ର ନିବାରଣେ ସଂଗ୍ରାମେ ଶକତା
ବିଶ୍ୱାସୀ ଲୋକେ ଜାଣନ୍ତି ହାନଲାଭ କଥା ।
ହିତାର୍ଥୀ ଯେ ତେଜୋମୟ ଉଗ୍ରସେନ ରାୟ
ପରମବ୍ରହ୍ମ ପୁରୁଷ ଅଟେ ପୁଣ୍ୟମୟ ।
ରଜ ପାଟବଶୀ ଇନ୍ଦୁମତୀ ରାଜଜେମା
ଅତି ବୁଦ୍ଧିମନ୍ତ ସତୀ ସାଗର ଗାରିମା ।
ନଅର ଭିତରେ ଛନ୍ତି ଯେତେକ ରମଣୀ
ସବୁଠାରୁ ଗୁଣ ରୂପବନ୍ତି ସେ ଘରଣୀ ।

ସବୁଙ୍କୁ ସମ ଦେଖଇ ରାଜଚକ୍ରବର୍ତ୍ତୀ
ଲକ୍ଷ ଲକ୍ଷ ତୁରଙ୍ଗମ ମାତଙ୍ଗ ଅଛନ୍ତି ।
ସେ ମଣ୍ଡଳେ ପ୍ରଧାନ ସେ ଉଗ୍ରସେନ ରାଜା
ଅରିଦଳ କରନ୍ତି ତାର ପାଦପୂଜା ।
ଅପୂର୍ବ ସୁନ୍ଦର ସେହି ପୁରଲୋକ ଜାଣ
ଅପୂର୍ବ ବାଣୀ କହନ୍ତି ପୁରନ୍ତ୍ରୀଗଣ ।
ସେ କଟକ ଆୟତନ ପାଞ୍ଚ ଯେ ଯୋଜନ
ଅମର ବିଦ୍ୟାଧରଙ୍କ ପ୍ରାୟ ସର୍ବଜନ ।
ହାଟ ପାଟଣା ଦାଣ୍ଡ ଯେ ଦିଶଇ ସୁନ୍ଦର
ଅପୂର୍ବ ମଠ ମଣ୍ଡପ ଧବଳ ପ୍ରକାର ।
ନଗରେ ଚନ୍ଦ୍ର କି ତହିଁ ହୁଅଇ ଉଦୟ
ତେସନ ଧବଳମୟ ପୁର ଶୋଭାମୟ ।
ସୁନ୍ଦର ମଥୁରା ଗଡ଼ ପୁର ଦେଶ ଗ୍ରାମ
ତହିଁକି ଅମର ପୁର ଅଟେ ଅନୁପମ ।
ଗୋବିନ୍ଦ ଜନମ ହେବେ ଆଗହୁଁ ତା ଜାଣି
ଯତ୍ନେ ତାକୁ ବିଶ୍ୱକର୍ମା ଅଛଇ ନିର୍ମାଣି ।
ଅକଣ୍ଟକ ରାଜ୍ୟ କଲେ ଉଗ୍ରସେନ ରାୟ
ସୁନାସ କଂସ ଏ ବେନି ତାହାର ତନୟ ।
ସୁନାସ ବୋଲି ତାହାର ଯେବଣହିଁ ପୁତ୍ର
ଉଗ୍ରସେନ ଔରସେ ଜାତ ଅଟୁ କୁଳ ଗୋତ୍ର ।
କଂସାସୁର ବୋଲି ଯେଉଁ ପୁତ୍ର ଉପୁଜିଲା
କପଟେ ଦ୍ରୁମିଳାସୁର ତାକୁ ଜାତ କଲା ।
ତେଣୁ ସେ ଅସୁରାଧିପ ହେଲା କଂସରାଇ
ଅଭଗ୍ନ ପୃଥ୍ୱୀଗୋଟାକୁ ହୋଇଲାକ ଘର ।
ଧନୁ ଶୁକ୍ଳଦଶମୀ ଯେ ବୃହସ୍ପତି ବାର
ପାକାସୁରଶନ ଇନ୍ଦୁମତୀ ସେ ଅଜର ।
କୃତ୍ତିକା ନାମେ ନକ୍ଷତ୍ର ବର୍ତ୍ତି ଯେ କରଣ
ଇନ୍ଦୁମତୀ ଯମୁନାରେ କରିବାକୁ ସ୍ନାନ ।
ନବଯୁବା ମହାଦେଈ ଅଟେ ଶୁଭଶାଳୀ
ଶୁଦ୍ଧ ସ୍ନାନଅର୍ଥେ ଯାଇଁ ପତି ପାଶେ ବାଳୀ ।
ଆଜ୍ଞାଦେଲେ ଯିବ ମୁହିଁ ସ୍ନାନ କରିବାରେ
କରଯୋଡ଼ି ବାଳୀ କହେ ସ୍ୱାମୀର ଶ୍ରୀମୁଖରେ
ରାଜା ବୋଇଲେ ରାଣୀ ଗୋ ଆମ୍ଭେ ଆଗଯିବୁ
ମକର ସ୍ନାନ କାଳିନ୍ଦୀ ହ୍ରଦରେ କରିବୁ ।
ରାତ୍ର ଥାଉଁ ତୁମ୍ଭେ ଆଗ ସ୍ନାନ କର ଯାଇଁ
ତୁମ୍ଭ ପଛେ ପଛେ ସ୍ଥଳ ଯାଉଅଛୁ ମୁହିଁ ।

ଏହା ଶୁଣି ହାନ୍ଦୋଳାରେ ରାଣୀ ବିଜେକଲେ
ସମଦଣ୍ଡ ଚଳବୋଲି ଶ୍ରୀମୁଖେ ବୋଇଲେ ।
ନିତ୍ୟକର୍ମ ସାରିବାରୁ ଉଚ୍ଛୁର ଯେ ବେଳ
ସଧୀରେ ଚଳନ୍ତି ମହାଦେଈ ପ୍ରାତଃକାଳ ।
ରାଜାଙ୍କର ଯିବାରେତ ହୋଇବଟି ହେଳ
ଆମ୍ଭେ ସ୍ଥଳ ଆଗ ଯିବା ହୋଇଣ ତତ୍କାଳ ।
ହାନ୍ଦୋଳାଲଗି ହୋଇଲା ରାଜାର ବଲ୍ଲଭୀ
ନଗରୁ ବାହାର ହେଲେ ରାତ୍ର ଥାଉଁ ଦେବୀ
ଝୁଙ୍ଗଡ଼ା ଯେ ମୃଦୁମୁଲ୍ଲୀ ଧାଇ ପରିଦାସୀ
ବାହାର ହେଲେ ପୋଇଲି ଟେକିବାଇ ଧରି
ପଲଣିଆ ଆଠ ଚଳେ ଯୋଗଣିଆ ମୂଳେ
ସଧୀରେ ଚଳଇ ମହାଦେଈ ପ୍ରାତଃକାଳେ ।
ରାତ୍ର ଥାଉଁ ମିଳିଲେ ସେ ଯମୁନାର କୂଳେ
ଘଡ଼ହାସୀ ରଖିଲେ ଯେ ଝଞ୍ଜା ମୂଳେ ମେଳେ
ନଦୀର କୂଳେ ମିଳଣ ରଚିଲେ ମଣ୍ଡୁଆ
ଟେରା ବାଡ଼ ପକାଇଣ ଟାଙ୍ଗିଲେ ଚାନ୍ଦୁଆ
ଯେସନେକ ଶାସ୍ତ୍ରବିଧି ଅଛି ପୂର୍ବମତେ
ସେବକେ ସମ୍ପାଦ ଦେଲେ ଯେ ସାହାଭୂମତେ
ବାହ୍ୟକ୍ରିୟା ସାରି ଦେବୀ ଘେନି ଦାନ୍ତକାଠି
ତୈଳ ଅଙ୍ଗମର୍ଦ୍ଦନ କଲେ ଅଙ୍ଗଯାଠି ।
ମହାବାକ୍ୟ ଉଚାରିଣ ସ୍ନାନ କଲେ ଜଳେ
ସ୍ନାନ ସାରି ଆସି ଉଭା ହେଲେ ନଦୀକୂଳେ ।
ଦେବାଙ୍ଗ ରଙ୍ଗ ବସନ ଲାଗି ହେଲେ ଅଙ୍ଗେ
କର୍ପୂର ଗନ୍ଧଚନ୍ଦନ ଲେପିହେଲେ ବେଗେ ।
ନବରତନର ହାର ଗଳେ ଲମ୍ବାଇଲେ
ନାନାସୁଗନ୍ଧ ଘେନି ଶ୍ରୀଅଙ୍ଗ ଶାମଳିଲେ ।
ସୁବାସ କୁସୁମ ଘେନି ଖୋସିଲେ ଯେ ଖୋସା
ନିଷ୍କଳଙ୍କ ଚନ୍ଦ୍ରମା କି ତାରାଗଣ ମିଶା ।
ଯୁବତେ ଇନ୍ଦୁମତୀ ଯେ ଅପୂର୍ବ ସୁନ୍ଦରୀ
ରମ୍ଭା ଉର୍ବଶୀ ମେନକା ରତି ନୋହେ ସରି
କୂଳେ ବେଶ ଭୂଷା ହୋଇ ସଧୀରେ ଗମଇ
ଗଗନେ ଚନ୍ଦ୍ରମା କିବା ଆସେ ଉଦେ ହୋଇ
ସହସ୍ରେକ ପରିବାରୀ ଅଛନ୍ତି ଯେ ବେଢ଼ି
ଧୂପ ଦୀପ ଚାମର ଯେ ଅଛି କରେ ଧରି ।
ଏହି ସମୟେ ପ୍ରବେଶ ଦ୍ରୁମିଳ ଦାନବ
ସ୍ୱର୍ଗ ମଣ୍ଡଳରୁ ସେହି ଅଟଇ ଗନ୍ଧର୍ବ ।

ନନ୍ଦନବନ ଚୋଟାରେ ଥିଲ ଅଧିକାରୀ
ମର୍ତ୍ତେ ଜନମ ହୋଇଲ ଇନ୍ଦ୍ରଶାପ ଧରି ।
ଯମୁନାକୂଳରେ ଅଛି ଜମ୍ବୁନାମେ ଦେଶ
ତହିଁରେ ରାଜ୍ୟ କରଇ ଦ୍ରୁମିଳ ରାକ୍ଷସ ।
ମୃଗୟା ଆସିଲ ସେହୁ ବନ ଏକା ହୋଇ
ଯମୁନା କୂଳରେ ଇନ୍ଦୁମତୀଙ୍କ ଭେଟଇ ।
କେଶ ବାସ ଅସମ୍ଭାଳେ ଦୃଷ୍ଟି ଚଞ୍ଚଳନ୍ତ
ମଦନ ଆରତେ ଛନ ଛନ ତାର ମତ ।
ଇନ୍ଦୁମତୀଙ୍କ ଦେଖିଲ ଆକାଶରେ ଥାଇ
ନିଶ୍ଚଳ ହୋଇ ରହିଲ ରୂପକୁ ଅନାଇଁ ।
କନ୍ୟାର ସୁନ୍ଦର ରୂପ ଦେଖି ମହାବଳୀ
ସ୍ତମ୍ଭୀଭୂତେ ରହିଲ ସେ ନ ଯାଉଲ ଚଳି ।
ମଦନରେ ଅଚେତ ହୋଇଲ ତା ଅଙ୍ଗ
ଭେଦିଲକ ପଞ୍ଚଶର ପୀଡ଼ିଲ ଅନଙ୍ଗ ।
ଲୋମମୂଳୁ ଝାଳ ତଣ୍ଡି ଉଲେ ଅବହେଳେ
ନୟନରୁ ଅଶ୍ରୁଜଳ ବହଇ ଝରିଲେ ।
କେଳିକୁଟେଳ ଲଗିଲ ଅଙ୍ଗେ କାମଜ୍ୱାଳା
ଇନ୍ଦୁମତୀ ରୂପ ତାର ହେଲ ଜପାମାଳା ।
କେହ୍ଣ ବାଟେ ଏହାକୁ କରିବ ରମଣ
ଏତେକ ଭାଳି ଅମାନୁ ଭାବୁଛି ତକ୍ଷଣ ।
ଅସୁର କାମରୂପୀ ସେ ଜାଣେ କୁଟମାୟା
ଧାଷ୍ଟିକାରେ ଧଇଲ ସେ ଉଗ୍ରସେନ କାୟା ।
ଇନ୍ଦୁମତୀ ଆଗେ ଯାଇଁ ହୋଇଲକ ଉଭା
କାମଦେବ ପ୍ରାୟେ ସେହୁ ହୋଇ ନବଯୁବା ।
ହସ୍ତେ ଖଣ୍ଡା ଫଳା ଧରି ମିଳେ ଆଗସରି
ସକଳ ପରିବାରଏ ଗଲେ ଅପସରି ।
ଉଗ୍ରସେନ ରାଜା ବୋଲି ଆଡ଼ ହୋଇଗଲେ
ସେ ଅସୁର ମାୟା କେହୁ ଜାଣି ନ ପାରିଲେ
ପତିବ୍ରତା ସ୍ତ୍ରୀ ସେହୁ ଇନ୍ଦୁମତୀ ରାଣୀ
ଏକଥା କପଟ ବୋଲି ନ ପାରିଲ ଜାଣି ।
ପତିପ୍ରାୟେ ବୁଝି ସେହୁ ନିଉଛାଳି କଲ
କରପଦ ଯୋଡ଼ି ତାର ସମ୍ମୁଖରେ ରହିଲ ।
ଦ୍ରୁମିଳ ବୋଇଲ ସଖି ପାଖକୁ ମୋ ଆସ
ତୁହି ମୋର ପଞ୍ଚଭୂତ ଆତ୍ମାର ବିଶ୍ୱାସ ।
ତୁମ୍ଭ ବିନା ନାହିଁ ମୋର କାହାକୁ ଯେ ଆଶା
ପିଣ୍ଡର କାରଣୀ ମୋର ଅଟ ଗୋ ଭରସା ।

ଏତେବୋଲି ରାଣୀଙ୍କ ସେ ବସାଇଲ କୋଳେ
ମୁଖରେ ଚୁମ୍ବନ ଦେଲ ମଦନ ବିକଳେ ।
ତାହାର ଆରତ ଦେଖି ରାଣୀର ଉତ୍ତର
ଏ କାଳରେ ନୁହଇ ଏ ଉଚିତ ବେଭାର ।
ଦେବଗୃହେତ ନଦୀକୂଳ ଚଉକତି ଲୋକ
ରଜନୀର ଶେଷକାଳ ଘେନ ମୋର ବାକ୍ୟ ।
ଉଚିତ ନୁହେ ହେ ନାଥ ନଗରକୁ ଯିବା
ମୁଁ ତୁମ୍ଭର ଦାସୀ ମୋର ବଚନ ଘେନିବା ।
ଶାସ୍ତ୍ରର ନିଷେଧ କଥା କରିବ କେମନ୍ତେ
ବଳ ଆୟୁଷ ତୁଟଇ ରମିଲେ ପ୍ରଭାତେ ।
ରାଣୀର ମୁଖୁଁ ଦାନବ ଏ ବଚନ ଶୁଣି
ହସି ହସି ଧୀରେ ଧୀରେ କହେ ମୃଦୁବାଣୀ ।
ଏ ଅପୂର୍ବ ସ୍ଥାନ ସଖି ପାଇଥାଇ ଆଜ
ଟେରବାଡ଼ ମଡ଼ଅଛି ନ ପାଅ ଗୋ ଲାଜ ।
ବେଭାରେ ମୁଁ ନବଯୁବା ତୋର ରୂପ ଦେଖି
କେମନ୍ତେ ଏ ରମ୍ୟସ୍ଥାନ ମୁଁ ଛାଡ଼ିବ ସଖି ।
ଆଉଗୋ ସଖି ଲଗିଅଛି ମୋତେ କାମବାଧା
ନ ରାଜ ସୁନ୍ଦରୀ ତୁ ଗୋ ମୋହର ଶରଧା ।
ଲଙ୍ଘିଲେ ବଚମାଣା ଘୋଟିବ ଗୋ ମୋତେ
ପତିବ୍ରତା ହୋଇ ଏହା କରିବୁ କେମନ୍ତେ ।
ମାୟାର ରଜାର ବାଣୀ ଶୁଣି ଇନ୍ଦୁମତୀ
ମଉନେ ରହିଲ ସ୍ୱାମୀ ମନେ କରି ସତି ।
ଆପଣାର ସ୍ୱାମୀ ଭାଳି ସନମତ କଲ
ପତିବ୍ରତା ପତିକଥା ଲଙ୍ଘି ନ ପାରିଲ ।
ରାଜା ରାଣୀ ମଣି ଦୁହେଁ ଏକାନ୍ତ ହୋଇଲେ
ପରିଜନମାନେ ଜାଣି ଦୂର ହୋଇଗଲେ ।
ପଡ଼ିଲକ ଟେରବାଡ଼ ଦୂରହେଲେ ଲୋକେ
ପଦ୍ମବନ ଗଜମର୍ଦ୍ଦ ଲାଗେ କି ନିଃଶଙ୍କେ ।
ରାକ୍ଷସର ସଙ୍ଗେ କାହିଁ ମାନବୀର ସଙ୍ଗ
ମୂର୍ଚ୍ଛାଗଲ ରାଣୀ ତାର ସର୍ବାଙ୍ଗ ବିଭଙ୍ଗ ।
ଘଡ଼ିକର ଅନ୍ତେ ସତୀ ଚେତନା ପାଇଲ
ଦାନବ ମୁଖକୁ ଆକ୍ଷି ମେଲାଣ ଚାହିଁଲା ।
ଧଡ଼ପଡ଼ ହୋଇ ଉଠି ବସିଲା ସୁନ୍ଦରୀ
ବୋଇଲା ଚାମର କୁରେ ମୋହ ଦଣ୍ଡଧାରୀ
ଉଗ୍ରସେନ ରାଜଚିହ୍ନ ତୋର ଦେହେ ନାହିଁ
ସର୍ବଗୁଣେ ସୁଲକ୍ଷଣ ସେ ରାଜା ଅଟଇ ।

ଆରେ ଆରେ ପାମର ତୁ ନୋହୁ ମୋର ନାହା
କେବଣ ପାପିଷ୍ଟ କୁଷ୍ଠରୂପେ କଲୁ ଏହା ।
ସ୍ୱାମୀର ରୂପ ମୋହର ଧଇଲୁ କପଟେ
ବଳେ ବିଡ଼ମ୍ବନା ମୋତେ କଲୁ ଜଳଘାଟେ ।
ମୋ ଧର୍ମଦେବତା ପୂର୍ବେ ଏହା ଅର୍ଜିଥିଲେ
ଦଇବ ଲକ୍ଷଣ ଯୋଗୁଁ ଜାଣି ନ ପାରିଲି ।
ରାଜାର ବଳିଷ୍ଠ ମୂର୍ତ୍ତି ରାଜାର ଦୁହିତା
ଜାତିରେ ପଦ୍ମିନୀ ମୁହିଁ ନାରୀ ପତିବ୍ରତା ।
ରାଜା ଉଗ୍ରସେନର ମୁଁ ନୟନ ସଙ୍ଗାଳି
ଫବଡ ଅଙ୍ଗରେ ମୋର ଲଗାଇଲୁ କାଳି ।
ପୂର୍ବେ ଅର୍ଜିଥିଲୁ ତୁହି ସାଧି କେଉଁ ଯୋଗ
ସିଂହ ଘରଣୀ ଶୃଗାଳ ହୋଇ କଲୁ ଭୋଗ ।
ଆହୋ ଦଶଦିଗପାଳେ ତୁମ୍ଭେ ସବୁ ଜାଣ
ଭୋଜବଂଶ ରାଣୀ ହୋଇ ହେଲି ଅକାରଣ ।
ଅଜ୍ଞାନ ପାମର ମୂଢ଼ ଏହି ମୂର୍ଖ ଜାତି
ଧର୍ମକୁ ହିଂସାସୀ ମୋତେ ଏତେ ଦେଲା ଶାସ୍ତି
ଭର୍ଗଙ୍କ ପ୍ରଭୁର ମୋର ପତିବ୍ରତା ସେବା
ଆଜ ପତିବ୍ରତାପଣ ଥାଇ କ କରିବା ।
ମନେ ପରପୁରୁଷକୁ ମୋର ଆଶା ନାହିଁ
ଏଡ଼େବଡ଼ ଧର୍ମ ମୋର ନାଶିଲୁ କପାଇଁ ।
ଆରେ ଦୁରାତ୍ମର କହ ତୋ ସ୍ୱରୂପ ମୋତେ
ଏହିକ୍ଷଣି ଭସ୍ମ ରାଶି କରିବି ମୁଁ ତୋତେ ।
କେବଳ ତୁଳେ ତୁ ଜାତ ନାମ ତୋର କସ
କପାଇଁ ମୋହର କୁଳଧର୍ମ କଲୁ ନାଶ ।
ଉଗ୍ରସେନ ରାଜାର ମୁଁ ଅଟେ ପାଟରାଣୀ
ମହାପାତକ ସମୁଦ୍ରେ ଭସାଇଲୁ ଆଣି ।
ଦେବ କି ଦାନବ ତୁରେ ସ୍ୱରୂପ ତା କହ
ଏହିକ୍ଷଣି ଭସ୍ମ ରାଶି କରିବି ତୋ ଦେହ ।
ଏତେବୋଲି ମହାଦେଈ କୋପଭର ହୋଇ
କହନ୍ତି ସେ ଦାନବର ବଦନକୁ ଚାହିଁ ।
ନୋହୁ ତୁତ ଉଗ୍ରସେନ ରାଜାରେ ପାମର
ଗୁପତ ସଙ୍କେତମାନ ନାହିଁ ତୋ ଶରୀର ।
କପଟେ ତୁ ମୋର ସତୀପଣ କଲୁ ନାଶ
ଝଷ୍ଟେ କୋପାନଳେ ତୋତେ କରିବି ପାଉଁଶ
କହୁଁ କହୁଁ ବର୍ଣ୍ଣ ତୁଲ୍ୟ ଦିଶିଲା ପ୍ରଚଣ୍ଡ
ଅଧର କମ୍ପାଇ କହେ ବଚନ ଅଖଣ୍ଡ ।

ଦେଖିଣ ଦାନବ ମହାଭୟ ଯେ ପାଇଲା
କରପଟ ଯୋଡ଼ି ତାର ସମ୍ମୁଖରେ ରହିଲା ।
କାର୍ପଣ୍ୟ ହୋଇଣ ପୁଣି ବୋଲେ ମହାବଳୀ
ସାବଧାନ ହୋଇ ଶୁଣ ଉଗ୍ରସେନ ନାରୀ ।
ସ୍ୱର୍ଗ ବିଦ୍ୟାଧର ମୁଁ ଗୋ ଇନ୍ଦ୍ରବନେ ଥିଲି
ସୁରପତି ପାଦରେ ମୁଁ ଦୋଷ ଅରଜିଲି ।
ବାସବର ଶାପେ ମୁଁ ଗୋ ହୋଇଲି ରାକ୍ଷସ
ରହିଁ ଦାଣ୍ଡବର ମୂର୍ତ୍ତି ଅଟଇ ଯେ ଶିଷ୍ୟ ।
ଅତି ପରିମଳ ଗୋଟା ଅଟଇ ଏ ଭୂଇଁ
ଛିଦ୍ରଯୁଗ ହେଲା ଏଥେ ରହିଅଛି ମୁହିଁ ।
ଏ ତୋହର ଦିବ୍ୟରୂପ ଲୋଚନେ ଦେଖିଲି
ମଦନର ଶରଘାତ ସହି ନ ପାରିଲି ।
କାମରୂପୀ ଅସୁର ମୁଁ ଜାଣେ ନାନାମାୟା
ତୋତେ ଭେଟିଲି ମୁଁ ଧରି ଉଗ୍ରସେନ କାୟା
ଯୁଗତେ ପଦ୍ମିନୀ ଜାତି ଅଟୁ ମହାସତୀ
ସ୍ୱର୍ଗନାରୀ ତୁମ୍ଭଙ୍କୁ ସମାନ ନୁହନ୍ତି ।
ପୁରୁଷ ହୋଇ ଧଇର୍ଯ୍ୟ ଧରି ରହିବ କି
ପାଷାଣ ହେଲେ ତରଳ ଯିବ ରୂପ ଦେଖି ।
ମୁରୁଛି ନ ପାରି କଲି ଏସନକ ରୀତି
ସତ୍ୟବଚନ କହିଲି ଆଗୋ ମହାସତି ।
ସାକ୍ଷାତେ ସାଧବୀ ତୋର ଝଷ୍ଟଲଙ୍କ କାୟା
ଦୋଷ ଅପରାଧ କ୍ଷମା କରି କର ଦୟା ।
ତୋହର ଗର୍ଭରୁ ଜାତ ହେବ ଯେଉଁବଳା
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ସେ ହେବ ଅଦର୍ଗଳା
ମହାବଳବନ୍ତ ପୁତ୍ର ରହିଲା ତୋ ଗର୍ଭେ
ଅତି ଯତନେ ପାଳିବ ଅସୁର ସ୍ୱଭାବେ ।
ସତ୍ୟ ସ୍ୱରୂପ ଅଟଇ ଜାଣ ମୋର ବାଣୀ
ଯତସ୍ୱତର ଭୂମିକି ହୋଇବ କାରେଣୀ ।
କୋଟିଏ ଇନ୍ଦ୍ର ହେଲେ ଗୋ ନ ପାରିବେ ଜିଣି
ତାହାର ପାଦଭାରରେ କମ୍ପିବ ଧରଣୀ ।
ଚଉଦ ଭୁବନେ ସେହି ଛତ୍ରୀ ବୋଲାଇବ
ଡରେ ଆସି ସେବା ତାକୁ କରିବେ ବାସବ ।
ଭୁଜବଳେ ଅର୍ଜିବ ସେ ଅନେକ ସମ୍ପଦ
ଯୁଦ୍ଧରେ ସରି ନୋହିବେ ତାକୁ ସଦାନନ୍ଦ ।
ଜାରଜ ତନୟ ବୋଲି ନ କରିବୁ ହେଳ
ବିପୁଳ ସୁଖ ଭୁଞ୍ଜିବ ଏହା ପ୍ରତିପାଳ ।

ଦାନବର ମୁଖୁଁ ଶୁଣି ଏସନକ ବାଣୀ
ଗତ ଆତ୍ମା ପ୍ରାୟ ହେଲ ଇନ୍ଦୁମତୀ ରାଣୀ ।
ବିକଳେ ସେ ମହାଦେଈ ଉଚ୍ଚରେ ରୋଦିଲେ
ଆକାଶକୁ ଦୃଷ୍ଟି ଦେଇ ଧର୍ମ ସାକ୍ଷୀ କଲେ ।
ନୟନରୁ ଅଶ୍ରୁଜଳ ପୋଛଇ ଅଞ୍ଚଳେ
କ୍ରୋଧଭରେ କ୍ରୋଧଅଗ୍ନି ନୟନରେ ଜଳେ ।
ଦାନବର ବଦନକୁ ଦୃଷ୍ଟିଣ କହନ୍ତି
ଧର୍ମ ଦେବତାକୁ ସାକ୍ଷୀ କରି ଚନ୍ଦ୍ରମୁଖୀ ।
ଆହେ ଦଶଦିଗପାଳେ ଥାଅ ତୁମ୍ଭେ ଜାଣି
ଏ ଭୋଜବଂଶରେ ମୁହିଁ ଅଟଇ କାରଣୀ ।
ହେ ବ୍ରହ୍ମା-ପୁରୁଷ ତୁ ହୋଇଥାଅ ସାକ୍ଷୀ
ଇଷ୍ଟାଙ୍କ ମୋତେ ନ ହୋଇ ଅବଗୁଣ ବାର୍ତ୍ତା
ମନଜ୍ଞାନେ ନାହିଁ ପରପୁରୁଷେ ମୋ ଆଶ
ଏ ହୀନ ପାମର ମୋତେ କଲା ଏ ଭବିଷ୍ୟ ।
ଧର୍ମବିନେ ମୋର ଆନ ସାକ୍ଷୀ କେହି ନାହିଁ
କୁଳସ୍ତ୍ରୀ ସାପଣୁ ଗଲି ନ କହିବା କାହିଁ ।
ଇନ୍ଦୁମତୀ ବୋଲେ ଆରେ ଅଜ୍ଞାନ ପାମର
ଧର୍ମଲଙ୍ଘି କିପାଁ ତୁରେ କଲୁ ପରଦାର ।
ଜାଣୁଜାଣୁ ଅର୍ଜିଲୁରେ କିପାଁ ଏଡ଼େ ପାପ
ଦୋଷ ଅନୁରୂପେ ଦେବ ତୁ ମୋହର ଶାପ ।
ତୁମ୍ଭ ଯେଣୁ ପତିବ୍ରତା ଲଙ୍ଘିଲୁ ମୋହର
ଯେବଣ ପୁତ୍ର ମୋ ଗର୍ଭେ ରହିଲା ପାମର ।
ଏହୁ ପୁତ୍ର ହସ୍ତେ ତୁମ୍ଭ ଯିବୁ ପ୍ରାଣେ ନାଶ
ଅଳପ ଦିନେ ତୁଟିବ ତୋହର ଆୟୁଷ ।
ଶାପ ଦେଇ ଇନ୍ଦୁମତୀ ଧର୍ମ ସାକ୍ଷୀ କଲେ
ହିନ୍ଦୋଳାରେ ବସି ଦେବୀ ମଥୁରାକୁ ଗଲେ ।
ମୁଦୁସୁଲିମାନେ ସର୍ବେ ଆଡ଼ ହୋଇଥିଲେ
ଅସୁରର ମାୟା କିଛି ଜାଣି ନ ପାରିଲେ ।
ପ୍ରତ୍ୟକ୍ଷେ ଦେଖିଲେ ଯହୁଁ ଉଗ୍ରସେନ ମୁଖ
ଆଡ଼ହୋଇ ରହିଥିଲେ ପାଇ ମହାସୁଖ ।
ଦୁର୍ମିଳ ଦଇତ ଗଲା ବିମାନ ଆରୋହି
ଆପଣାଙ୍କ ନିଜ ଦେଶେ ପ୍ରବେଶିଲା ଯାଇଁ ।
ସଞ୍ଚାର କାଳକୁ ସେ ଯେ କହୁଛ ଉତ୍ତର
ଉଦ୍ଧାରିବ ମହଣକୁ ବସିଣ ଝୁରିଲା ।
ଏଥୁ ଅନନ୍ତରେ କେତେଦିନ ବହିଗଲା
ଉଗ୍ରସେନ ପାଟରାଣୀ ଗର୍ଭବତୀ ହେଲା

ଦିନେ ଦିନେ ମହାକ୍ଳେଶ ପାଇଲା ସେ ନାରୀ
ବେଶ ବସନ ଅଙ୍ଗରେ ନ ରହେ ତାହାର ।
ଗୃହକର୍ମେ ଚରଣ ବେନି ନ ପଡ଼ଇ ତଳେ
କରନ୍ତେ ତାର ଶରୀରୁ ଶ୍ରମଝାଳ ଗଳେ ।
ଦିବସେ ଆହାର ନାହିଁ ନିଦ୍ରା ନାହିଁ ରାତ୍ରେ
କର୍ପୂର ଅଗୁରୁ ଗନ୍ଧ ବିଲେପନ୍ତି ଗାତ୍ରେ ।
ହେତୁ କଂସାସୁର ହେବ ମର୍ତ୍ତ୍ୟେ ମହାବଳୀ
ଦେହ ବହି ସହିବ କେ ତାହାର ଅର୍ଦ୍ଧୋଳ ।
ପୃଥ୍ୱୀଦେବୀ ଯାହା ଭାର ନ ପାରିବ ସହି
ବିକଳେ କାନ୍ଦି ଗୁହାରି କରିବ ସେ ଯାଇଁ ।
ପିମ୍ପୁଡ଼ିର ଶକ୍ତି କାହିଁ ପର୍ବତ ବହିବ
ଏହା ଭାର ଇନ୍ଦୁମତୀ କାହୁଁ ସେ ସହିବ ।
ଦିନକୁ ଦିନ ବଳକ ଦୁଅଇ ସେ ବାଳୀ
ପିନ୍ଧିଲା ବସନ ତାର ନ ପାରେ ସମ୍ଭାଳି ।
ନୟନ ବୁଜିଣ ରାମା କରନ୍ତେ ଉଚାଟ
କଟିଲ ବସାଇ କ୍ଷଣେ ଦୁଏ ଛଟପଟ ।
ପ୍ରଥମ ମକରମାସେ ହେଲା ଗର୍ଭବାସ
ଭାଦ୍ର ପ୍ରବେଶ ହୋଇଲା ତାର ଅଷ୍ଟମାସ
ସିଂହ ଶୁକ୍ଳ ଦଶମୀ ତିଥି ଶୁକ୍ରବାର
ଉତ୍ତରାଷାଢ଼ା ନକ୍ଷତ୍ର ଅଟେ ସେ ଦିନର ।
ବେଳ ପାଞ୍ଚଘଡ଼ିରେ ଯେ ଶୁଭନାମେ ଯୋଗ
ବାଣିଜ୍ୟ ନାମେ କରଣ ଦଶଦଣ୍ଡ ଭୋଗ ।
ସିଂହ ସଂକ୍ରାନ୍ତ ଚଉଦ ତିଥି ରାତି ଶେଷେ
ପୁତ୍ର ଏକ ଉପୁଜିଲା ପୂର୍ଣ୍ଣ ଆଠମାସେ ।
କୁମାର ଜନମ ଦେଖି ରାଜା ଉଗ୍ରସେନ
ଅନେକ ଆନନ୍ଦ ହେଲା ତାର ପଞ୍ଚମନ ।
ନଗର ଉତ୍ସବ କରି ଭଣ୍ଡାର ମେଲିଲା
ହାଟ ବାଟ ଦାଣ୍ଡ ପେଣ୍ଡୁ ସବୁ ଜୁର କଲା ।
ବନ୍ଦୀମାନଙ୍କୁ ବନ୍ଦୀରୁ କଲା ମୁକ୍ତ କରି
ଦରିଦ୍ର ଲୋକଙ୍କୁ ଅନ୍ନ ଦେଲା ବସ୍ତ୍ରଧାନ୍ୟ ।
ଯେ ଯାହାରୂପ ବଖାଣ ପଢ଼ୀ ଚାହିଁ ନେଲା
ଲକ୍ଷେକ ଘୋରୁହବୋଦା ଦେବାଆଗେ ଦେଲା
ଲକ୍ଷେକ ମାଢ଼ ସୁବର୍ଣ୍ଣ ଶମ୍ଭୁଣିରେ ଦେଇ
ଲକ୍ଷେ ବ୍ରାହ୍ମଣ ଭୋଜନ ଗୃହରେ କରାଇ ।
ଗୁରୁ ଦ୍ୱିଜ ଦେବଋଷି ପୂଜାଜନ କରି
କଂସର ନୋଳ ଶୁଆଣୀ ଶୁଭଲଗ୍ନ ଧରି ।

ମହାଭୟଙ୍କର ବାଳ କୁମର ମୂରତି
ଅସୁର ଗୁଣ ଯେଣ ସେ ହେଲା ଉତପତ୍ତି ।
କାଳାନଳ ଜାଣି ତାର ଜ୍ୟୋତି ପ୍ରକାଶଇ
ତାମ୍ରବର୍ଣ୍ଣ ପ୍ରାୟ ତାର ଦେହ ବିରାଜଇ ।
ଅସୁର ରେତରେ ଯେଣୁ ପୁତ୍ର ହେଲା ଜାତ
ଅମଳାନ ଭୋଜବଂଶୀ ଇନ୍ଦୁମଣ୍ଡ ମାତ ।
କେତେଦିନାନ୍ତରେ ତାର ପୁଣ ପୁତ୍ର ହୋଇ
ସାକ୍ଷାତେ ସେ ଉଗ୍ରସେନ ପରାୟ ଦିଶଇ ।
ବେନି ପୁତ୍ର ପାଇଲାକ ରଜା ଉଗ୍ରସେନ
ହରଷେ ଉତ୍ସବ ତାର ଆନନ୍ଦିତ ମନ ।
ଆଗରୁତ ଦୁଇଗୋଟି ହୋଇଛନ୍ତି ଦୁହିତା
ଦେବକୀ ଦୈବକୀ ଦୁଇ ନାମରେ ସେ ଖ୍ୟାତା
ସୁନ୍ଦରୀ ସୁକୁମାରୀ ସେ ତ୍ରିପୁର ମୋହିନୀ
ନାହିଁ ପଟାନ୍ତର ତାଙ୍କୁ ସକଳ ମେଦିନୀ ।
ବେନି ପୁତ୍ର ଦୁହିତାଙ୍କୁ ପାଇ ନରପତି
ମଥୁରା ଦେଶରେ ରହି ସୁଖେ ବିଳସନ୍ତି ।
ନସ୍ତିନ୍ତେ ଇନ୍ଦୁମଣ୍ଡର କୁମରେ ବଢ଼ିଲେ
ଶସ୍ତ୍ର ଶାସ୍ତ୍ର ଆଦି ବିଦ୍ୟା ସକଳ ଶିଖିଲେ ।
ସୁନାସ ନାମେ କଂସର ଅଟେ ସାନଭାଇ
ନିରତେ ସେହି କଂସକୁ ସେବା କରୁଥାଇ ।
ହାଟ ଦାଣ୍ଡ ଘରମଳ ଆସନ୍ତେ ସେ ଦୁଇ
ପଛରେ ସଇନ୍ୟମାନେ ତାହାର ଗୋଡ଼ାଇ ।
ରଥ ଗଜ ଅଶ୍ୱ ଆଦି ସାଧି ସର୍ବବିଦ୍ୟା
ପାଞ୍ଚ ବରଷ ଭିତରେ ହୋଇଲେ ସୁସିଦ୍ଧା ।
ପୁତ୍ରକୁ ଦେଖିଣ ସେହି ଉଗ୍ରସେନ ରାୟ
ସାନନ୍ଦରେ ଉଲ୍ଲସିତ ହରଷିତ କାୟ ।
ପାତ୍ର ମନ୍ତ୍ରୀ ବନ୍ଧୁବର୍ଗ ଅମାତ୍ୟ ବସାଇ
ଗଉରବ କଲା ତାଙ୍କୁ ପାଶେ ହକାରାଇ ।
ସମସ୍ତଙ୍କୁ ବୁଝି ପୁଣି କହେ ମହୀପତି
ପୁତ୍ର ମୋର ମଥୁରାରେ ହୋଇବ ନୃପତି ।
ରାଜ୍ୟର ଯେ ଭଲ ମନ୍ଦ ପରରାଷ୍ଟ୍ର ବିଧି
ସୁନାସକୁ ଘେନ କଂସ କରୁ ସର୍ବ ସିଦ୍ଧି ।
ସମସ୍ତଙ୍କୁ କହିଲା ସେ ଉଗ୍ରସେନ ରଜା
ଯଦୁରାରେ କରନ୍ତୁ ଯେ ଏହା ପାଦପୂଜା ।
ଏମନ୍ତ ବୋଲି ଘାଟେକ ବାନ୍ଧିଲେ ରାଜନ
ଆନ ବୋଲିବାକୁ କେହି ନାହିଁ ସଜ୍ଜନ ।

ରଜାର ବଚନେ ସର୍ବେ କଲେ ସନମତ
ଚୌଉ ନେହଜ କନ୍ଧ ଟେକ ଦେଲେ ବେନିହସ୍ତ
କଂସକୁ ସେବା କରି ସେ ଥାନ୍ତି ଅନୁକ୍ଷଣେ
କେହି ତାହାର ଆଜ୍ଞାକୁ ନ ଲଙ୍ଘନ୍ତି ଜଣେ ।
ନିତି ରଥ ଗଜ ଅଶ୍ୱ ପଦାତିକ ଘେନି
ମୃଗୟା ଖେଳି ବନୋଦେ ଯାନ୍ତି ଭାଇ ବେନି ।
ପ୍ରତାପୀ ତେଜୋବନ୍ତ ଯେ ଉଗ୍ରସେନ ବତ୍ସ
ସାତବଂଶ ହନ୍ତାକାର ଜାତ କାଳ ବକ୍ଷ ।
ଯୁଗତେ ଅସୁର ପରାକ୍ରମେ ସେ ଉଗ୍ରଳ
ତାହାର କାହାକୁ ଶଙ୍କା ନାହିଁ ମହାବଳୀ ।
ଦେବ ଦାନବ ମାନବ କାହାକୁ ନ ଗଣେ
ଯଦୁ ଭୋଜବଂଶକୁ ସେ ତୁଚ୍ଛ ପ୍ରାୟ ମଣେ ।
ସାମାନ୍ୟ ନୁହେଁ କାହାକୁ ନାହିଁ ତାର ଶଙ୍କା
ଅନିବାରଣ ଯୋଦ୍ଧା ସେ ଅଟେ ରଣରଙ୍କା ।
ଏମନ୍ତେ ସେ ସାତବଂଶ ଯାଦବ ସାଧିଲା
ଏକଦିନେ କଂସକୁ ଯେ ସୁନାସ କହିଲା ।
ମୃଗୟା ବନୋଦେ ଚାଲ ଯିବା ଭାଇ ବେନି
ହରିଣ ବରାହ ମାରି ଆସିବାକ ଘେନି ।
ଏହା ଶୁଣି କଂସ ରଜା ବେଗେ ଉଠିଗଲା
ସୈନ୍ୟ ସାଜ ସାଜ ବୋଲି ଡଗର କହିଲା ।
ମୃଗୟା ବନୋଦେ ଆଜ ଯିବେ ନୃପମଣି
ସୈନ୍ୟ ପଦାତି ବାହଣ ସଙ୍ଗେ ନିବେ ଘେନି ।
ରଜା ଆଜ୍ଞାରେ ସଜାଡ଼ ହେଲେ ଯଦୁବଳ
ସିଂହ ଘୋଷ ପ୍ରାୟ ଶୁଭେ ମୁଖର ଚହଳ
ମାର ମାର ଧର ଧର ଉଚେ ଡାକଦେଇ
କଂସ ଗୁମ୍ମୁରେ ମିଳିଲେ ଯଦୁରାରେ ଯାଇଁ ।
କେ ବୋଲଇ ଆସ ଆହେ ବେଗହୋଇ ଯିବା
ରଜା ଗୁମ୍ମୁରେ ଜୀବନ୍ତ ଜୀବ ନେଇ ଦେବା ।
ଆଗୁଆଣୀ ଦଣ୍ଡିକୁ ଯେ କଂସ ଆଜ୍ଞା ଦେଲେ
ସୈନ୍ୟ ଆଗହୋଇ ଯାଉ ସୁନାସ କହିଲେ ।
ଚତୁରଙ୍ଗ ବଳ ରଥ ଗଜ ଯେ ପଦାତି
ଯମୁନା ନଦୀକି ପାରହୋଇ ବଳ ଯାନ୍ତି ।
ନବଖଣ୍ଡ ମେଦିନୀ ଯେ କମ୍ପେ ପାଦଘାତେ
ଧର ଧର ମାର ମାର ଶୁଭେ ଅନୁବ୍ରତେ ।
ପାତାଳ ବାସୁକି ରଜା ନ ଟେକଇ ଫେଣୀ
ପାଦରେଣୁରେ ଅଦୃଶ୍ୟ ହେଲେ ଦିନମଣି ।

ସମସ୍ତେ ପଶିଲେ ଯାଇ ବନସ୍ତ ଭିତରେ
ଗୁରୁପାଖେ ବନଗାଈ ଖୋଜନ୍ତି ବନରେ ।
ଚୋମଣ୍ୱାକୂଳେ ଗୋମତ ନାମ ଅଛି ଗିରି
କଂସ ସୁନାସ ଏ ଦୁହେଁ ଗଲେ ମୃଗମାରି ।
ଯମୁନାନଦୀର କୂଳେ ଗୋପପୁର ନଗେ
ସୈନ୍ୟ ସେନ ବେନି ହୋଇ ମିଳିଲେକ ବେଗେ
ଗୋମତ ଋଷିଙ୍କି ତହିଁ ଭେଟିଲେ ସେ ଯାଇଁ
ଦେଖିଲେ ସେ ମହାମୁନି ଯୋଗମାର୍ଗେ ରହି
ଜଟା କଷାବାସ ହସ୍ତେ ତ୍ରିଦଣ୍ଡ ବିଭୂତି
ତମ୍ବାର କୁଣ୍ଡଳ କର୍ଣ୍ଣେ ସୂର୍ଯ୍ୟପ୍ରାୟ ଜ୍ୟୋତି ।
କଟୀରେ କାଛଟା ଡୋର କଉପୁନି ଛଟା
ରୁଦ୍ରାକ୍ଷମାଳ କଣ୍ଠରେ ପଡ଼ିଛି ପଇତା ।
କୃଷ୍ଣାଜିନ ଚୁଲି ଗୋଟି ବସିଛନ୍ତି ମାଡ଼ି-
ଗୁମ୍ଫରେ ତ ଆଣ ବାଢ଼ ପୋଥି କୁଶ ବଢ଼ି
ଶାଳଗ୍ରାମଶିଳା ତମ୍ବାପାତ୍ରେ ରଖି ଥାପି
ଚକ୍ଷୁ ବୁଜି ବସିଛନ୍ତି ଋଷି ମନ୍ତ୍ର ଜପି ।
ଏମନ୍ତ ବେଳେ ମିଳଇ ଯାଇ କଂସାସୁର
କରପଦ୍ମ ଯୋଡ଼ି ନୃପ କରେ ନମସ୍କାର ।
କଲ୍ୟାଣ କଲେ ଗୋମତ ଋଷି କହି ସ୍ୱସ୍ତି
ବାହାର କଲେ ଅଧାରି ଭିତରୁ ବିଭୂତି ।
ମୃଗଚୁଲି ଗୋଟି ତାଙ୍କୁ ବସିବାକୁ ଦେଲେ
କନ୍ଦମୂଳ ଗୁଡ଼ା ଆଣି ଆଗେ କୁଡାଇଲେ ।
ମୁନିଙ୍କର ଗଉରବ ଦେଖି କଂସବୀର
ପୁଣ ପୁଣ ନମସ୍କାର କରଇ ଗୁମୁର ।
କଂସ ଭୁଲେ ମୁନି କଥା ହୁଅନ୍ତେଣ ରହି
ମୁନିଗଣ୍ଡା ଗୋଟି ଆସି ମିଳିଲା ତହିଁ ।
ବନସ୍ତ ଭିତରେ ଗଣ୍ଡା ଯାଇଥିଲା ଚରି
ଜନରବ ଶୁଣି ଫେରି ଅଇଲା ସେ ଡରି ।
କଂସର ଦୃଷ୍ଟି ପଡ଼ିଲା କୁଟୀରେ ପଶିଲା
ଅପୂର୍ବ ଶୋଭାବନ୍ତ ସେ ସୁନ୍ଦର ଦିଶିଲା ।
କଂସ ରାଜା ବୋଇଲା ଯେ ମୁନିମୁଖ ଚାହିଁ
ଏ ଗଣ୍ଡା ଗୋଟି ପାଇଲ କହ ମୁନି କାହିଁ ।
ମୁନି ବୋଇଲେ ଶିବରେ ଆଣିଦେଲେ ଧରି
ବାଳକାରୁ ପୋଷିଅଛୁ ଆମ୍ଭେ ଯତ୍ନକରି ।
ଏ ଗଣ୍ଡା ମାରି ପିତୃଙ୍କ ଶ୍ରାଦ୍ଧ ଯେ କରିବୁଁ
ଏଥିପାଇଁ ଯତ୍ନେ ଆମ୍ଭେ ଏହାକୁ ରଖିଛୁଁ ।

କଂସ ବୋଇଲା ମୁନିଏ ଗଣ୍ଡା ନେବ ମୁହିଁ
ଶ୍ରାଦ୍ଧ ପଦାର୍ଥ ନେବାକୁ କହିଲ କପାଇଁ ।
କଂସ ବୋଇଲା ଯଦ୍ୟପି ମାଗିଲେ ନ ଦେବ
ବଳେ ନେଇ ଗଲେ ଋଷି କାହାଗେ କହିବ ।
ଜନନୀ ଯେବେ ପୁତ୍ରକୁ ବିଷ ଖୁଆଇଲେ
ରାଜା ହୋଇଣ ପ୍ରଜାର ସର୍ବସ୍ୱ ହରିଲେ ।
ପିତା ହୋଇଣ ବିକଇ ଯେବେ ପୁତ୍ର ଗୋଟି
ଦେବତା ହୋଇଣ ଯେବେ ନ ପାଳିବେ ସୃଷ୍ଟି
ଭବଯୋଗ କରୁଁ ଯେବେ ହେବ କାର୍ଯ୍ୟହାନି
ଧର୍ମକୁ କହିବା କିବା ବୋଇଲେକ ମୁନି ।
ଋଷି କହିବା ନ ଶୁଣେ କଂସାସୁର ବୀର
ଭାଗ୍ୟବନ୍ତ ହୋଇ ପର ଦ୍ରବ୍ୟେ ଲୋଭ କରି
ରାଜା ହୋଇ କଲ ତୁମ୍ଭେ ଋଷି ଦ୍ରବ୍ୟେ ଆଶ
ଆପଣା ପାଳିଲା ଜନ୍ତୁ ଆପେ କରି ନାଶ ।
ବିଦ୍ୟାବନ୍ତ ହୋଇ ଯେବେ ଗୁଡ଼େ ଧର୍ମ ଆଶ
କ୍ଷତ୍ରୀ ହୋଇ ସଂଗ୍ରାମକୁ ପାଇ ଯେବେ ତ୍ରାସ
ଧନବନ୍ତ ହୋଇ ଯେବେ ନୋହିଲା ସେ ସନ୍ତ
ଏହାଙ୍କୁ ପ୍ରାପତ କାହୁଁ ହେବ ଧର୍ମପଥ ।
ମାଗନ୍ତା ଲୋକଙ୍କୁ ଯେହୁ କରଇ ବିମୁଖ
ଇହ ପରଲୋକ ତାଙ୍କୁ ନାହିଁ କେଭେ ସୁଖ ।
ତୁମ୍ଭେ ମହାଋଷି ପୁଣି ପୋଷିଅଛ ଏହା
ଧର୍ମକୁ ଲଙ୍ଘି କେମନ୍ତେ ମାରିବଟି ତାହା ।
କେମନ୍ତେ କରିବ ଜାଣୁ ଜାଣୁ ଜୀବହତ୍ୟା
ଲୋକେ ଅପକୀର୍ତ୍ତି ଅର୍ଜି ପାଇବନା ବ୍ୟଥା ।
ଆମ୍ଭେ ଏ ଗଣ୍ଡା ଜୀବକୁ ମଥୁରାକୁ ନେବା
ଆମ୍ଭ କଟକେ ଏହାକୁ ଯତନେ ରଖିବା ।
ଏମନ୍ତେ କଂସ ଉଗ୍ରୋଧ ଗୁଡ଼ିଣ କହିଲା
ଗଣ୍ଡା ଜୀବକୁ ମଥୁରା କଟକକୁ ନେଲା ।
ମୁନି ବୋଲେ ରାଜାହୋଇ ଅନୁଚିତ କଲ
ଆମ୍ଭ ଗଣ୍ଡା ଗୋଟି ତୁମ୍ଭେ ବଳାତ୍କାରେ ନେଲ ।
ଆମ୍ଭେ କୋପ କଲେ କିବ ହରଲୋକ ଜଳି
ଏତେକର୍ମ କଲ ଜନ୍ମା ତୁମ୍ଭ ପରି ଭଳି ।
କହିବ ଜଥାକୁ ଜନ୍ମା ତୋତେ ଦେବି ଶାପ
ଅବତାରରେ ଆମ୍ଭଙ୍କୁ ଲାଗିବ ଯେ ପାପ ।
ଦୋଷ ଅନୁରୂପେ ତୋତେ ଦେବା କିନା ଶାସ୍ତି
ଅସୁର ପ୍ରକୃତି ତୁହି ଅଟୁ ମନ୍ଦଜାତି ।

ଗୋପକୁ ଆଜ୍ଞା ଦେଲେ କୃଷ୍ଣ ଆସିଲେ ଲେଉଟି
ଏ ଭୂମି ମଣ୍ଡଳେ ଯିବ ତୋ ମୂର୍ଚ୍ଛନା ଫାଟି
ଆମ୍ଭ ଗଣ୍ଡା କୃଷ୍ଣ ଯେଣୁ କଲ୍ପରେ ହରଣ
ଏ ଗୋପନଗ୍ର ମାଡ଼ିଲେ ଗ୍ରହିବ ତୋ ପ୍ରାଣ ।
ଏ ଶାପ ଗୋମତ ଋଷିଠାରୁ ସେ ପାଇଲା
ଆଜ୍ଞାବେଳେ କଂସ ଗୋପପୁରକୁ ନଇଲା ।
ମୃଗୟା ବନେ ଦ ଶେଷ କରି କଂସ ବୀର
ପ୍ରବେଶ ହୋଇଲା ଯାଇଁ ମଥୁରା ନଗର ।
ପିତା ଆଗରେ କହିଲେ ଯାଇଁ ସବୁ କଥା
ଶୁଣି ଉଗ୍ରସେନ ମନେ ପାଇଲେକ ବ୍ୟଥା ।
ଶୁଣ ହେ ପରୀକ୍ଷ ରାଜା କହେ ଶୁକମୁନି
ଇତି ଶ୍ରୀ ପୁରାଣ ହରିବଂଶ ପୁଣ୍ୟଧ୍ୱନି ।
ଏକମନ ହୋଇ ଯେହୁ ଶୁଣେ ମହାଶୟେ
ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ପାଏ ।
ନୀଳଗିରି ଜଗନ୍ନାଥ ଚରଣେ ମୋ ସେବା
ଅଚ୍ୟୁତ ଦାସ ମୁଁ ମୋତେ ମୁକ୍ତିଗତି ଦେବା ।
ତୁମ୍ଭେ ବାମନ ଅନନ୍ତ ତୁମ୍ଭେ ବିଶ୍ୱମୂର୍ତ୍ତି
ବାଉନ ଅଙ୍ଗୁଳ ତୁମ୍ଭ କଳେବର ପ୍ରଭ ।
ଧବଳଜ୍ୟୋତି କାଖେ ତୋ ଯୋଥିଛତା ପୀଢ଼ା
ଦକ୍ଷ ଅଙ୍ଗୁଷ୍ଠିରେ କଣ୍ଠୁ ବାମେ କୁଶବିଡ଼ା ।
ବୋହରି ଛତା ଭସ୍ମ ତୋ ଅଙ୍ଗେ ବିଣେ ଫୁଟି
ସ୍ୱାହା ପ୍ରୋକ୍ଷଣୀ ତୋ ବାମେ ତମ୍ବାପାଣିଗୋଟି
ଲମ୍ବିତ ଜୁଡ଼ା ପଇତା ପଡ଼ିଅଛି କନ୍ଧେ
କଷାବସ୍ତ୍ର ପରିଧାନ ଧୋତି ଛନ୍ଦବନ୍ଧେ ।
ତମ୍ବାର କୁଣ୍ଡଳ ବେନିକର୍ଣ୍ଣେ ପାଏ ଶୋଭା
ନୀଳେନ୍ଦ୍ର ଦଳ ସୁନ୍ଦର ରୂପ ଜ୍ୟୋତି ପ୍ରଭା ।
ଅପୂର୍ବରୂପ ସ୍ୱାମୀର ଦିଶଇ ସୁସଞ୍ଚ
ମାପକେ ହେଲା ବାଉନ ଅଙ୍ଗୁଳ ସେ ଉଚ୍ଚ ।
ଏସନକ ରୂପେ ସ୍ୱାମୀ ବିପ୍ରବେଶ ହୋଇ
ବଳିରାଜା ସିଂହଦ୍ୱାରେ ମିଳିଲେ ଗୋସାଇଁ ।
ଭିକ୍ଷୁରୂପେ ସ୍ୱାମୀ କରେ ତମ୍ବାପାଣି ଘେନି
ଦ୍ୱାରେ ଉଭା ହୋଇ ଧୀରେ କଲେ ବେଦଧ୍ୱନି
ଋକ ଯଜୁ ସାମବେଦ ଅଥର୍ବ ଏ ଚାରି
ପଢ଼ନ୍ତି ପଞ୍ଚମସ୍ୱରେ ତାଳ ମାନ ଧରି ।
ଝଙ୍କାରି କୋକିଳ ପ୍ରାୟ ସୁସ୍ୱର ମଧୁର
ଶୁଭଇ ସେହି ସେ ବ୍ରହ୍ମବଦ୍ୟାର ହୁଙ୍କାର ।
ଅତ୍ୟନ୍ତ ସୁନ୍ଦର ଧ୍ୱନି କର୍ଣ୍ଣକୁ ସୁସଞ୍ଚ
ପୂରିଲା ସପ୍ତ ପାତାଳ ପୂରି ସ୍ୱର୍ଗ ମଞ୍ଚ ।
ଯୁବତେ ବ୍ରାହ୍ମଣ ପୁଣି ପୃଥୁଳ ମୂରତି
ବାଉନ ଅଙ୍ଗୁଳ ଉଚ୍ଚ ବିପ୍ରରୂପ କାନ୍ତି ।
ଏସନ ଅପୂର୍ବ ରୂପ ଦେଖି ନରନାରୀ
ବେଢ଼ିଲେ ସହସ୍ରେ ପୂରି କରି ପାଖସରି ।
ମହାମନ୍ତ୍ର ଶୁଣି ସର୍ବେ ହୋଇଲେ ଉଚାଟ
ଧାମକେ ପୂରିଲା ରାଜଦାଣ୍ଡ ଘାଟ ବାଟ ।
ସମସ୍ତଙ୍କ ଅଙ୍ଗ ସ୍ୱାମୀ ଲଗାଇଲେ ମୋହ
ଅପୂର୍ବ ପ୍ରାୟେ ଦେଖିଲେ ବାମନର ଦେହ ।
କେହି ଜନେ ବୋଲନ୍ତି ଏ ଅଗୋଚର ମାୟା
ସଂସାର ଜନକୁ ସିନା ଅଭିନବ କାୟା ।
ଯେତେ ଜନ ଏ ସଂସାରେ ଜନ୍ମ ଜାତ ହୋଇ
ଏ ଅପୂର୍ବ ରୂପଟୋଟି କାହିଁ ଦେଖା ନାହିଁ ।
ଆଣ୍ଠୁ ଗଣ୍ଠି ପାଦ କର ହୃଦ କନ୍ଧ ମୁଣ୍ଡ
ଶରୀରଯାକ ସବୁତ ଦିଶେ ଏକଖଣ୍ଡ ।
କେବେଗେ ଖୁଲନ୍ତେ ତଳକେ ମାଂସ ପଡ଼େ ଲେଉ
କାନ୍ଧରୁ କଟୀଯାଏ ନ ପାଏ ହସ୍ତ ଯୋଡ଼ା ।
କେ ବୋଲଇ ବିଦ୍ୟାଗୁଣ ଏହାଙ୍କର ଯେତେ
ବୟସ ଅଳପ ଆମ୍ଭେ ଦେଖୁଛୁତ ନେତ୍ରେ ।
କେବଣ ଗୁରୁ ଏହାକୁ ପଢ଼ାଇଲା ପାଠ
ସମ୍ପୂର୍ଣ୍ଣରୂପେ ଜାଣଇ ବେଦମନ୍ତ୍ର ବାଟ ।
କେବୋଲେ ପୂର୍ବ ଅଭ୍ୟାସ ବଳରୁ ଏ କଥା
କେ ବୋଲଇ ଏହାକୁ ହୋ ପ୍ରସନ୍ନ ଦେବତା ।
ଅନନ୍ତ କୋଟି ବିଦ୍ୟା ଏ ବଖାଣୁଛି ମୁଖେ
କହୁ ପୁଣି ପଢ଼ିବାକୁ ନାହିଁ ଶଇଳେକ୍ୟେ ।
ଝକମକ ପଥରରେ ଲୁଚିଥିବା ବହ୍ନି
ଦଣ୍ଡକେ ଦହି ପାରଇ ସକଳ ମେଦିନୀ ।
ଅଶ୍ରୁତ ଅମୃତ କଥା କହୁଛନ୍ତି ପୁଣି
ଦେବମାନଙ୍କୁ ଏହା ଅଗୋଚର ଶୁଣି ।
କେ ବୋଲେ ରାଜାରୁମ୍ଭକୁ ଏହାକୁ ହୋ ନେବ
ରୁମ୍ଭରେ କହଣ ଧନ ବସ୍ତ୍ର ବିଆଇବା ।
କେ ବୋଲଇ ଏହାଙ୍କର ବେଦମନ୍ତ୍ର ଶୁଣି
ଆପଣା ଇଚ୍ଛାରେ ଶାଢ଼ୀ ଦେବ ନୃପମଣି ।
କେ ବୋଲେ ରୁମ୍ଭକୁ ଆମ୍ଭେ ଘେନିଯିବାନାହିଁ
ଠାକୁରେ ଜାଣିଲେ ନେବେ ଲୋକ ବରଗାଇ

ଯଦ୍ୟପି ଏହାର ଗୁଣ ଜାଣିବନ୍ତି ସ୍ୱୟେ
ଏହାର ବଂଶ ଦରିଦ୍ର ବାଧା ଯିବ କ୍ଷୟେ ।
ତ୍ରୈଲୋକ୍ୟରେ ଦାତା ଏକା ବଳୀ ମହାରଜା
ଏହାକୁ ଦେଖି କରିବ କୋଟି ପାଦପୂଜା ।
ଏ ବିପ୍ରର ଦୁଃଖ ଆଜୁଁ ଗଲା ନଷ୍ଟେ ନାଶ
ଧୋକେ ବୋଇଲେ ରଜାକୁ ଜଣାଇବା ଆସ
ଏସନେକ ଭଙ୍ଗ ଲୋକେ କରନ୍ତେ ବିସ୍ମର
ଉଚ୍ଚସ୍ୱରେ ସାମଗାନ କଲେ ବିପ୍ରବର ।
ସାମ ଯଜୁ ଅଥର୍ବ ଯେ ଋକବେଦ ବାଣୀ
ପଢ଼ନ୍ତି ହୁଁକାର ଧ୍ୱନି କରି ଚକ୍ରପାଣି ।
ମହାଯଜ୍ଞଶାଳେ ବଳିରଜା ବସିଥିଲା
ବାମନର ବେଦଧ୍ୱନି ଶୁଣି ମୋହଗଲା ।
ବେଳକୁବେଳ ରଜାର ଆତ୍ମାକୁ ଆକର୍ଷି
ଯଜ୍ଞଶାଳେ ମହାରଜା ନ ପାରିଲେ ବସି ।
ମନକୁ ଯହୁଁ ଉଚ୍ଚାଟ ଲାଗିଲା ତାହାର
ଧାଇଁକାରେ ମିଳିଲା ସେ ବାମନ ଗ୍ରୁମୁର ।
ରୂପକୁ ଦେଖି ସନ୍ତୋଷ ହେଲେ ନୃପବର
ଦେଖି ଚମତ୍କାର ହେଲେ ବାମନ ଶରୀର ।
ଏ କଥା ଗୋଟିଏ ମନେ ଲାଗେ ଆଜୁ ଆନ
ଏମନ୍ତ ରୂପ ତ ଦେଖି ନାହିଁ ମୋ ନୟନ ।
ବେଦ ଶାସ୍ତ୍ର ପୁରାଣ ଏ ପଢ଼ି ଅଛୁ ଯେତେ
କାହିଁ ଥାଇଁ ଏତେ ବିଦ୍ୟା ଶିଖିଲେ କେମନ୍ତେ
କେବଣ ପୁରୁଷଠାରୁ ଶିଖିଲେ ଏ ପାଠ
ମୋରଭଳି ଲୋକକୁ ଏ କଲକ ଉଚ୍ଚାଟ ।
ବାମନକୁ ସ୍ତୁତି କରି ବୋଲଇ ବଚନ
କାହୁଁ ଏଠାକୁ ଆଇଲ ତୁମ୍ଭେ ବିଦ୍ୱଜ୍ଜନ ।
ଅପୂର୍ବ ପରମ ମୂର୍ତ୍ତି ମଣୁଅଛୁ ତୋତେ
ଦୂର୍ବାଦଳ ଶ୍ୟାମଳତ ରୂପ ଦିଶେ ମୋତେ ।
ଦରହସିତ ବଦନ ହୋଇ ନୃପସାଇଁ
ବୋଇଲେ ଏବେହେ ଏତେ ଗୁଣହେ ଗୋସାଇଁ
ବଳି ରଜାର ବଚନେ ବାମନ ବୋଇଲେ
ବେଦ ସାନ ବୋଲି ମାନବିଦ୍ୟା କି ଦେଖିଲେ
ନବଳ ହେଉ ପଛକେ ଗୁଣିକ ପୁରୁଷ ।
ଜାଣୁ ଜାଣୁ ବ୍ରାହ୍ମଣନ୍ଦା କଲୁ ତୁ ନରେଶ ।
ବହ୍ନି ଦେବତା ବ୍ରାହ୍ମଣ ଆଦି ସର୍ପ ନୃପ
ଦେହେ ସାନ ହେଲେ ହବ ପାରନ୍ତି ଏ ଦର୍ପ

ଏମାନଙ୍କୁ ସାନ ବୋଲି ନ ବୋଲିବ କେହି
ଯମରଜା ଧର୍ମ ଆଦି ଦେବତାଙ୍କ ଦେହି ।
ଏମାନେ କୋପିଲେ ଯାଇ ଏ ସଂସାର ନାଶ
ଅଗ୍ନି ଜାଣ ସାନ ହୋଇଲେ ତହେ ଦହଦହ ।
ବୈଶ୍ୱାନର ଦେବତାକୁ ବିପ୍ର ପାରେ ମୋହି
ଆମ୍ଭଙ୍କୁ ସାନ କପାଇଁ ବୋଲି ପୁଣ୍ୟଦେହି ।
ରଜା ସାନ ହୋଇଲେ ତା ଆଜ୍ଞା ଅପ୍ରମାଣ
ସର୍ପ ସାନ ହେଲେ ତାର ବିଷ ଯମ ଜାଣ ।
ସାନ ଦେବତା ପ୍ରସନ୍ନ ହେଲେ ଯାଇଁ ତରି
ସାନ ବିଦ୍ୟା ବ୍ରହ୍ମଣକୁ କେହି ନୋହେ ସରି
ବଳି ବୋଇଲେ ପଣ୍ଡା ହେ ବିଦ୍ୟାବନ୍ତ ଏତେ
ଶରୀର କମା ତୁମ୍ଭର ଖର୍ବ ଯେ ନ ବଢ଼େ ।
ଏହା ନ ବିସ୍ମର ମନେ ପାଅ ଅମରଷ
ବିନସ୍ତୁ ଉକତି ଯେନ ନ ଧରିବା ଦୋଷ ।
ବାଳକ ରୂପ ପରସ୍ତୁ ଦିଶେ ତୁମ୍ଭ ଦେହି
କେତେଦିନ ବିଦ୍ୟାତୁମ୍ଭେ ଶିଖିଲ ହୋ କାହିଁ
ବଳିର ବଚନ ଶୁଣି ବାମନ ବୋଇଲେ
ଅକସ୍ମାତେ ବିଦ୍ୟା ମୋତେ ପ୍ରାପତହୋଇଲେ
ମୋର ପର ପୁରୁଷକୁ ଶିଖା ଏବେ ପାଠ
ମୂର୍ତ୍ତି ଯେ ମୋହର ଗୁରୁ ମୂର୍ତ୍ତି ମୋର ଗୃଠ ।
ଶୁଣି ଯେ ବଳୀ ବୋଇଲା ବାମନକୁ ସ୍ତୁତି
କେଉଁ କୁଳେ ଜାତ ତୁମ୍ଭ ପିତା ମାତା କେହି ।
ବାମନ ବୋଲେ ମୁଁ ବେଳୁ ଛେଉଣ୍ଡହୋଇଲି
କେ ଆମ୍ଭର ପିତା ମାତା ଜାଣି ନ ପାରିଲି ।
ଜ ତ ହେଲା ଦିନୁ ମୁହିଁ ନିରନ୍ତର ଦୁଃଖୀ
ପିଅର ଜନନୀ ମୋର ନୟନେ ନ ଦେଖି ।
ମୋର ପିତା ମାତା ମୋତେ ଜାତକରି ମଲେ
ଆବାଲ୍ୟକାଳୁ ମୋତେ ସେ ମୁକ୍ତି କରି ଗଲେ
ବାମନର ଏ ବଚନେ ବୋଲେ ବଳିରଜା
ପଣ୍ଡାଏ ବିଭା ହେଲେଣି ଅଛିନା ଭାରିଯା ।
ବାମନ ବୋଇଲେ ମୋର ପତ୍ନୀ ଅଟେ ଭାଇ
ଭିକ୍ଷାକୁ ବ୍ରାହ୍ମଣଯାଏ ଦ୍ୱାରେ ଦ୍ୱାରେ ଥାଇ ।
ତେଣୁ ତାର ନାମ ଅଟେ ଚଞ୍ଚଳା ଭାର୍ଗବୀ
ମୋ ବିନୁ ଆନେ ଛୁଉ ନ ବଳାଏ ବଲ୍ଲଭୀ ।
ସପ୍ତମାନଙ୍କ ଉପରେ ଅଟେ ମହାସତୀ
ଶୁଣ ତୁହେ ବଳିରଜା ଏ ମୋହର ଗତି ।

ସେହି ମହାସଗର ଯେ ମଣ୍ଡପର ନାହିଁ
ଇନ୍ଦ୍ରପଦ ଆଦି କରି ପାଇଲ ସେ ଦେଇ ।
ସବୁଦ୍ୱାରେ ବୁଲେ ଘରେ ନ ରହଇ ଦଣ୍ଡେ
ଅନୁକ୍ଷଣେ ବୁଲୁଥାଇ ସପତ ବ୍ରହ୍ମାଣ୍ଡେ ।
ବଳୀ ବୋଲେ ପଣ୍ଡାଗୃହେ ଏ ଘରଣୀ ଥିଲେ
କେତେବେଳେ ତୁମ୍ଭ ଗୃହ ନ ଯିବନ୍ତି ଭଲେ ।
ଆଉ କଥା ଏ ତୁମ୍ଭଙ୍କୁ ପଚାରିବା ବିଶ୍ୱାସ
ବୟସ କେତେ ତୁମ୍ଭର ନାମ ଅଟେ କିସ ।
ବାମନ ବୋଲେ ଯେବେଳେ ହୋଇଲି ଜନମ
ଏହି ଚରାଚର ଭୂମି ହୋଇଥିଲା ଶୂନ୍ୟ ।
ଜନ୍ମରୁ ମୋହର ଜାଣ ମାତା ପିତା ନାହିଁ
ଆପେ ଆପେ ନିର୍ମାଣି ମୋ ହୋଇଲି ଏ ଦେହି
ତେଣୁକରି ନାମ ମୋର ଅଟେ ଅନାହତ
ଯାହା ପୁଚ୍ଛା କଲ ତୁମ୍ଭେ ଶୁଣ ନରନାଥ ।
ବଳୀ ବୋଇଲା ସ୍ୱରୂପ କହ ପଣ୍ଡା ମୋତେ
ପୁତ୍ର ଦୁହିତା କୁଟୁମ୍ବ ଘରବାଡ଼ି କେତେ ।
ବାମନ ବୋଇଲେ ମୋର ପୁତ୍ର ଅଗଣିତା
ଅପାର ଲୋକଙ୍କର ମୁଁ ଅଟଇ ଯେ ପିତା ।
ସମସ୍ତଙ୍କୁ ଅନ୍ନବସ୍ତ୍ର ଦେଇଥାଇ ବାଣ୍ଟି
ଯେ ଯାହାର ଅନୁରୂପେ ଯାକୁ ଯେତେ ଅଣ୍ଟି ।
କେବଳ ଜ୍ଞାନ ସାଧନା ଅଟେ ମୋ ନିକର
ଆତ୍ମପୂଜା ପଞ୍ଚାଶତ ବର୍ଣ୍ଣ ଭେଦ ସାର ।
ଏହା କହି ବେଶକାଳ ବାକ୍ୟ ଗୋଟି ପଢ଼ି
ବଳି ସମ୍ମୁଖରେ ବସିଲେ ପ୍ରଭୁ ପିତା ମାଡ଼ି ।
ମହାବାକ୍ୟ ଉଚାରିଲେ ବଳି ମୁଖ ଚାହିଁ
ଧର୍ମଙ୍କୁ ଯେ ସାକ୍ଷୀ ଦେଲେ ଊର୍ଦ୍ଧ୍ୱମୁଖ ହୋଇ ।
ଚନ୍ଦ୍ର ସୂର୍ଯ୍ୟ ଦିଗପାଳେ ତୁମ୍ଭେ ଥାଅ ସାକ୍ଷୀ
ସତ୍ୟେ ବଳୀରାଜା ମୋତେ ଦାନ ଦେଉଅଛି
ତଳହସ୍ତ କରିଣ ମୁଁ ମାଗୁଅଛି ଯାହା
ଉପରହସ୍ତରେ ବଳୀ ଦେଉ କନା ତାହା ।
ବଳୀବୋଲେ ଆହୋ ଦ୍ୱିଜ କେତେ ମୋତେ କହ
କୁଟୁମ୍ବ ସହିତେ ବନ୍ଦି ହେଲା ମୋର ଦେହ ।
ତୃତୀୟମତେ କହେ ଯହୁଁ ଏସନକ ବାଣୀ
ଶୁକ୍ରମନ୍ତ୍ରୀ ଯେ ନିଷେଧ କଲା ଏହା ଶୁଣି ।
ମନ୍ତ୍ରୀ ବୋଲେ ମହାରଜା ଜ୍ଞାନଧ୍ୱଂସୀ ହେଲୁ
ମାୟାବୀ ଦ୍ୱିଜକୁ ଦାନ ଦେବା ସତ୍ୟ କଲୁ ।
ତୁମ୍ଭେ ପର ଜ୍ଞାନବନ୍ତ ଅଟ ନରନାହା
ସ୍ୱରୂପ ଦେଖି କପାଇଁ ରାଜା କଲ ଏହା ।
ଏହି ସତ୍ୟରେ ସମ୍ପଦ ତୁମ୍ଭେ ନାଶ କର
ଗୃହରେ ଆସିଛନ୍ତି କମଳାର ବର ।
ବାହୁଡ଼ିଣ ଯାଉ ଏହି ମାୟାଦ୍ୱିଜ ଗୋଟି
ପାଣି ଶଙ୍ଖ ତଳେ ରଖ ବସ ଯାଉ ଉଠି ।
ଏତେବୋଲି ଶୁକ୍ରମନ୍ତ୍ରୀ ଧରେ ବଳିହସ୍ତ
ଧାଡିକାରେ ଉଠି ଆସ ତୁମ୍ଭେ ନରନାଥ ।
ବଳୀ ବୋଲେ ଗୁରୁ ତୁମ୍ଭ ପଣ୍ଡିତ ହୋଇ
ଲୋହପର ମନ୍ତ୍ରୀ ଏହା କହିଲୁ କପାଇଁ ।
ପୁରୁଷଙ୍କ ବଚନ ଯେ ପାଷାଣର ରେଖା
ପୁତ୍ର ଭାରଯା ଏ ଧନ ସମ୍ପଦ ଅଲେଖା ।
ଜନ୍ମ କର୍ମ ଏ ପିଣ୍ଡରୁ ପ୍ରାଣ ଛାଡ଼ିଗଲେ
ରାଜ୍ୟଭୋଗ କରିବ କେ ଆପେ ନାଶଗଲେ ।
ଜୀବ ଥିବାଯାଏ ଆପେ ଦେଇଥିବ ଯାହା
ଅବସାନବେଳେ ଲେଉଟ ପାଇବ କି ତାହା ।
ଏଜନମେ ହାତେ ବାକ୍ୟ ସାହା ସାହା ଦେଉ
ଏ ଦେହ ଛାଡ଼ିଲେ ସୁଖ ସ୍ୱର୍ଗରେ ବସିବ
ଯେବେ ବୋଲୁ ନାରାୟଣ ଏରୂପେ ଅଇଲା
ମନ୍ତେ ହୁଁ ଜାଣ ମୋର ପୁଣ୍ୟ ପୂର୍ବରୁ ବଳିଲା ।
ଯାବତ ଯାଗ ଯଜ୍ଞାଦି ବ୍ରତ ତୀର୍ଥ କର୍ମ
ବିଷ୍ଣୁଙ୍କୁ ଯେ ସମର୍ପିଲି ଶ୍ରେଷ୍ଠ ସର୍ବଧର୍ମ
ସେ ଯେବେ ସ୍ୱହସ୍ତେ ନେବେ ମୋ ହସ୍ତରୁ ଦାନ
ସୃଷ୍ଟି ଜନ୍ମେ କେବେ ମୁହିଁ କରିଥିବି ପୁଣ୍ୟ ।
ଯୋଗିଜନ ଯାକୁ ଧ୍ୟାନେ କରୁଥାନ୍ତି ନିତ୍ୟେ
ମୋର ପୂର୍ବ ପୁଣ୍ୟ ଥିଲେ ଦେଖିବି ଏ କାଳେ
କ୍ଷଣେ ବୋଇଲେ ହେ ରଜା ଏ ବ୍ରାହ୍ମଣ ଗୋଟି
ପ୍ରତ୍ୟେ ହେ ଏ ନାରାୟଣ ଶ୍ରୀଇଲୋକ୍ୟ ଗୋଟି ।
ବଳୀ ବୋଇଲା ଏ କଥା ସତ୍ୟ ହେବ ଯେବେ
ଏଥୁ ଆଉ ବଡ଼ ପୁଣ୍ୟ ଅର୍ଜିବି କେବେ ।
ବରଦେଇ ବିଷ୍ଣୁ ହସ୍ତେ ଦେବି ନିଶ୍ଚେ ଦାନ
ଅନ୍ତଃକାଳେ ପାଇବଇଁ ବଇକୁଣ୍ଠେ ସ୍ଥାନ ।
ଏ କଥା ବିରୋଧ ଗୁରୁ ନ କର ହେ ତୁମ୍ଭେ
ସତ୍ୟଭଗ୍ନ ନୋହିବୁଁ ହେ ପ୍ରାଣ ଦେବୁ ଆମ୍ଭେ
ଏ କଥାରେ ବିରୋଧ ତୁ ନ କର ଯେ ଆଉ
ସତ୍ୟ ନ ଲଙ୍ଘିବ ମୋର ପ୍ରାଣ ପଛେ ଯାଉ ।

ବଳୀ ବୋଇଲା ପଣ୍ଡିତ ଯେବେ ଯେବେ ଦାନ
ଶିରକମଳ ଦେବଇଁ ସତ୍ୟ ଏ ବଚନ ।
ଅନେକ ପ୍ରକାରେ ଶୁକ୍ର କହେ ନାସ୍ତି ବାଣୀ
ଚିତ୍ତରେ ସନମତ ନ କଲା ନୃପମଣି ।
ବାମନର ହସ୍ତେ ବଳୀ ଦ୍ୟନ୍ତେ ଶଙ୍ଖଜଳ
ରୂପତେ ଶୁକ୍ର ପଶିଲେ ଯାଇଁ ଶଙ୍ଖନାଳ ।
ବଳୀ ଢାଳନ୍ତେ ସେ ପାଣି ନ ପଡ଼ଇ ବେଗେ
କୁଶବଟୁରେ ବାମନ ଖେଞ୍ଚି ଦେଲେ ଜଗେ ।
ସେ କୁଶମୂଳ ବାଜଲା ଶୁକ୍ର ଚକ୍ଷୁରେଟି
ତତକ୍ଷଣେ ଶୁକ୍ରଙ୍କର ଚକ୍ଷୁ ଗଲା ଫୁଟି ।
ବଳୀରଜା ନ ଜାଣଇ ଶୁକ୍ର ହେଲେ କାଣ
ବାମନ ଦେଖି ରଜାର ହରଷିତ ମନ ।
ଉତ୍ତାଣବଣ୍ଡିବ ଶଙ୍ଖେ ଜଳ ତିଳ ଭରି
ମହାବାକ୍ୟ କରନ୍ତି ଯେ ସଇଳୋକ୍ୟ ହରି ।
ଦକ୍ଷିଣହସ୍ତ ପାତିଲେ ଚଳପଟେ ପୃଷ୍ଠି
ଉପର ହସ୍ତରେ ବଳୀ ଦେଲା ମନ୍ତ୍ର ପାଣି ।
ବଳୀ ବୋଇଲା ଶୁଣ ହୋ ତୁମ୍ଭେ ଦ୍ୱିଜବର
ଯାହା ମାଗିବ ତ ଦେବୁଁ ସତ୍ୟ ଏ ଆମ୍ଭର ।
ବାମନ ବୋଇଲେ ମୋର ଆନେ କାର୍ଯ୍ୟନାହିଁ
ଭୂମି ତିନିପାଦ ମୋତେ ଦେବୁ ନରସାଇଁ ।
ଏ ମୋର ତିନି ପାଦରେ ପାଇଲେ ମେଦିନୀ
ଘର କରି ରହିବି ମୁଁ କୁଟୁମ୍ବକୁ ଘେନି ।
ଶୁଣି ବଳୀ ଊର୍ଦ୍ଧ୍ୱ ମୁଖେ ଧର୍ମଙ୍କୁ ଚାହିଁଲା
ନଷ୍ଟେ ବ୍ରାହ୍ମଣ ବାଳୁତ ଘରକୁ କହିଲା ।
ଆହୋ ବ୍ରାହ୍ମଣ ତୁମ୍ଭେତ ବାଳୁତ ଯୁକତେ
ଭୂମି ତିନିପାଦ କମ୍ପା ମାଗ ଅନମିତେ ।
କ୍ଷୀରସମୁଦ୍ରେ ଘଣ୍ଟି ନ ତିନ୍ତିଲା ଚରଣ
ସପତନଧି ଆବୋରି ହେଲା ଅକାରଣ ।
ଏବେ ସ୍ୱର୍ଗପତି ତୁମ୍ଭେ ଲକ୍ଷ୍ମୀଠାରେ ଦୋଷୀ
ଧନ ଗରିଯା କୁଟୁମ୍ବ ପାରିବନି ପୋଷି
କେତେ ସ୍ଥାନ ଦ୍ରବ୍ୟ ମୋତେ ମାଗ ଦ୍ୱିଜବର
ସ୍ୱର୍ଗରଥିଲା ମାଗିବ ମୋତେ ରାଜ୍ୟ ସାର ।
ଶିର କମଳ ମୁଁ ଦେବି ଭାବଥିଲି ଚିତ୍ତେ
ମହାଦାମାପଣେ ବାଳ ଦେଲ ସିନା ଏତେ ।
ଯେତେ ଅନ୍ନବସ୍ତ୍ର ତୁମ୍ଭ କୁଟୁମ୍ବେ ଲାଗିବ
ଭଲ ଭଲ ଗ୍ରାମ କମ୍ପା ନ ମାଗିଲ ଦେବ ।

ସ୍ୱର୍ଗ ମର୍ତ୍ତ୍ୟ ପାତାଳ ମୁଁ ଦେଇପାରେ ତୋତେ
କୁବେରର ଭଣ୍ଡାର ଆଦି ଅଛି ମୋର ହାତେ
ବାମନ ବୋଇଲେ ତୁମ୍ଭେ ଶୁଣ ଦଣ୍ଡଧାରୀ
ସତ୍ୟେ ତିନିପାଦ ଭୂମି ଦିଅ ଦୟା କରି ।
ଦାତାଗ୍ରହୀତା ଏ ଦୁହେଁ ନୋହିଲେ ସୁଚିତ୍ତ
ସପ୍ତଦ୍ୱୀପା ପୃଥ୍ୱୀଦେଲେ ନୁହଇ ପୂରିତ ।
ତୁମ୍ଭେ ମହାରଜା ମନେ ନ ବିସ୍ମର କରି
ତିନିପାଦ ଭୂମିରେ ଯେ ଆମ୍ଭ କାର୍ଯ୍ୟ ଅଛି ।
ସନ୍ତୋଷଏକ ଦେଲେ ରଜା ହୁଅଇ ଯେ ଲକ୍ଷେ
ଅସନ୍ତୋଷେ ଲକ୍ଷ ଦେଲେ ହୁଅଇ ସେ ଏକେ
ଲୋକେ ବହୁତ ଘେନିବା ତୁମ୍ଭଠାରୁ ଦାନ
ପରିଚ୍ଛେଦ କରିବାକୁ ନୁହଇ ଭାଜନ ।
ଆହେ ମହାରଜା ତିନିପାଦ ଭୂମି ଦିଅ
ବେଳୁବେଳ ସ୍ୱାମିଙ୍କର ବଢ଼ିଲାକ ବୋହ ।
ବଳୀ ବୋଇଲା ହୋ ତୁମ୍ଭେ ଶୁଣ ଦ୍ୱିଜଜନ
ଗଙ୍ଗାକୁଣ୍ଡ ତିନିପାଦ ଦେଲି ଭୂମି ଦାନ
ଧାତବାରେ ଚିତ୍ତି ସ୍ୱାମୀ ରଚିଲେକ ମାୟା
ମନ ସଂଯୋଗେ ପ୍ରକୃତି ବଢ଼ିଲାକ କାୟା ।
ଆକାଶ ମଣ୍ଡଳେ ଶିର ଲାଗିଲାକ ଯାଇଁ
ବଳୀ ନୃପତି ଆଶ୍ଚର୍ଯ୍ୟ ହେଲା ତାହା ଚାହିଁ ।
ଶଙ୍ଖ ଚକ୍ର ଗଦାପଦ୍ମ ଘେନି ଚତୁର୍ଭୁଜ
ସପତ ଶିଖା ମୁକୁଟ ବିରାଜଇ ତେଜ ।
ହୃଦରେ ମଣିର ହାର କର୍ଣ୍ଣରେ କୁଣ୍ଡଳ
ଯେସନେ ମଧ୍ୟାହ୍ନେ ଦିଶେ ଆଦିତ୍ୟମଣ୍ଡଳ ।
ଶ୍ରୀବତ୍ସ ଲାଞ୍ଛନ ହୃଦେ ନବରତ୍ନହାର
ହୀରା ଜଡ଼ିତ ସୁବର୍ଣ୍ଣ ବଳୟ ହସ୍ତର ।
ଭୂମଣ୍ଡଳଠାରୁ ଧ୍ରୁବମଣ୍ଡଳ ପର୍ଯ୍ୟନ୍ତେ
ଘୋଟିଛନ୍ତି ଚରାଚର ପୃଥ୍ୱୀ କାଞ୍ଚିତେ ।
ଜଳ ସ୍ଥଳ କନ୍ଦର ଯେ ସପତ ପାତାଳ
ସପତ ବ୍ରହ୍ମାଣ୍ଡ ଅଛି ପାଦପଦ୍ମତଳ ।
ସେ ପାଦଗୋଟି ବଢ଼ାଇ ଦେଲେ ବନମଳୀ
ଅଚ୍ଛିଦ୍ର ହୋଇ ଢାଙ୍କିଲା ଗୁଡ଼ି ମହୀସ୍ଥଳୀ ।
ନାରାୟଣ ଆଜ୍ଞା ଦେଲେ ବଳୀମୁଖ ଚାହିଁ
ଆଉ କେଉଁ ପାଦକୁ ତୋ ଭୂମିଅଛି କାହିଁ
ସତ୍ୟ ମନାଇଲା ବେଳେ ବୋଲିଅଛୁ ଯାହା
ଦେବୁ କି ନ ଦେବୁ ଆହୋ କହ ନରସହା

ବଳୀ ଯେ ବୋଇଲା ଶୁଣି ବାମନର ବାଣୀ
ଆଉ ପାଦକୁ ମୋ ସ୍ୱର୍ଗ ଅଛୁ ଦ୍ୱିଜମଣି ।
ମୁହିଁ ମହାଦାମ୍ଭ ମୋର ନାହିଁ କିଛୁ ଦଣ୍ଡ ।
ପିଣ୍ଡେ ପ୍ରାଣଥିଲେ ଦେବି ସତ୍ୟ ଏ ମୋହର
ମହତଜନ ବଚନ ନୋହେ ଭେଦେ ଆନ ।
ଦେଲି ଆଉ ପାଦକୁ ତୋ ସ୍ୱର୍ଗପୁର ଘେନ
ବଳୀରାଜାଠାରୁ ଜଗ୍ଧ ଏ ବଚନ ଶୁଣି ।
ସ୍ୱର୍ଗକୁ ବଢ଼ାଇ ଦେଲେ ପାଦ ଚକ୍ରପାଣି ।
ବ୍ରହ୍ମଲୋକ ପର୍ଯ୍ୟନ୍ତେ ବଢ଼ିଲା ପୟର
ସତ୍ୟଲୋକେ ଜାଣିଲେ ତା ଅଜ ଦେବବର
ଚତୁରାଣୀ ଭାଟି ଗଙ୍ଗା କମଣ୍ଡଳେ ଥୋଇ
ସ୍ୱାମୀଙ୍କ ଚରଣ ବେଗେ ପଖାଳିଲେ ନେଇ
ଚତୁରାଣୀ ଭାଟି ଗଙ୍ଗା ନଖକୋଣେ ପଶି
ହସ୍ତ ପ୍ରସାରଣ ବ୍ରହ୍ମା ତଳେ ଛନ୍ତି ବସି ।
ପାଦୋଦକ ନ ପଡ଼ିଲା ବ୍ରହ୍ମା ଯେ ନିରାଶ
ନଖକୋଣେ ରହେ ଗଙ୍ଗା ନ ପାଇଲେ ଲେଶ
ବାମନ ବୋଇଲେ ରାଜା ଆଉ ପାଦ ଦିଅ
ଦେଇ ନ ପାରିବୁ ଯେବେ ତାହା ମୋତେ କହ
ତା ସତ୍ୟ ବୁଝିବା ପାଇଁ ବୋଇଲେକ ସ୍ୱାମୀ
ସ୍ୱର୍ଗ ମର୍ତ୍ତ୍ୟ ଦେଲୁ ରାଜା ସମ୍ପୂର୍ଣ୍ଣତ ଭୂମି ।
ବଳୀ ବୋଲେ କାହିଁ ଦେବ ଭୂଲିଲୁ ମୋତେ
ମୁଁ ଯାହା ବାଞ୍ଛିଲି ତାହା ମିଳେ ଅନମିତେ
ଏ ଭୁମର ବିଶ୍ୱରୂପ ଦେଖିଲଇଁ ଆଜ
ମୁହିଁ ଯାହା କହୁଅଛୁ ଶୁଣ ଆହେ ଦ୍ୱିଜ ।
ଆରେକ ପାଦକୁ ମୋର ଠାବ ଅଛୁ ତିହ୍ନ
ଭୁମର ଆରେକ ପାଦ କାହିଁ ହେ ଗୋସାଇଁ
ଆରେକ ପାଦ ନାଭିରୁ କାଢ଼ିଲେ ଶ୍ରୀଧର
ମୁଖେ ବୋଲନ୍ତି ଯେ ଦାନ ଦିଅ ନୃପବର ।
ବିରୋଚନ ପୁତ୍ର ବୋଲେ ଶୁଣ ଜଗନ୍ନାଥ ।
ଏ ପାଦ ଗୋଟିକ ଭୂମିଅଛୁ ମୋର ମାଥ ।
ଏତେ ବୋଲି ଶିର ପାତିଦେଲା ରାଜା ନେଇ
ପାତାଳକୁ ଚାପିଲେ ଯେ ବ୍ରହ୍ମାଣ୍ଡ ଗୋସାଇଁ ।
ପାତାଳପୁର ସୁତଳପୁର ମହାତଳ
ବିତଳ ଅତଳ ରସାତଳ ତଳାତଳ ।
ଏହିପରି ତଳକୁ ଯେ ସାତତାଳ ପୁର
ଚାପନ୍ତେ ବଳିରାଜନ ପଶିଲା ଭିତର ।
ପାତାଳ ବୈକୁଣ୍ଠେ ବଳୀ ରହେ ପାଦ ଧ୍ୟାୟି
ଏ ଦେହେ ଭୋଗ କରିବ ଇନ୍ଦ୍ର ପଦ ପାଇ ।
ବଳୀରାଜ ତୁଲେ ଥିଲେ ପ୍ରଚଣ୍ଡ ଯେ ମଲ୍ଲ
ବାଉନକୋଟି ଯେ ଏକୁ ଆରେକ ଅଗଳ
ବଳୀରାଜାକୁ ପାତାଳେ ଚାପିବାର ବେଳେ
ରହିଲେ ବାଉନକୋଟି ମାଲ ପାଦତଳେ ।
ଚରଣ ଝାଳ ଯେ ରୋମ ହେଲେ ଟାଙ୍କୁରାଇ
ଅନେକ ଦୂରେ ପଡ଼ିଲେ ଘାରେ ଉଡ଼ିଯାଇ ।
ନବହସ୍ତି ବଳ ଏକ ଏକ ମାଲ ଧରେ
ସେ ମାଲେ ପଡ଼ିଲେ ଯାଇଁ ଧାରଣିତଳରେ ।
ଏମନ୍ତ ସ୍ୱରୂପ ଦେଖି ସୁରପୁରବାସୀ
କରଯୋଡ଼ି ଛିଡ଼ା ହେଲେ ରୁମ୍ଭରେ ସେ ଆସି
ଗନ୍ଧର୍ବଗଣ ଆଦି ଯେ ସୁରସିଦ୍ଧ ମୁନି
ବ୍ରହ୍ମା ସନ୍ନିଧରେ ଆସି କଲେ ବେଦଧ୍ୱନି ।
ନମସ୍ତେ ମାଧବ ଆହେ କମଳାର ବର
ଜୟ ଜୟ ବାମନ ହେ ଜୟ ବିଶ୍ୱମ୍ଭର ।
ନମସ୍ତେ ବାମନ ଜୀବ ସକଳର ଆତ୍ମା
ନମସ୍ତେ ବାମନ ନିରଞ୍ଜନ ମହାତ୍ମା ।
ଜୟ ବାମନ ଯୋଗୀଙ୍କ ଯୋଗରୂଢ଼ ନିଧି
ନମସ୍ତେ ବାମନ ଅଷ୍ଟ ଅଇଶ୍ୱର୍ଯ୍ୟ ସିଦ୍ଧି ।
ନମସ୍ତେ ବାମନ ତୁ ଯେ ପାପତମ ଧ୍ୱଂସୀ
ନମସ୍ତେ ବାମନ ତୁ ଯେ କୃପାମୟ ରାଶି ।
ନମସ୍ତେ ବାମନ ମନ ବାଞ୍ଛା କରୁ ସିଦ୍ଧି
ଧ୍ୟାନକୁ ଧାରଣା ତୁହି ମନକୁ ହେ ବୁଦ୍ଧି ।
ହେନ୍ତୁ ବାମନ ପାଦରେ ମୋର [illegible] ସେବା
ଅଚ୍ୟୁତ ଦାସ କହଇ ଗତି ମୁକ୍ତି ଦେବା ।

—o—

## ଦେବକୀ ଓ ଦୈବକୀ ବିଭା

ଏଥୁ ଅନନ୍ତରେ ପୁଣ ପରୀକ୍ଷିତ ରାଜା
ଶୁକ ମୁନିଙ୍କ ଚରଣେ କଲେ ଅର୍ଘ୍ୟ ପୂଜା ।
ହେ ମୁନି ଆଦ୍ୟଖଣ୍ଡ ଏ ହରିବଂଶ ବାଣୀ
ପାପକ୍ଷୟ ହୋଇଗଲା ତବ ମୁଖ ଶୁଣି ।
କଂସ ରାଜା ଯେ ତୋମତ ରୁଷି ଶାପ ପାଇ
ତେଣୁ ସେ ଗୋପନଗ୍ରକୁ ନ ପାରଇ ଯାଇ ।
ଏଥୁ ଅନନ୍ତରେ କଥା ହେଲା କଂସ ପୁଣ
ସଂକ୍ଷେପି କହିବା ମୋତେ ବ୍ୟାସଙ୍କ ନନ୍ଦନ ।

ଶୁକମୁନି ବୋଲେ ଶୁଣ ଅଭିମନ୍ୟୁ ସୁତ
ପ୍ରତ୍ୟକ୍ଷେ ଏ ହରିବଂଶ ମୁକ୍ତି ଗତି ପଥ ।
ଜନସ୍ମୀହୋଇ ତୁ ରଜା ପଚ୍ଚରିଲୁ ମୋତେ
ଶୁଣ ପରୀକ୍ଷିତ ଫେଡ଼ି କହିବା ତତନ୍ତେ ।
କଂସର ଅନୀତି ଦେଖି ଉଗ୍ରସେନ ରାଜେ
ଧର୍ମ ବିଚାରି ପାପକୁ କଲେ ମହାଭୟେ ।
ଏହି ପ୍ରକାରେ ଚଳ୍ପି କେତେଦିନ ଯାନ୍ତେ
ବେନି ପୁତ୍ରକୁ ବସାଇ ଶିଖାଇ ଏକାନ୍ତେ ।
ସନ୍ନିଧିରେ ବସାଇ ସେ ରଜା ଉଗ୍ରସେନ
ଆଶ୍ୱାସନା କରି ତାଙ୍କୁ କହଇ ବଚନ ।
ଯଦୁବଂଶକୁ କାରଣ ଅଟ ବେନି ଗୋଟି
ମହାରଜା ହୋଇ ତୁମ୍ଭେ ପାଳ ନବସୃଷ୍ଟି ।
ସାତବଂଶ ଲୋକଙ୍କର ଅଟ ତୁମ୍ଭେ ରକ୍ଷ୍ୟ
ଅତି ମନ୍ଦକର୍ମ ତୁମ୍ଭେ କରୁଅଛ କୋଲ୍ଟୁ ।
ମୁଁ ତୁମ୍ଭର ପିତା ବାବୁ କହୁଅଛି ଏତେ
ଗୋରୁ ବିପ୍ର ପୀଡ଼ା ବାବୁ ନ କର କଦାଚିତେ
ଭଗବନ୍ତ ସନ୍ନ୍ୟାସୀ ଯେ ତପୀ ବ୍ରହ୍ମଚାରୀ
ଏମାନଙ୍କୁ ପୀଡ଼ା ଦେଲେ ଆୟୁ ଆଉଁ ମରି ।
ଶିକ୍ଷାଗୁରୁ ନିନ୍ଦା କଲେ ବିଦ୍ୟା ନୋହେ ସିଦ୍ଧି
ଔଷଧ ନିନ୍ଦିଲେ ଜନ୍ମେ ଜନ୍ମେ ପାଇ ବ୍ୟାଧି ।
ବିପ୍ରନିନ୍ଦା କଲେ ଯାଇ ସୁକୃତ ଯେ କ୍ଷୟ
ଶସ୍ତ୍ର ନିନ୍ଦା କଲେ ନୋହେ ସଂଗ୍ରାମରେ ଜୟ
ବେଦ ନିନ୍ଦାକଲେ ବାବୁ ହୁଅନ୍ତି ଯେ ମୂର୍ଖ
ଶତେଜନ୍ମ ଯାଏ ତାର ନାହିଁ ବିଦ୍ୟାସୁଖ ।
ରତ୍ନ ନିନ୍ଦାକଲେ ହୋଏ ଦରିଦ୍ର ସେ ଜନ
ପୃଥିବୀ ନିନ୍ଦିଲେ ଶସ୍ୟ ନ ପାଇ ସେ ପୁଣ ।
ଦେବତା ନିନ୍ଦିଲେ ଯାଇ ଅଳପକେ ନାଶ
ପରପୁଣ୍ୟ ନିନ୍ଦା କଲେ ନର୍କେ ପାଏ ବାସ ।
ପତ୍ନୀ ନିନ୍ଦା କଲେ ତାକୁ ଲକ୍ଷ୍ମୀ ଛାଡ଼ି ଯାଇ
ସୁପୁତ୍ରକୁ ନିନ୍ଦାକଲେ କୁସଙ୍ଗ ସେ ପାଇ ।
ମାତା ପିତା ନିନ୍ଦା କଲେ ନରକରେ ବାସ
ଶତେଜନ୍ମ ପରିଯନ୍ତେ ନୁହଇ ମନୁଷ୍ୟ ।
ଜଳନିନ୍ଦା କଲ ପ୍ରାଣୀ ଜଳକା ହୁଅଇ
ମନ୍ତ୍ରୀଙ୍କ ନିନ୍ଦିଲେ ରଜା ରଜ୍ୟ ସୁଖ ଯାଇ ।
ରଜାକୁ ନିନ୍ଦା କଲେଟି ହୁଏ ଶିରଚ୍ଛେଦ
ମନ୍ଦ କର୍ମ କଲେ ଲୋକେ ବୋଲନ୍ତି ଯେ ମନ୍ଦ
ଧର୍ମ ଏକା ଏ ସଂସାର ଜଳକୁ ନଉକା
ଅନ୍ତଃକାଳେ ଜାଣ ଏକା ଧର୍ମ ଅଟେ ସଖା ।
ଧର୍ମକୁ ଆଶ୍ରେ କଲେ ନ ଥାଇ କଷ୍ଟ ଭୟ
ଗ୍ରହ ପୀଡ଼ା ନ ଆଇଟି ସଂଗ୍ରାମରେ ଜୟ ।
ଏମନ୍ତେ ଯେ କହିଅଇଲେ ରଜା ଉଗ୍ରସେନ
କଂସରଜା ନ ଶୁଣଇ ପିତାର ବଚନ ।
କଂସ ବୋଲେ ପିତାଜାଣେ ମୁଁ ସର୍ବବ୍ୟାଖ୍ୟାନ
ମୁଁ ଯାହା କହୁଛି ଏବେ ଶୁଣ ମୋ ବଚନ
ଯେବଣ ବଇବ ମୋତେ କରଅଛୁ ଜାତ
ସତମାର୍ଗେ ବୁଦ୍ଧି ମୋତେ ନ ଦେଲ କଦାଚିତ
ଅମାର୍ଗ ଦୁରାଚ୍ଚର ଯେ ଦୁର୍ଜନ କୁସଙ୍ଗ
ଏହା ବିନା ଆନେ ମୋର ନାହିଁ ଅନୁରାଗ ।
ଉଗ୍ରସେନ ବୋଲେ ପୁତ୍ର ଅଛୁ ମୋର କର୍ମ
ଯେଉଁ ବିଧାତା କରିଛି ତୁମ୍ଭଙ୍କୁ ଜନମ ।
ସେ ସିନା ଜାଣିବ ପୁତ୍ର ତୁମ୍ଭ ଲାଭ ହାନି
ଏତେବୋଲି ରଜା ତହୁଁ ହୋଇଲେକ ତୁନି
ଏଥୁ ଅନନ୍ତରେ ଚଳ୍ପି କେତେଦିନ ଗଲା
ନିଅବକାଶେ ରଜାକୁ ରାଣୀ ଜଣାଇଲା ।
ଦେବକୀ ଦୈବକୀ ବେନି ଦୁହିତା ତୁମ୍ଭର
ଏହାଙ୍କର ବିଭା ପ୍ରଭୁ ମନରେ ବିଚାର ।
ସୁକୁମାରୀ ସୁନ୍ଦରୀ ଏ ହେଲେ ନବଯୁବା
ରୂପ ଅନୁରୂପେ ବର ଆଣି କର ବିଭା ।
ଜାତି କୁଳ ଗୋତ୍ର ରୂପ ଗୁଣଙ୍କୁ ବିଚାରି
ପ୍ରଦାନ କର ହେ ପ୍ରଭୁ ଏ ବେନି କୁମାରୀ ।
ଏକଥା ଗୋଟିରେ ଡେରି ନକର ଅଳସ
କୁଳକୁ କଳଙ୍କ ହେଲେ ଧର୍ମ ଯାଇ ନାଶ ।
ରାଣୀର ବଚନ ଶୁଣି ରଜା ଉଗ୍ରସେନ
ବିଶ୍ୱାସି ଲୋକମାନଙ୍କୁ ହକାରି ବହନ ।
ମନ୍ତ୍ରୀ ଅମାତ୍ୟ ଯେ ଗୁରୁ ପୁରୋହିତ ରାଇ
ରଣରଜା ପୁତ୍ରଙ୍କୁ ସେ ପାଖରେ ବସାଇ ।
ବୋଲେ ଆମ୍ଭ ବେନିକନ୍ୟା ହେଲେ ନବଯୁବା
ରୂପ ଅନରୂପେ ବର ବାଛି କର ବିଭା ।
ଏମନ୍ତ ଶୁଣି ସମସ୍ତେ ବିଚାରିଲେ ବସି
ବସୁଦେବକୁ ଦେବକୀ ଦୁହିତା ଦିଅସି ।
ଦମଘୋଷକୁ ଯେ ଦିଅ ଆରେକ କୁମାରୀ
ଏ ଦୁଇ ବର ବୋଇଲେ ସମସ୍ତେ ବିଚାରି ।

କୃଷ୍ଣ ଶୁକ୍ଳ ତ୍ରୟୋଦଶୀ ତିଥି ଗୁରୁବାର
ମଘା ନାମେ ନକ୍ଷତ୍ର ଯେ ଅଟେ ସେ ଦିନର
ସିଂହ ବାଳବ କରଣ ଇନ୍ଦ୍ର ନାମେ ଯୋଗ
କୃଷ୍ଣ ସଙ୍କ୍ରାନ୍ତିର ଊଣେଇଶ ଦିନ ଭୋଗ ।
ବୃହସ୍ପତିଙ୍କ ବେଳାରେ ବିଚାର ନିଗୂର
ଜ୍ୟୋତିଷେ ଶୁଭ ଲଗ୍ନ ଧଇଲେ ଆଦର ।
ସେ ଦିନ ବସୁଦେବଙ୍କୁ ଆଣିଥିଲେ ବର
ବର ଆଣିଲେ ଯାହାକୁ ବରବେଶ କରି ।
ଡାହାଣବର୍ତ୍ତି ଶଙ୍ଖେ ଗଙ୍ଗା ଜଳ ଦେଲେ
ବରକନ୍ୟା ନାମ ଧରି ଶିରେ ନଢ଼ାଇଲେ ।
ଦେବକୀ ବସୁଦେବଙ୍କୁ ବିଭା ଯେ ହୁଅନ୍ତ
ଶଙ୍ଖେ ପାଣି ଧରି ଆଣି ଯଉତୁକ ଦ୍ୟନ୍ତ ।
ରଥ ଗଜ ତୁରଙ୍ଗମ ଦାସୀ ଆଣ କରି
ଗୋରୁ ମଇଁଷି ଭଣ୍ଡାର ଧନ ଦେଇ ବାରି ।
ପୂର୍ବ ବିଧିମତେ ଯଉତୁକମାନ ଦେଲେ
ମଙ୍ଗଳ ଉତ୍ସବ ଅତି ଯତନେ ବିଭାକଲେ ।
ବସୁଦେବଙ୍କୁ ଦେବକୀ କନ୍ୟା ବିଭା କରି
ବଜାଇ ଦମା ଟମକ ଶଙ୍ଖ ଢୋଲ ଭେରୀ ।
କଡ଼ା ମର୍ଦ୍ଦଳ ବାଜଇ ବହେ ବାଦ୍ୟଘୋଷ
ନ ନାହି ସାର ବାଦ୍ୟରେ ପୂରେ ଦଶଦିଶ ।
ଉଭୟ କୂଳ ଉଚ୍ଚାରି ସପତ ପୁରୁଷ
ବର କନ୍ୟାଙ୍କର ହସ୍ତେ ବାନ୍ଧିଲେ ଯେ କୁଶ ।
ଯୁବତୀଗଣେ ଗାଆନ୍ତି ମଙ୍ଗଳ ସେ ଗୀତା
ଆପେ ଉଗ୍ରସେନ କୋଳେ ବସାଇ ଦୁହିତା ।
ସନ୍ତୋଷ ହୋଇଣ ଉଗ୍ରସେନ ଯେ ରାଜନ
ଯଉତୁକ ଦେଲା ଲକ୍ଷେ ମାଢ଼ ଯେ ସୁବର୍ଣ୍ଣ ।
ବେନି ସହସ୍ର ରଥ ତୁରି ସହସ୍ର ଗଜ ତୁରୁ
ଦଶସହସ୍ର ପଦାତିକ ଆଠ ସହସ୍ର ଦାରୁ ।
ପୃଥିବୀ ରାଜନ ଶଙ୍ଖେ ଜଳ ତିଳ ଭରି
କୋଟିରତ୍ନ ଦେଲା ମନେ ଶ୍ରୀବିଷ୍ଣୁ ସୁମରି ।
ଦାସୀ ଷଷ୍ଠିବାଶ ଦେଲେ ଗୋରୁଦାନ ମୂଳେ
ଅନେକ ଯଉତୁକ ସେ ଦେଲେ ବିଭାବେଳେ
ଆଉରେକ ଦୁହିତା ନାମ ଦଇବକୀ ବାଳୀ
ଦମଘୋଷ ନୃପତିଙ୍କ ଦେଲେ ସତ୍ୟପାଳୀ ।
ବିଧିମତେ କଲେ ଗଜ ତୁରଙ୍ଗମ ଦାନ
ରଥ ଆଦି କରି ନାନାବିଧ ଦ୍ରବ୍ୟମାନ ।
ଚତୁର୍ଥୀ ସପ୍ତମଙ୍ଗଳା ସାରିଲେ ଯେ ବିଧି
ଉଗ୍ରସେନ ଘରେ ଯେଉଁ ଦିନ ଯେଉଁସିଦ୍ଧି ।
ବିବାହ ବିଧି ସାରିଣ ଜାମାତା ସେ ବେନି
ଯେ ଯାହା ମନ୍ଦିରେ ଗଲେ ବରକନ୍ୟା ଘେନି
ବୃଷ୍ଣି ବଂଶେ ଜାତ ସେ ଯେ ବସୁଦେବଙ୍କ ବାମା
ଦେବକୀ ନାମେ ଯେ କନ୍ୟା ରୂପେ ଅନୁପମା ।
ସୁଘୋଷର ପୁତ୍ର ଅଟେ ଦମଘୋଷ ସାର
ଦଇବକୀ ନାମେ କନ୍ୟା ହୋଇଲା ତାହାର ।
ମଥୁରାରେ ବସୁଦେବ ଦେବକୀ ରହିଲେ
ଦମଘୋଷ ଦଇବକୀ କନ୍ୟା ଘେନିଗଲେ ।
ଚେଦି ନାମେ ଦେଶରେ ସେ ହୋଇଲା ପ୍ରବେଶ
ନଗ୍ରେ ପଶନ୍ତେ ଶୁଭଇ ମଙ୍ଗଳ ସୁଘୋଷ ।
ଶେଷ ହୋଇଲା ଦେବକୀ ଦଇବକୀ ବିଭା
ଅଚ୍ୟୁତାନନ୍ଦ ଦାସଙ୍କୁ ମୁକ୍ତିପଥ ଦେବା ।

—୦—

## କଂସ ନାରଦଙ୍କର ମନ୍ତ୍ରଣା ଓ ଅଷ୍ଟମଲ୍ଲଙ୍କ ସଙ୍ଗେ କଂସର ଭେଟ

ଶୁକ ମୁନି ବୋଲେ ଶୁଣ ପରୀକ୍ଷିତ ରାୟେ
ଏ ଆଦ୍ୟ ଖଣ୍ଡ ଶୁଣନ୍ତେ ପାପକ୍ଷୟ ହୋଏ ।
କେତେକ ଦିନେ ନାରଦ ନାମେ ମହାମୁନି
ମିଳିଲେ ଆସି ମଥୁରା ପୁର ରାଜଧାନୀ ।
ହସ୍ତେ ବ୍ରହ୍ମବୀଣା ଶୋଭେ ପିଙ୍ଗଳ ମୂରତି
ନିର୍ଦ୍ଧୂମ ଅଗ୍ନି ପରାୟେ ଦିଶେ ତାଙ୍କ ଜ୍ୟୋତି ।
ମନ ପବନ ଦଣ୍ଡରେ ଚଢ଼ି ହରି ରଟି
ସ୍ଫଟିକମାଳ ହସ୍ତରେ କଟୀରେ ଲେଙ୍ଗୁଟି ।
କୃଷ୍ଣାଜିନ ଉତ୍ତରୀୟ କନ୍ଧରେ ପଇତା
ଦ୍ୱାଦଶ ଟିପା ଅଙ୍ଗରେ ହରିନାମ ଛିତା ।
ଗଳେ ତୁଳସୀ କୁଣ୍ଡଳ ଛନ୍ଦି କଣ୍ଠେ ଶୋଭେ ।
ଗଙ୍ଗାଜଳ କମଣ୍ଡଳୁ କରେ ଶୋଭାପାଏ ।
କଚ୍ଛ ଧୂକୁଡ଼ି କାଖରେ ବେଦକାଣ୍ଡି ଘେନି
କଟୀରେ ବେଢ଼ାଇଛନ୍ତି କଉପୁନି ମୁନି ।
ବେଦପଞ୍ଜିର ସମାନ ଅଟନ୍ତି ସେ ଯତି
ଅଦ୍ଭୁତେ ଆକାଶ ହୁଁ ଖସିଣ ଆସନ୍ତି
ମୁନିଙ୍କି ଦେଖିଣ କଂସ ହସ୍ତତଳା କହେ
ଆସ୍ଥାନ ତେଜନ୍ତି ଧାଏ ପାଏ ଛଡ଼ି ଶୋଏ ।

ପ୍ରଣାମ କରିଣ ସେହୁ ଯୋଡ଼େ ବେନକର
ହେ ମୁନି ଜୀବନ ଆଜ ସଫଳ ମୋହର ।
ଧନ୍ୟ ଧନ୍ୟ ପିତା ମୋତେ କଲ ଏଥି ଜନ୍ମ
ତୁମ୍ଭଙ୍କୁ ଦେଖିଲି ମୁନି ସଫଳ ମୋ ଜନ୍ମ ।
ଏତେବୋଲି କଂସ ମୁନି ଚରଣ ଧୋଇଲା
ପାଦୋଦକ ହସ୍ତେ ନେଇ ଶିରେକୁ କ୍ଷେପିଲା ।
କଂସର ନମ୍ରଭକ୍ତି ଯହୁଁ ସେ ଦେଖିଲେ
ମହାମନ୍ତ୍ର ପଢ଼ି ମୁନି କଲ୍ୟାଣ ବାଞ୍ଛିଲେ ।
କଂସ ବୋଇଲା ମୁନି ହେ ପଥଶ୍ରାନ୍ତ ହୋଇ
ମୋପୁରେ ଆଜ ବିଜୟ କଲ କିସପାଇଁ ।
ନାରଦ ବୋଇଲେ ରାଜା ଦୟା ଯହୁଁ ତୋତେ
ଶ୍ରଦ୍ଧାରେ ଅଇଲି ତେଣୁ ଦେଖିବା ନିମନ୍ତେ ।
ତେଜେ ବଳବନ୍ତ ତୁହି ଅଟୁ ସାମରଥ
ତ୍ରିଲୋକ୍ୟରେ ବିଖ୍ୟାତ ହୋଏ ତବକଥା
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ତୁ ହୋଇବୁ କାରେଣୀ
ରାଜାମାନଙ୍କୁ ଧ୍ୱଂସିବୁ ତୁ ହୋ ବୀରମଣି ।
ତୋତେରେ ନୋହିବେ ସମ ଋଷିତଳେକେହି
ଅନେକ ବାର ଜନ୍ମିଲୁ ତୁହି ଦେହ ବହି ।
ଯେ ତୋହର ଶତ୍ରୁ ତାକୁ ନ ଜାଣୁ ନ ଚିହ୍ନୁ
ଭ ଲକବଳରେ ପଡ଼ି କହୁ ନ ପ୍ରମାଣୁ ।
ଜରିବୁ ଯେବେ ସଂଗ୍ରାମ ତୁହୋ ଅଙ୍ଗରେ
ଯେ ଟି ଇନ୍ଦ୍ର ହେଲେ ଜିଣି ପାରିବୁ ତୁ ବଳେ
ମର୍ତ୍ତ୍ୟପୁରେ ରାଜା କେହି ନୋହିବାକ ସମ
ସୁରବର ସୁନ୍ଦର ତୁ ଶତ୍ରୁ କାଳଯମ ।
ବୀରଙ୍କ ଉପରେ ତୋର ବିଖ୍ୟାତ ଗାରିମା
ସଂଗ୍ରାମେ ଶତ୍ରୁକୁ ଜିଣି ରଖାଇଲୁ ସୀମା ।
ବ୍ରହ୍ମ କ୍ଷତ୍ରୀ ବୈଶ୍ୟ ଶୂଦ୍ର ଜାତି ସେ ଅଟନ୍ତି
ଏ ଚାରିଙ୍କ ଚାରିକର୍ମ ବିହି ଦେଇଛନ୍ତି ।
ବ୍ରହ୍ମ ଷଟ୍‌କର୍ମ ଅଟେ ଯେ ଯଜନ ଯାଜନ
ଦାନ ପ୍ରତିଗ୍ରହ ଅଧ୍ୟୟନ ଅଧ୍ୟାପନ ।
କ୍ଷତ୍ରିଙ୍କ କର୍ମ ସଂଗ୍ରାମେ ଦାନ ଏହି ବେନି
ବାଣିଜ୍ୟବର୍ତ୍ତେ ସାଧନ୍ତି ସେ ସକଳ ମେଦିନୀ ।
ବାହୁବଳେ ଚରାଚର ମେଦିନୀ ଯେଜିବ
ଶତ୍ରୁ ଆଗତ ହୋଇଲେ ନାସ୍ତ ମାରିବ ।
ପରବସ୍ତୁକୁ ସଂଗ୍ରାମ କରି ବେଗେ ମାରି
ସହସ୍ରେକ ଅଶ୍ୱମେଧ ତାକୁ ନୋହେ ସରି ।

ପିଠେ ପ୍ରାଣ ଥାଉଁ କରେ ଯେ ସଂଗ୍ରାମେଭୟ
କୁମ୍ଭୀପାକ ନରକରେ ପଡ଼େ ତାର କାୟ ।
ଆହେ କଂସ ରାଜା ତୁହି ଶୁଣ ଆମ୍ଭ ବୋଲ
ଏ ଦ୍ୱାପରଯୁଗରେ ଯେ ଅଟୁ ମହାମଲ୍ଲ ।
ପୂର୍ବଜନ୍ମ କଥା ତୁହି ପାଶୋରିଲୁ ବେଗେ
କାଳନେମି ଅବତାର ହେଲୁ ସତ୍ୟଯୁଗେ ।
ଯୁଗାନ୍ତକ ରୂପ ଦେଖୁ ଦେଖୁ ତୁ ଧଇଲୁ
ଚଉରାଶୀ ଯୁଗଯାଏ ନରକେ ବୁଡ଼ିଲୁ ।
କାଳନେମି ଅବତାରେ ଦେବ ହୃଷୀକେଶ
ତିଳପ୍ରମାଣ କାଟିଲେ ଏ ତୋହର ମାଂସ ।
ହାଡ଼ଗୋଡ଼ ରକତକୁ ମେଦ ଏକକରି
ଅନେକ ଅବସ୍ଥା ତୋତେ ଦେଲେ ନରହରି
ବଡ଼ବାନରେ ଧଇଲୁ ତୁ ଅନେକ ଦେହ
ଅନେକ ପ୍ରକାରେ ଦଗ୍ଧ ନୋହିଲାତୋ'କାୟ
ଚଉଦମନୁ ଯାଏ ସେ ଯୁଝିଲେ ତୋ ସଙ୍ଗେ
ନ କାଟିଲା ସୁଦର୍ଶନ ଚକ୍ର ତୋର ଅଙ୍ଗେ ।
ସଂଗ୍ରାମ କଲେ ଗରୁଡ଼ ଉପରେ ସେ ଚଢ଼ି
ତୋର ନିଶ୍ୱାସରେ ଗଲେ ଶତ୍ରୁ ଶୂନ୍ୟେ ଉଡ଼ି
କୌଣସି ପ୍ରକାରେ ତୋତେ ନ ପାରିଲେ ଜିଣି
ବିଷ୍ଣୁକୂଟ ମାୟାକଲେ ପ୍ରଭୁ ଚକ୍ରପାଣି ।
ହୟଗ୍ରୀବ ରୂପ ତହୁଁ ଧରି ନାରାୟଣ
ତୋର ମୂର୍ଦ୍ଧନା ବିଦାରି ନେଲେ ତୋ ପ୍ରାଣ
ଅନେକ ପ୍ରକାରେ କୃଷ୍ଣ ମାୟାରୂପ ଧରି
ସେ ଜନ୍ମେ ଗୋବିନ୍ଦ ହସ୍ତେ ତୁହି ଥିଲୁ ମରି
ଏବେ କଂସରୂପେ ଆସି ଅବତାର ହେଲୁ
ଉଗ୍ରସେନ ନୃପତିର ପୁତ୍ର ବୋଲାଇଲୁ ।
ଆନର ହସ୍ତରେ ତୋର ମରଣ ନାହିଁ
ନାରାୟଣଙ୍କ ମାରିବେ ତୋତେ ଦେହ ବହି ।
ଏ କଥାଗୋଟି ତୁ ତଥ୍ୟ କରି ଜାଣିଥିବୁ
ଗୋବିନ୍ଦର ହସ୍ତରେ ତୁ ନିଶ୍ଚୟ ମରିବୁ ।
ତୁ ଯହୁଁ ଆମ୍ଭଙ୍କୁ ଜନ୍ମେ ଜନ୍ମେ ଥାଉ ସେବ
ଜାଣି ଏକଥା କେମନ୍ତେ ତୋତେ ନ କହିବ ।
ଏହା ଶୁଣି କଂସରାଜା ସ୍ତମ୍ଭୀଭୂତ ହେଲା
କରପତ୍ର ଯୋଡ଼ି ମୁନି ଆଗେ ଜଣାଇଲା ।
ହେ ମୁନି ବଡ଼ ସନ୍ଦେହ ଲାଗିଲାତ ମୋତେ
ଶାନ୍ତି ମୁଁ ପାଇଲି ଦୟା ଲଗାଇଲ ଚିତ୍ତେ ।

ଏ ମୋହର ମନଜ୍ଞାନ ପ୍ରତେ ଯାଉନାହିଁ
ନୟନ ଦେଖିଲେ ସିନା ପ୍ରତେ ଯିବ ମୁହିଁ ।
ନାରଦ ବୋଇଲେ ଆମ୍ଭେ ନ କହୁଁ ଯେ ମିଛ
ଶ୍ରଦ୍ଧା ହେଲେ ଦେଖାଇବା ତୋତେ ପ୍ରତ୍ୟକ୍ଷ
କାଳନେମି ଅବତାରେ ଯେବଣହିଁ କାଳେ
ପାଦ ନ ଛିଣ୍ଡିଲା ତୋର ପ୍ରଳୟର ଜଳେ ।
ତୋହର ଅଟନ୍ତି ଅଷ୍ଟମଲ୍ଲେ ପ୍ରାଣସଖା
ବୀଜମନ୍ତ୍ର ପଢିଲେ ସେ ବେଳେ ଆସି ଦେଖା
ଗୁପତ କଥା ଗୋଟି ଏ ପୂର୍ବସନ୍ଧ ବାଟ
ଏ ମନ୍ତ୍ର ଗୋଟି ପଢ଼ିଲେ ଲଗିବ ଛଚାଟ ।
ଏକାଦଶରୁ ତୁମ୍ଭେ ଯେ ଦଶକଣ୍ଠ ହୋଇ
ସର୍ବକାଳରେ ତୁମ୍ଭେ ଥାଅ ଦେହ ବହି ।
ଅନେକ ଦୂରରେ ଯେବେ ଥିବ ତୁମ୍ଭ ପିଣ୍ଡ
ଏକ୍ଷଣି ହୋଇବେ ଆସି ଦେଖୁ ଦେଖୁ ରୁଣ୍ଡ ।
ମେରୁ ଉତ୍ତର ଭାଗରେ ବଳୟ ଯେ ବନ
ଅଙ୍ଗିର ନାମେ ନଦୀ ଯେ ତହିଁ ବଡପନ ।
କୁଣ୍ଡଳୀନାମେ ପର୍ବତ ଅଛି ତା ନିକଟେ
ଯହିଁ ବର୍ପିଷ୍ଟେ ଯେସନେ ଲୁଚିଥାନ୍ତି ଖଣ୍ଡେ ।
ସୁଖେ ବିହରନ୍ତି ସେହି କାମରୂପୀ ହୋଇ
ତାଙ୍କ ଡରେ ଜୀବଜନ୍ତୁ ଗମ୍ୟାଗମ୍ୟ ନୋହି ।
ଅନେକ କାଳରୁ ସେହି ଲୋଡ଼ୁ ଥିଲେ ତୋତେ
ଜାତ ହୋଇ ଅଛନ୍ତି ସେ ତୋହର ନିମନ୍ତେ ।
ସେ ତୋର ପ୍ରାଣବାନ୍ଧବ ଏହା ଭଲେ ଜାଣ
ଗଉରବ କରି ବେଗେ ପାଶକୁ ତୁ ଆଣ ।
ତାଙ୍କଥାନ୍ତେ କାକୁ କହୁନାହିଁ ତୋତେ ଭୟ
କୋଟିସିଂହ ଇନ୍ଦ୍ର କରି ନ ପାରନ୍ତି ଜୟ ।
ତାହାଙ୍କ ସଙ୍ଗେ ତୁ ଭବ ହୋଇ ଏକଗୋଷ୍ଠୀ
ସଖା ସହୋଦର ହୋଇଥିବେ ସଦେ ଖଟି ।
ସେମାନେ ତୋତେ ନଦେଖି ହୋଇଛନ୍ତି କଷ୍ଟୀ
ଗୁପତ କଥା ଶୁଣିଣ କଂସ ହେଲା ତୁଷ୍ଟି ।
ଏଥେ ତୁମ୍ଭେ ଅଛ ବୋଲି ନ ଜାଣନ୍ତି ସେହି
ଏ ମନ୍ତ୍ର ଗୋଟି ମନରେ ବସ ତୁହି ଧ୍ୟାୟି ।
ଏତେ ବୋଲିଣ ନାରଦ ଦେଲେ ମନ୍ତ୍ରଗୋଟି
ଗୁପତ ମନ୍ତ୍ର ପାଇଣ କଂସ ମନ ତୁଷ୍ଟି ।
ମୋହର ଭେଟ ପାଇବ ଦିଅ ମୁକ୍ତ ଭିକ୍ଷା ।
କଂସ ବଚନେ ନାରଦ ମନ୍ତ୍ର ଦେଲେ ଶିକ୍ଷା ।

ଓଁ ଐଂ ହ୍ଲୀଂ ଶ୍ରୀଂ କ୍ଲୀଂ ସ୍ୱାହା ଗନ୍ଧର୍ବନରଯକ୍ଷ
ଏ ମନ୍ତ୍ର ପଢ଼ି ଯୁଝିଲେ କଣ ସୁର ରକ୍ଷ ।
ଷୋଡ଼ଶମାନେ ତୋହର ଗନ୍ଧର୍ବଙ୍କ ସଖା
ଏମନ୍ତ୍ର ପଢ଼ି ଯୁଝିଲେ ଆସି ଦେବେ ଦେଖା ।
ସ୍ତ୍ରୀ ସ୍ୱୟମ୍ବରନ୍ତେ ହୋନ୍ତି ପୁରୁଷେ ଯେ ବାଇ
ପୁରୁଷେ ସ୍ୱୟମ୍ବରନ୍ତେ ସ୍ତ୍ରୀ ପଛରେ ଗୋଡ଼ାଇ ।
ଏ ମନ୍ତ୍ର ପଢ଼ି ଦ୍ୱାରକା ରମ୍ଭୁକୁ ଯେ ଯାଇ ।
ଦ୍ରୋହ କରିଥିଲେ ମଧ୍ୟ ଦଣ୍ଡ ସେ ନପାଇ ।
ଏମନ୍ତ୍ର ସ୍ମରଣ ଯେତୁ ସଦା ଦୃଷ୍ଟି କରି
ସଙ୍ଗରେ ସେହି ଜଣେ ବାଘ ଯାଇ ହାରି ।
ଏହି ମନ୍ତ୍ର ପଢି ଯେବେ ଦେଶାନ୍ତର କରି
ଘର ଆପଣା ବାନ୍ଧବ ସଙ୍ଗେ ଭ୍ରମନ୍ତି ସରି ।
ସଂଗ୍ରାମେ ପଶି ପଢିବ ଯେବେ ମନ୍ତ୍ର ଗୋଟି
ଛଇ ଟ ଦୁଅନ୍ତି ସାଦର ଖାସ ରସ ମଷ୍ଟି ।
ଏ ମନ୍ତ୍ରଗୋଟି ଜପିଲେ ପୂର୍ବ ଦେବୀ ଉମା
ସଦାଶିବଙ୍କର ପ୍ରିୟା ହେଲେ ଆଦ୍ୟବାମା ।
ପୂର୍ବେ କମଳା ଦେବୀ ଏ ମନ୍ତ୍ର ଜପିଥିଲେ
ତେଣୁ ସେହି ବସିଛନ୍ତି ବିଷ୍ଣୁ ବକ୍ଷସ୍ଥଳେ ।
ଏ ମନ୍ତ୍ର ଗୋଟି ମହିମା ଜାଣ ଯେତେ ଅଛି
କହିବାକୁ ଜାଣ ନାହିଁ ଗୁଣମାନ ଲେଖି ।
ଯେତେବେଳେ ସେ ନାରଦ କହିଲେ ଏ ମନ୍ତ୍ର
କହିବା ମାତ୍ରକେ କଂସ ଜାଣିଲା ସମସ୍ତ ।
ଭୂତ ଭବିଷ୍ୟତ ବର୍ତ୍ତମାନ ବରଦାତା
ମନ୍ତ୍ର ପଢିବା ମାତ୍ରକେ ଜାଣେ ସବୁ କଥା ।
ମାନବଜନ୍ମେ ପାସୋରି ଥିଲା ଯାହା ଯାହା
ମନ୍ତ୍ରବଳେ ଏବେ ସବୁ ଜାଣିଲାକ ତାହା ।
ପୁଣି ନାରଦ ବୋଇଲେ କଂସମୁଖ ଚାହିଁ
ଆଉ କଥାଏ କହିବା ଶୁଣ ଭୋଜସାଇଁ ।
ଯାଦବବଂଶକୁ ତୁହି କରୁଅଛୁ ପୂଜା
ତୋହର ପିତା ବୋଲଇ ଉଗ୍ରସେନ ରଜା ।
ତୋହର ପିତା ଯେ କିଏ ତାହା ତୁ ନଜାଣୁ
ଆମ୍ଭର କହିଲେ ତୁହି ମିଛ ପ୍ରାୟ ମଣୁ ।
କଂସ ବୋଇଲା ମୁନି ହେ ଏହା ମୋତେ କହ
ତୁମ ମୁଖରୁ ଶୁଣିଲେ ଫିଟିବ ସନ୍ଦେହ ।
ସେମନ୍ତ ମୋହର ପିତା ଉଗ୍ରସେନ ରଜା
ଛପନ କୋଟି ଯାଦବ କରନ୍ତି ଯା ପୂଜା ।

ପବିତ୍ର ଭୋଜବଂଶର ଶିରୋମଣି ଅଟେ
ଯାଦବଂଶ ଯଦବର ଯା ପରଶ୍ଚରେ ଖଟେ ।
ଉଗ୍ରସେନ ରଜାର ମୁଁ ଅଟେ ଜ୍ୟେଷ୍ଠ ପୁତ୍ର
ମଥୁରା କାରେଣି ଭୋଜବଂଶରେ ପବିତ୍ର ।
ପିତା ମାତାଙ୍କୁ ମୋହର ନିରନ୍ତର ସେବା
ଉଗ୍ରସେନଙ୍କ ଆନ ମୁଁ ନ ଜାଣଇ ଦେବା ।
ମନଙ୍କାନେ ପିତ୍ତାଠାବେ ଯେବେ ଥିବ ମାୟା
ରଉରବ ନରକରେ ପଡ଼ିବ ମୋ କାୟା ।
ନାରଦେ ବୋଇଲେ ତୁ ନ ଜାଣୁ ପୂର୍ବବାଣୀ
ଅନ୍ୟଙ୍କୁ ତୁ କୋପ ନକର ନୃପମଣି ।
ଏ ତୋର ଜନମ କଥା ଜାଣନ୍ତି କେ ନାହିଁ
ଅତି ଗୁପତ କଥା କେ ଜାଣିପାରେ କାହିଁ ।
ତୁମ୍ଭେ ଯାହା ଗର୍ଭେୟଜାତ ଜାଣେ ତୁମ୍ଭ ମାତା
ଆମ୍ଭେ ଜାଣିପାରୁ ଭୂତ ଭବିଷ୍ୟତଙ୍କାତା ।
କଂସ ବୋଇଲା ମୁନି ହେ ଏ ଗୁପତ କଥା
ଝିଁକାରି ନ କହିଲେତ ମନେ ବଡ଼ବ୍ୟଥା ।
ନାରଦେ ବୋଇଲେ କଂସ ସାବଧାନେ ଶୁଣ
ଲକ୍ଷ ଲକ୍ଷ ବୋଲି ବେନି ଅସୁର ଯେ ଜାଣ ।
ରକ୍ଷର ନନ୍ଦନ ହେଲା ଦ୍ରୁମିଳ ଦାନବ
ଲୋହବକ୍ଷା ନାମେ ଲକ୍ଷ ରାଜନ ସମ୍ଭବ ।
ତାର ପୁତ୍ର ଲୋହୋଦର ବଜ୍ରଅଙ୍ଗ ହେଲା
ମହୀମାନ ନାମେ ପୁତ୍ର ତାର ଜନମିଲା ।
ମହୀମାନର ନନ୍ଦନ ମହାଶୂର ବୀର
ତାହାର ନନ୍ଦନ ବେଦଅନ୍ତକ ଅସୁର ।
ବେଦଅନ୍ତକର ପୁତ୍ର ହୋଇଲା ହିଧାର
ହିଧାର ପୁତ୍ର ଅଘୋଷ ନାମେ ମହାବୀର ।
ଅଘୋଷ ନନ୍ଦନ ହେଲା ଲକ୍ଷ ଅମର୍ଷ
ଅମର୍ଷର ନନ୍ଦନ ହେଲା ସୁରଘୋଷ ।
ସୁରଘୋଷର ନନ୍ଦନ ମଧୁଦୈତ୍ୟ ହେଲା
ଏହି ମଥୁରାଦେଶକୁ ସେହି ଭୁଞ୍ଜିଲା ।
ମଧୁଦୈତ୍ୟର ନନ୍ଦନ ଲବଣ ଅସୁର
ରୁଦ୍ରଶୂଳ ଥାଇ ଯେବେ ତାହାର ହସ୍ତର ।
ବିପରୀତ ହେଲେ ତାକୁ ଜିଣିବ ରଣେ ହାର
ସେହି ଏ ମଥୁରାପୁରେ ଥିଲା ବଣ୍ଡଧାର ।
ତ୍ରେତା ଯୁଗେ ଶ୍ରୀରାମର ଭାଇ ଶତ୍ରୁଘନ
ଦଣ୍ଡସେନ ଲୁଚି ରହି ଯାହେ ଏ ଭୁବନ ।
ଲବଣର କରେ ଶୂଳ ନ ଥିବା ସମୟେ
ଲବଣକୁ ବଧକରି ଶତ୍ରୁଘ୍ନ ରାୟେ ।
ଏ ମଥୁରା ପୁରେ ରଜା ହେଲେ ଶତ୍ରୁଘନ
ଅସୁରେ ଡରେ ପ୍ରଚଣ୍ଡ ଗଲେ ଏ ଭୁବନ ।
ସେଦିନୁ ମାନବେ ଆସି କଲେ ଏଥେ ବାସ
ଲକ୍ଷ ଅସୁର ନନ୍ଦନ ଦ୍ରୁମିଳ ରାକ୍ଷସ ।
ପ୍ରଚଣ୍ଡ ଦାନବ ସେହି ଅଟେ ରଣରଙ୍କା
ବ୍ରହ୍ମା ଇନ୍ଦ୍ର ରୁଦ୍ରକୁ ଯେ ନାହିଁ ତାର ଶଙ୍କା ।
ପୂର୍ବଜନ୍ମେ ଗନ୍ଧର୍ବ ସେ ଅଟଇ ସ୍ୱର୍ଗର
ଇନ୍ଦ୍ରଶାପ ପାଇବାରୁ ହୋଇଲା ଅସୁର ।
ଅନେକ ମାୟା ମନ୍ତ୍ର ସେ ଜାଣେ କାମରୂପୀ
ସ୍ୱର୍ଗମର୍ତ୍ତ୍ୟ ପାତାଳ ସେ କ୍ଷଣେ ପାରେ ବ୍ୟାପି ।
ଗୋମଣ୍ଡଳପୁର ପାରେ ଗୋମନ୍ତ ଯେ ଦେଶ
ତହିଁ ଏକାକେ ବନରେ ଦ୍ରୁମିଳ ରାକ୍ଷସ ।
ନୃପତପଣକୁ ସେହି ମହାଭୟ ପାଇ ।
ଅନେକ କାଳୁ ଅଛଇ ଜନ ତହିଁ ନାହିଁ ।
ଯେତେବେଳେ ଶାପ ଡାକୁଦେଲେ ପୁରନ୍ଦର
କହନ୍ତି ବନସ୍ୱେ କହେ ଶାପ ମୁକ୍ତ କର ।
ଇନ୍ଦ୍ର ବୋଇଲେ ତୁ ଥିବୁ ଗୋମନ୍ତ ଦେଶରେ
ପୁତ୍ର ଉପୁଜାଇଲେ ତୁ ମାନବୀ ଗର୍ଭରେ ।
ମହାପ୍ରତାପୀ ହୋଇବ ତୋହର କୁମର
ତା ହସ୍ତେ ମଲେ ଆସିବୁ ପୁଣି ସ୍ୱର୍ଗପୁର ।
ଇନ୍ଦ୍ରବୋଲେ କାମରୂପୀ ହୋଇ ଭ୍ରମୁଥାଇ
ମୃଗୟା ବନୋଦେ ବନକାଳ ହରୁଥାଇ ।
ଦ୍ରୁମିଳରାକ୍ଷସ ବନେ ମୃଗୟାକୁ ଗଲା
ଯମୁନା ନଦୀକୂଳେ ତୋ ମାତାକୁ ଦେଖିଲା ।
ସ୍ୱର୍ଗ ଅପ୍ସରା ଠାରୁ ଅଧିକ ସୁନ୍ଦରୀ
ଦେଖି ରାକ୍ଷସର ତେବେ କାମଶର ଘାରି ।
କପଟେ ସେ ଉଗ୍ରସେନ ରୂପକୁ ଧଇଲା
ସ୍ନାନ ସାରି ବାଳୀ ଝୀନ ବାସ ପିନ୍ଧିଥିଲା ।
ବେଶହୋଇ ଯିବାବେଳେ ଭେଟିଲା ରାକ୍ଷସ
ସାକ୍ଷାତ ବସଇ ଉଗ୍ରସେନର ସଦୃଶ ।
ମଦନ ଶରେ ତାହାର ଶରୀର ଅସ୍ଥିର
ଉନ୍ନତ ଅଛୁ ଅଳପ ପାହାନ୍ତା ପହର ।
ଦାସୀ ପରିବାରୀ ଦେଖି ଆଡ଼ ହୋଇଗଲେ
ରଜାର ଆତୁର ଦେଖି ରାଣୀ ଅଙ୍ଗଦେଲେ ।

ରହିଲେ ତହିଁ ସେ ହେଜ ଚୈତନ୍ୟ ପାଇ
ନ ସହି ଅଚେତା ହେଲ ଇନ୍ଦୁମୁଖୀ ନାରୀ ।
ଚେତ ପୁଣି ପାଇଁ ରାଣୀ ବୋଲଇ ବଚନ
କପଟେ ମୋ ଧର୍ମନାଶ କଲୁରେ ଦୁର୍ଜନ ।
ନୋହୁ ତୁରେ ଉଗ୍ରସେନ ରାଜା ମୋର ପତି
କେବଣ ପାମର କଲୁ ଏମନ୍ତ ଅନୀତି ।
କୋପଭରେ ରାଣୀ ତାକୁ ଦେଲା ବେଗେ ଶାପ
ଅଲକ୍ଷଣ ପାମର ରେ କଲୁ ଏଡ଼େ ପାପ ।
କପଟଭାବେ ତୁ ମୋତେ କଲୁ ଗର୍ଭବାସ
ଏପୁଅ ହାତେ ତୋ ପ୍ରାଣ ଯିବରେ ଅବଶ୍ୟ
ଶୁଣିଲୁତ କଂସସ୍ୱୟଂ ତୋର ଜନ୍ମବାଣୀ
ଦ୍ରୁମିଳ ନନ୍ଦନ ତୁ ଯେ ପାପ ଚୂଡ଼ାମଣି ।
ଏମନ୍ତ ଲକ୍ଷଣେ ତୁ ଯେ ହୋଇଅଛୁ ଜାତ
ଆଉ କେହି ନ ଜାଣନ୍ତି ଜଣେ ତୋର ମାତ
ତୁ ଯହୁଁ କଲୁ ଆମ୍ଭଙ୍କୁ ବହୁତର ସେବା
ତେଣୁ ଏ ଗୁପତ କଥା କହିଲୁଁରେ ବାବା ।
ଉଗ୍ରସେନ ସହିତରେ ନ ଜାଣନ୍ତି କେହି
ଦାସୀଏ ଜାଣନ୍ତି ରାଜା ରାଣୀ ବେନି ହୋଇ ।
ନାରଦେ କହିଲେ ଯହୁଁ ଏମନ୍ତ ବାଣୀ
କଂସ ନୃପତି ବିସ୍ମୟ ହେଲା ତାହା ଶୁଣି ।
ଚେତନା ପାଇଣ କଂସ ଭାଳେ ମନେ ମନ
ନୟନରୁ ଅଶ୍ରୁଜଳ ବହେ ଘନ ଘନ ।
ଏ ପବିତ୍ର ଭୋଜବଂଶେ ହୋଇଲି ଜନମ
ଦଇବ ବଳିଲା ଆଣି ଏସନ କରମ ।
ଲୋକରେ ଅପକୀରତି ରହିବଟା ମୁଖ
କୁଳକୁ କଳଙ୍କ ମୋତେ ବଳିଲା ଏ ଦୁଃଖ ।
ଧନ ବିଦ୍ୟା ତପ ମୋର ସବୁ ନାଶ ଗଲା
ଇହ ପରଲୋକରେ ଲଜ୍ଜା ଉପୁଜିଲା ।
ବିଧାତା କଲା ତ ମେତେ ଏସନ ଉପହାସ
ଏବେତ ଶୋଚନା କଲେ ହେବ ପୁଣ କିସ
ମନେ ବିଚାରଇ ଅଷ୍ଟମଲ୍ଲଙ୍କୁ ଆଣିବ
ତିନିପୁର ଲୋକଙ୍କୁ ମୁଁ ପାଦେ ଖଟାଇବ ।
ନାରଦେ ବୋଇଲେ ଶୁଣ ଶାଳ କଂସସେନା
ଗଲା କଥାମାନ ତୁହେ ନ କର ଶୋଚନା ।
ରଜନୀ ରାଣୀଙ୍କ ପତି ଅଟଇ ଶଶାଙ୍କ
ତେତେ ବଡ଼ ଲୋକ ଦେହେ ଲାଗିଛି କଳଙ୍କ ।
ଇନ୍ଦ୍ରଦେବତା ଗୁରୁଙ୍କ ଅହଲ୍ୟା ହରିଲା
ଗୌତମଶାପେ ସହସ୍ର ଯୋନି ହୋଇଲା ।
ଭୂତ ଭବିଷ୍ୟଜ୍ଞାତା ବ୍ୟାସ ମହାମୁନି
କୈବର୍ତ୍ତଣୀ ଗର୍ଭୁ ଜାତ ହୋଇଲେ ସେ ପୁଣି
ବିଷ୍ଣୁଶେଯର ଅଟନ୍ତି ବାସୁକି ଯେ ବଳି
କଣ୍ଠରେ କାଳ ଗରଳ ପୁଣି ସର୍ପଦେହୀ ।
କୋଟିବ୍ରହ୍ମାଣ୍ଡ ନାୟକ ଦେବ କାଶୀବାସୀ
ବ୍ରହ୍ମହତ୍ୟା ମହାପାପେ ହୋଇଲେ ସେ ଦୋଷୀ
ସପତ ସାଗର ଏହି ପୃଥ୍ୱୀର କାରଣ
ତାହାର ଜଳ ଅଭକ୍ଷ ଲାଗନ୍ତେ ଲବଣ ।
ଅଷ୍ଟାଙ୍ଗ ଯୋଗକରତା ବିଶ୍ୱାମିତ୍ର ମୁନି
ମେନକାକୁ ହେଲେ ଦୋଷୀ ଟଳେ ତେଣୁ ଜ୍ଞାନୀ
ଷଟପଦଙ୍କ ଆଦି ସେ ବ୍ରହ୍ମଲୋକ ଯାଏ
ବାଛିଲେକ ଦୋଷ ଅଛି ସବୁଙ୍କର କାୟେ ।
ଏଥିକୁ ଶୋଚନା ମନେ ନ କର ତୁ କଂସ
ଗୁଣ ପ୍ରକାଶ ହୋଇଲେ ନାଶ ଯାଇ ଦୋଷ
ପୁରୁଷ ଉତ୍ତମ ତୁମ୍ଭ ଅଟ ମହାବଳୀ
ଏକଥା ଗୋଟିକୁ କିପାଁ ମନରେ ତୁ ଭାଳ ।
ଜାଣ ତ ଶତ୍ରୁ ତୁମ୍ଭ କିପାଁ ହେଉଅଛୁ ବଣା
ଆପଣାର କଥା ବାବୁ ଆପଣାକୁ ଉଣା ।
ଆବର କଥାଏ ତୋତେ କହିବି ବିଶ୍ୱାସ
ଭଣଜାର ହସ୍ତେ ତୁମ୍ଭ ଯିବ ପ୍ରାଣେ ନାଶ ।
ଲୋହିତ ସୋଦର ଯେହୁ ଦେବକୀ ବଦେହଣୀ
ଆଠଗୋଟି ପୁଅ ଜାତ କରିବ ସେ ପୁଣି ।
ତାହାର ଆଠ ଗର୍ଭରେ ହେବ ଯେଉଁ ବାଳ
ସେହି ଭଣଜା ହସ୍ତେ ମରିବ ତୋ ଭାଳ
ଅବଧାର କଥା ତୋତେ କହିଲି ତୁ ଜାଣ
ଏକଥା ବିଚାରି ଥିବୁ କଂସ ନୃପରାଣ ।
ନାନାପ୍ରକାରେ ଏ କଥା କହି ହେ ନନ୍ଦନ
ଅଭୁତ ହୋଇବ ଯୁଗେ ଯୁଗେ ତୋର କନ୍ଦ
ଉପାୟ କର ଭଣଜା ପାରୁ ଯେବେ ମାର
ରହିଲେ ଜିଣିବାକୁ କେହି ନାହିଁ ସର ।
ଅଷ୍ଟ ପୁତ୍ରଯାଏ ତୁମ୍ଭ ଅପ୍ରାଧ ଗୁଡ଼ିକୁ
ଭଣଜା ବୋଲି ହୃଦେ ଦୟା ନ କରିବୁ ।
ରାଜ ଯଦୁବଂଶ ପ୍ରଜାମାନେ ଜଗିଥିବେ
ଜନ୍ମ ହେବାମାତ୍ରେ ଆସି ତୋତେ ସେ କହିବେ

ବାରତା' ପାଇଲେ ବେଗେ ମିବୁ ତୁମ୍ଭ ଧାଇଁ
କ୍ଷଣେ ନ ରଖି ତୁ ଶିଳେ କଷ୍ଟଡ଼କୁ ନେଇ ।
ଏ କଥାରେ ହେଲା ତୁ ନକର ସାର କଂସ
ଏତେ ଅଇଶ୍ୱର୍ଯ୍ୟ ବାବୁ କ୍ଷଣେ ଯିବ ନାଶ ।
ଏକଥା କଲେ ପୃଥିବୀ କରିବୁ ତୁ ଭୋଗ
ନୋହିଲେ ସଂଗ୍ରାମେ ତୋରନିଶ୍ଚେ ମୃତ୍ୟୁଯୋଗ
ଚନ୍ଦ୍ର ସୂର୍ଯ୍ୟ ଇନ୍ଦ୍ର ରୁଦ୍ର ନୈଋତ ବରୁଣ
ଦିଗପାଳ ସଙ୍ଗତରେ ଯେତେ ଦେବଗଣ ।
ସମସ୍ତ ଜିଣିବୁ ବାବୁ ତୁମ୍ଭ ଭୁଜବଳେ
ସଂଗ୍ରାମେ ସରି ନୋହିବେ କେହି ରଣତଳେ
ଏକଥାରେ ଅଳପକେ ହେବ ତୋର ଯଶ
କଲୁ ଭଣଜା ହସ୍ତରେ ଯିବୁ ପ୍ରାଣେ ନାଶ ।
ନାନାବିଧ ଉପାୟ କରି ଭଣଜା ତୁ ମାର
ଚଉଦ ଭୁବନଯାକ ଏକା ଭୋଗକର ।
ଯଦ୍ୟପି ଭଣଜା ଏକ ଜୀବଟି ରହିବ
ପାଞ୍ଚବର୍ଷ ପୁରିଲେ ନ ପାରିବୁ ତୁ ମାରି ।
ଏଥୁ ଉଧୁରିଲେ ତୋତେ ଆନେ ମୃତ୍ୟୁ ନାହିଁ
ଅନ୍ତର୍ଦ୍ଧାନ ଗଲେ ମୁନି କଂସକୁ ଯେ କହି ।
ଶୁଣି କଂସାସୁର ମନେ ବିଷାଦ ପାଇଲା
କେବଣ ବିଧାତା ମୋତେ ଏମନ୍ତ କରିଲା ।
ପବିତ୍ର ଭୋଜବଂଶରେ ହୋଇଲି ମୁଁ ଜାତ
ଏଥକୁ ବିଧାତା ତୁରେ କଲୁ ଏଡ଼େ କୁତ୍ୟ ।
ନାରଦ ମୁନି କହିଲେ ଯେତେ ଯେତେ କଥା
ନିରଧାର ବଚନ ସେ ନୋହିବ ଅନ୍ୟଥା ।
ସୋଦର ଭଣଜା ବଧ କରିବି କେମନ୍ତେ
ଏ ମହାପାପ ଘୋଟିଲା ସିନା ଆସି ମୋତେ
ଭଣଜାଙ୍କୁ ନ ମାଇଲେ ଆପେ ଯିବି ନାଶ
ସଙ୍କଟ ପଡ଼ିଲା ଏବେ କରିବି ମୁଁ କିସ ।
ସୁଣିହିଁ ସେ ଦୁଷ୍ଟମତି ଆପଣାର ପାଇଁ
ସୋଦର ବଧ କଲେ ଯେ କିଛି ଦୋଷ ନାହିଁ
ପ୍ରାଣଥିଲେ ଦାନ ଧ୍ୟାନ କରି ଉଦ୍ଧରିବି
ସମସ୍ତେ ଦେବ ସରଣ ତୀର୍ଥ ମୁଁ କରିବି ।
ନୋହିଲେ ସଂଗ୍ରାମ କରି ଯିବି ପଛେ ନାଶ
ତା ନୋହିଲେ ବ୍ରହ୍ମହତ୍ୟା ସାଧିବି ଅବଶ୍ୟ
ଆପଣାର ଆତ୍ମା ଗଲେ ପୁଣି କି ତା ପାଇ
ମାରିବି ଭଣଜା ମୋର ପାପେ ଭୟ ନାହିଁ ।

ପ୍ରତ୍ୟକ୍ଷେ ଦେବ ନାରଦ ମୁନି ବ୍ରହ୍ମର୍ଷି
ତାଙ୍କ ବଚନ ଅବଜ୍ଞା କେହୁ କରିପାରି ।
ମୁନିଙ୍କର ନ ଥାଇତ ଶତ୍ରୁ ମାତ୍ରମିତ୍ର
ଅଷ୍ଟମଲ୍ଲ ଅଇଲେ ତା ଜାଣିବା ପ୍ରତ୍ୟକ୍ଷ ।
ଏତେବୋଲି କଂସରଜା ସିଂହାସନ ଛାଡ଼ି
ଖଣ୍ଡେ ଦୂରେ ବସିଲା ସେ ମୃଗଛାଲ ମାଡ଼ି ।
କେଶଜାଳ ବାନ୍ଧ୍ୟ ଛାଡ଼ି ଜପାମାଳି ଘେନି
ଶତେ ଅଷ୍ଟୋତ୍ତର ଜପକଲା ଉଗ୍ରସେନି ।
ଚକ୍ଷୁ ବୁଜି ଧ୍ୟାନକଲା ହୃଦେ ମନ୍ତ୍ର ଗୁଣି
ଅଧିଷ୍ଠାନ ମନ୍ତ୍ର କଂସ ପଢ଼େ ପୁଣି ପୁଣି ।
ଅଷ୍ଟମଲ୍ଲ ରୂପ ମୁନି କହିଥିଲେ ଯାହା
ହେତୁ ମତି ଏକାନ୍ତରେ ଜପେ କଂସ ତାହା
ଶଣ୍ଢ ଶକଟା ଧେନୁକା ବକା ଗଜ ଅଶ୍ୱ
କ୍ଷୋଣବ୍ୟୋମା ଆଠେଭୂତମୁଦେବଦେଉଠିଆସ
ଅଗ୍ରାସୁର ସଙ୍ଗତେ ମନେ ଧ୍ୟାନକରି
ପୂର୍ବଗୁଣ ମନ୍ତ୍ରମାନ ହୃଦରେ ସୁମରି ।
ଥିଲେ ସେ ଅଙ୍ଗିରା ନଦୀ ପୂର୍ବଭାଗ ତଟେ
କୁଣ୍ଡଳ ବନପର୍ବତେ ମେରୁର ନିକଟେ ।
ବିଜସ୍ଥାନେ ବନରେ ଅଷ୍ଟମଲ୍ଲ ଥିଲେ
କଂସ ସୁମରନ୍ତେ ସେହି ଉଚ୍ଚାଟ ହୋଇଲେ
ଏକକୁ ଆରେକ କହି ବିସ୍ମରନ୍ତି ତହିଁ
ଏମନ ଉଚ୍ଚାଟ ଲାଗେ କହ କାହିଁପାଇଁ ।
ବିସ୍ମର କେମନ୍ତ ପ୍ରାପ୍ତେ ଏ କଥାକୁ ମଣ
ତଦନ୍ତେ କାର୍ଯ୍ୟ କରିବା ସିନା ବିସ୍ମରଣ ।
ଅନେକ କାଳୁଁ ଆମ୍ଭେ ଏ ବନେ ଥିଲୁ ରହି
ଏପରି ଉଚ୍ଚାଟ ମନେ କେବେ ନ ଲାଗଇ ।
ଭଲମନ୍ଦ ବୋଲି କଥା କେମନ୍ତେ ଜାଣିମା
ସବୁରି ବିସ୍ମୟେ ପୂର୍ବ ହେତୁକୁ ମଣିମା ।
ପୂର୍ବେ ଯେ ଆମ୍ଭର ସଖା କାଳନେମି ଥିଲା
ବିଷ୍ଣୁ ସଙ୍ଗେ ଯୁଦ୍ଧକରି ତହେଁ ପ୍ରାଣ ଦେଲା ।
କାଳନେମି ଅବତାର ହୋଇଲା କି ଆସି
ଆମ୍ଭନ୍ତ ପାସୋରିଥିଲା ନରଦେହେ ପଶି ।
ଆମ୍ଭର ଯେ ନିଜ ମନ୍ତ୍ର ଗୁପତ ବାରତା
ଆନକୁ ତା ଅଗୋଚର ଅଟଇ ସେ କଥା
ନିଶ୍ଚେ ଜାଣ କାଳନେମି ଅବତାର ହେଲା
ପୂର୍ବକଥାକୁ ସୁମରି ଆମ୍ଭଙ୍କୁ ଖୋଜିଲା ।

ଏହାର ବଳେ ଆମ୍ଭର ଆନ ଗତି ନାହିଁ
କାଳନେମିର ଶରୀରୁ ଅଛୁ ଜାତ ହୋଇ ।
ଏକକୁ ଆରେକ ଆମ୍ଭେ ନୋହୁ ଭିନ୍ନାଭିନ୍ନ
ଜନ୍ମାନ୍ତର କଥାମାନ ପଡ଼ୁଅଛି ମନ ।
ନୋହିଲେ କାହୁଁ ଏସନ ଉଚ୍ଛାଟ ଲାଗିଲା
ଆମ୍ଭର ଯେ ମନଭ୍ରାନ୍ତି ଆଜହୁଁ ଫିଟିଲା ।
ଆମ୍ଭଙ୍କୁ ନ ପାଇ ସେହି ହୋଇଅଛି ଏକା
ବେଗେ ହୋ ଚାଲ ଦେଖିବା ଯାଇଁ ଆତ୍ମସଖା
ଆଗହୁଁ ଆମ୍ଭଙ୍କୁ କାଳନେମି ଅଛି କହି
ମଥୁରାକଟକେ ଜାତ ହୋଇବ ମୁଁ ଯାଇଁ ।
ଏହି ଖଣ୍ଡିକେ ଆମ୍ଭର ହୋଇଥାରେ ଭେଟ
ବେଳକୁ ବେଳ ଆମ୍ଭଙ୍କୁ ଲାଗିଲା ଉଚ୍ଛାଟ ।
ସେ ଆମ୍ଭର ପଞ୍ଚଭୂତ ଆତ୍ମାର ଧାରଣ
ତାହାର ପ୍ରସାଦେ ଆମ୍ଭେ ଜଗତେ କାରଣ ।
ବିଳମ୍ବ ନ କର ଚାଲ ଦେଖିବା ତା ମୁଖ
ଆଜହୁଁ ସରିଲା ଜନ୍ମ ଜନ୍ମାନ୍ତରେ ଦୁଃଖ ।
ଏତେବେଳେ ସେ ଅଙ୍ଗିରା ନନ୍ଦନ ପୂର୍ବକୁଳେ
ଆଠଜଣ ଗମିଲେ ସେ ଆକାଶ ମଣ୍ଡଳେ ।
ଚଳନ୍ତି ଗଗନ ମାର୍ଗେ ପବନହୁଁ ବେଗେ ।
ଧାତକାରେ ମିଳିଲେ ସେ ମଧୁପୁରୀ ଲାଗେ ।
ଯୁବତେ ଅସୁର ସେହି ପୁଣି କାମରୂପୀ
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ କ୍ଷଣକରେ ବ୍ୟାପି ।
ଜାଣନ୍ତି କୂଟ କପଟ ଛନ୍ଦ ସବୁମାୟା
ମନକଲେ ତାହାଙ୍କର ବଢ଼ିଯାଏ କାୟା ।
କଂସ ସୁମନ୍ତ୍ରୀଙ୍କ ମାନେ ପ୍ରବେଶି ନଗରେ
ତୁରିତେ ମିଳିଲେ ଯାଇଁ କଂସର ଛାମୁରେ ।
ଅଷ୍ଟମଲ୍ଲ ଆଗମନ ଦେଖି କଂସ ବୀର
ଆସ୍ଥାନ ତେଜ ଉଠିଲା ତହୁଁ ଧାଇଁକାର ।
ଅନେକ ସାନନ୍ଦ ରାଜା ହେଲା ତୋଷ ମତି
ପ୍ରେମ ଟାଙ୍କୁରଇ ଆତ୍ମା ପୁଲକିତ ଅତି ।
କୋଳ ସମ୍ଭାଷଣ ଆଦି କରିଣ ଆଦର
ଧାଇଁକାରେ ପୁଷ୍ପମାଳ ଲମ୍ବାଇ ଗଳାର ।
ଅନେକ ପୂଜାବିଧିରେ ଗଉରବ କଲା
ଭୁଜଧରି ଆସ୍ଥାନରେ ନେଇ ବସାଇଲା ।
କଂସ ବୋଇଲା ଆଜହୁଁ ମୁଁ ହିଁ ନସ୍ତରିଲି
ପ୍ରାଣର ସୋଦରଙ୍କୁ ମୁଁ ନୟନେ ଦେଖିଲି ।
ଜନମ ସଫଳ ମୋର ହୋଇଲାକ ଆଜ
ଲଭିଲି ପରମ ଗତି ପାଇଲି ଐଶ୍ୱର୍ଯ୍ୟ ।
ତୁମ୍ଭଙ୍କ ନ ଦେଖି ମୂର୍ଚ୍ଛି ହୋଇଥିଲି କଷ୍ଟୀ ।
ଆଜଠାରୁ ଆତ୍ମା ମୋର ହୋଇଲାକ ତୁଷ୍ଟି ।
ବଳଶାର୍ଯ୍ୟ ପରାକ୍ରମ ଲୁଚିଇଲା ଦୁଃଖେ
ମଲ୍ଲବେଗ ଏବେ ଆମ୍ଭେ କରିବାକ ସୁଖେ ।
ଏହା କହି ଅଷ୍ଟମଲ୍ଲ ସଙ୍ଗତରେ ଘେନି
ନିଜପୁରେ ପ୍ରବେଶିଲା ଯାଇଁ ଉଗ୍ରସେନି ।
ନବର ଭିତରେ ରାଜ୍ୟ ନିତ୍ୟକର୍ମ ସାରି
ଅଷ୍ଟମଲ୍ଲ ସଙ୍ଗେ ଘେନି ମନୋରଞ୍ଜି ସେ କରି ।
ଷଡ଼ରସର ବ୍ୟଞ୍ଜନ ଅନ୍ନ ପାକଦ୍ରବ୍ୟ
ଅମୃତ ମନୋରଞ୍ଜି କଲେ ସରାଗରେ ସର୍ବ ।
ଅପୂର୍ବ ଦ୍ରବ୍ୟ ପାଇଣ ହେଲେ ସର୍ବେ ତୁଷ୍ଟି
ବନକୁସୁମ ଶରୀରେ ହେଲା ବଳପୁଷ୍ଟି ।
ସଙ୍ଗେ ଅନ୍ତ ଅଷ୍ଟମଲ୍ଲ ନାହିଁ ଭିନ୍ନାଭିନ୍ନ
ମନ ବଚନ କଲ୍ପଣା ସବୁ ଏକସ୍ଥାନ ।
ନିଦ୍ରାଆହାର ମୈଥୁନ କ୍ଷଣେ ଛଡ଼ା ନାହିଁ
ସନ୍ତୋଷ ଲଭିଲା କଂସ ଅଷ୍ଟମଲ୍ଲ ପାଇ ।
ସଙ୍ଗେ ଘେନି ଭ୍ରମୁଥାଇ ଦିବସ ରଜନୀ
କ୍ଷଣେ ମାତ୍ର ଛାଡ଼େ ନାହିଁ ତାକୁ ଉଗ୍ରସେନି ।
ଗୁପ୍ତାଭିମଣ ଚରଣେ ରହୁ ମୋର ସେବା
ଭକତ ଘେନି ଅଚ୍ୟୁତ ଦାସେ ମୁକ୍ତି ଦେବା ।
ହରିବଂଶ ଗୀତ ସୃଷ୍ଟି ଅସମ୍ଭବ କଥା
ବଂଶାନୁଚରିତ କଂସ ଦିଗବିଜୟ ବାର୍ତ୍ତା ।
ପବିତ୍ର ଗଙ୍ଗାଜଳ ଏ ମହାପୁଣ୍ୟମୟେ
ପ୍ରଥମଖଣ୍ଡର ଅଧ୍ୟା ସମାପତ ହୋଏ ।

(*)—

## କଂସର ଦିଗ୍‌ବିଜୟ

ଏଥୁ ଅନନ୍ତରେ ପୁଣି ପରୀକ୍ଷିତ ରାୟ
ଶୁକମୁନିଙ୍କ ଚରଣେ ହୋଇଣ ବିନୟ ।
ପୁଚ୍ଛେ କଂସରାଜ ଦିଗବିଜେ କରି ଗଲା
କାହିଁ ବିଶ୍ରାମିଲା କାହିଁ ଭ କଥା କରିଲା ।
ଏଥିର ଚରିତ ମୋତେ କହ କରି ଦୟା
ଏହା ଶୁଣିଣ ପବିତ୍ର ହେଉ ମୋର କାୟା ।
ଇଦଂ ପ୍ରତିବାକ୍ୟ ଶୁକଯତି ଯେ କହନ୍ତି
ଶୁଣ ତୁମ୍ଭେ ସାବଧାନେ ଅର୍ଜୁନର ନାତି ।

ବଡ଼ ଅସମ୍ଭବ ଅଟେ କଂସାସୁର କଥା
ଚଉଦ ଭୁବନେ ତାକୁ କେ ନୋହେ ଶକତା
ଭଗବାନେ କରିବାକୁ ମନେ ବିଚାରିଲ
ଅଷ୍ଟମଲ୍ଲଙ୍କୁ ସଙ୍ଗରେ ଘେନ ବାହାରିଲ ।
ଛପନକୋଟି ଯାଦବ ବଳ ସବୁତରେ
ବାହାରଇ ସାରମଣି ଅସ୍ତ୍ର ଧନୁ କରେ ।
କେତେଗଜ କେତେ ଅଶ୍ୱ ତାର ସଂଖ୍ୟାନାହିଁ
ମାର ମାର ଧର ଧର ଶବଦ ଶୁଭଇ ।
ଖଣ୍ଡା ବୁଲାଇ କେ ଧାଏଁ ରେରେକାର କରି
ଆକାଶେ ଉଠଇ କେତୁ ଘେନ ତରବାରି ।
ପାଦ ଭରରେ ପୃଥିବୀ ହୁଏ ଟଳ ଟଳ
ଦେବଙ୍କ ସଙ୍ଗେ ଚମକ ଉଠେ ଆଖଣ୍ଡଳ ।
ହେ ଧର୍ମଦେବତା ବୋଲି ସାଧୁଏ ଡାକନ୍ତି
ରକ୍ଷାକର ଏ ବିପଦୁଁ ଆହେ ଜଗତ୍କର୍ତ୍ତା ।
ମୂଳରେ ହାତ ପକାଇ କଂସ ମହାବୀର
ରଥ ଉପରେ ଚଢ଼ିଣ ହୁଏ ଅଗ୍ରସର ।
ପ୍ରଥମେ ବାଣାସୁରର ରାଜ୍ୟରେ ମିଳଲେ
ବାଟହାଟ ଘାଟଆଦି ସବୁ ଜାଣି ଭଲେ ।
ମନ୍ତ୍ରୀର ମୁଖୁଁ ବାରତା ପାଇ ବାଣାସୁର
ଭୟେ ଶରଣ ପଶିଲ ଦେଇ ଭେଟି ଘର ।
ଦେଖି କଂସାସୁର ବଡ଼ ଆନନ୍ଦିତ ହେଲ
ଗର୍ଜନ କରି ତହୁଁ ବାହୁଡ଼ିଣ ଗଲ ।
ଶୋଣିତ ପୁରୁ ଗ୍ରହଣ ସଇନ ଚଳଲେ
ବାରୁଣା ପର୍ବତେ ଯାଇଁ ପ୍ରବେଶ ହୋଇଲେ ।
ବାରୁଣା ପର୍ବତେ ସର୍ବେ ରହିଲେକ ଯାଇ
ବାରୁଣା ଋଷି ଯେ ତପ କରୁଥିଲେ ତହିଁ ।
ଉତ୍ତରବାହିନୀ ହୋଇ ନର୍ମଦା ବହଇ
ଗଙ୍ଗାର ସମାନ ନଦୀ ନର୍ମଦା ଅଟଇ ।
ପବିତ୍ର ସ୍ଥାନ ଦେଖିଣ ସଭେ ତହିଁ ରହି
ପ୍ରଭାତ ସମସ୍ତେ ସମଦଣ୍ଡ ପୁଣି ବାହି ।
ଦକ୍ଷିଣ ମୁରତି ହୋଇ ଗଲେ ତହୁଁ ଦଣ୍ଡ
ସାରଥୀର ଶବଦରେ କମ୍ପଇ ବ୍ରହ୍ମାଣ୍ଡ ।
ବଡ଼ ସମ ବେଗେ ଚଳିଯାଏ ସମଦଣ୍ଡ
ପାଦ ଭରରେ ମେଦିନୀ ହୋଏ ଖଣ୍ଡ ଖଣ୍ଡ ।
କଂସ ଆଗମନେ ଶୁଣି ରାଜାଗଣମାନେ
ଯେ ଯାହାରେ ତୋଷକଲେ ଭେଟିଦ୍ରବ୍ୟଧନେ
ଅଶ୍ୱ ରତ୍ନମାନ ଅନ୍ୟ ରମଣୀରତନ
ହାତୀ ରଥ ଦେଇ ଅନ୍ୟ ଉପହାରମାନ ।
କଂସ ଆଗମନେ ଶୁଣି ଯେତେ ମହାରାଜା
ସମସ୍ତେ ଡରେ କରିଲେ ଆସି ପାଦପୂଜା ।
ଅମାନିଆ ଦୁଷ୍ଟନ୍ତର ଯେବଣ ନୃପତି
ତା ରାଜ୍ୟ ଉଜାଡ଼ି ଧନଭଣ୍ଡାର ନିଅନ୍ତି ।
ନୀଳ ପରବତ ତଳେ ବୈଭବ ନଗରୀ
ଗୋସିଂଘ ନାମେ ବଇତ ତହିଁ ଦଣ୍ଡଧାରୀ ।
କଂସର ଆଗମନସୁ ବାରତା ପାଇଲ
ରୂପରେ ରଥ ଚଢ଼ିଣ ସୈନ୍ୟ ଦେଖିଗଲ ।
ଆକାଶ ମାର୍ଗେ ସାରଥି ରଥ ନେଲ ବାହି
କାତର ହେଲ ସେ କଂସାସୁର ସୈନ୍ୟ ଚାହିଁ
ଅଠରଲକ୍ଷ ରାକ୍ଷସ ରଣଯୋଦ୍ଧା ବଳେ
ଛପନକୋଟି ଯାଦବ ଏହାଙ୍କର ମୂଳେ ।
ଏମାନେ ଅଟନ୍ତି ଜଣେ ଜଣେ ରଣରଙ୍କା
ଦେବଦାନବ ମାନବ ନାହିଁ କାହୁ ଶଙ୍କା ।
ଯେତେକ ରାଜା ସମସ୍ତେ କଂସ ଅଙ୍ଗବଳ
କଂସସଙ୍ଗରେ ଗୋଡ଼ାଇ ଅଛନ୍ତି ସକଳ ।
ଅସଂଖ୍ୟଧର ଭୟାନ୍ତ ଅସୁର ସଇନ୍ୟ
ମୁଖରାବ ଶବଦରେ କମ୍ପେ ତ୍ରିଭୁବନ ।
ନବକୋଶ ମାଡ଼ି ସୈନ୍ୟ ଆସୁଛନ୍ତି ଘୋଟି
ମଣ୍ଡରେ ପାଦ ଆକାଶେ ଥାଇ ମଥାଗୋଟି ।
ପାଦଭରେ ଦଳିଦଳି ହେଉଛି ମେଦିନୀ
ନ ସହି ବସୁନ୍ଧରା ଫାଟଇ ମୂର୍ଛନ ।
ଥାଟକୁ ଦେଖି ଗୋସିଂଘ ତଟସ୍ଥ ହୋଇଲ
ସୈନ୍ୟଙ୍କ ବିଶ୍ୱମୂରତି ଦେଖି ଭୟଭୀତ ।
ସାରଥିକି ବୋଲେ ହେଉ ଅଭୋଗଭ ଥାଟ
ଏ ସୈନ୍ୟକୁ ଦେଖି ମୋତେ ନ ଦିଶଇ ବାଟ
ଧାଡ଼କାରେ ରଥଗୋଟା ଲେଉଟାଇ ନେଲ
ମନ୍ତ୍ରୀକି ଘେନିଣ ଘରେ ବସି ବିଚାରିଲ ।
ଅନେକ ପାଣିଦ୍ରବ୍ୟ ସେ ରଥରେ ପୂରାଇ
ସହସ୍ରେକ ମତ୍ତହସ୍ତୀ ଅଙ୍କୁଶ ଲଗାଇ ।
ଗୃହ ସହସ୍ରେ ଅଶ୍ୱ ସହସ୍ରେ ତରୁଣୀ
କଂସାସୁର ଛାମୁରେ ସେ ସମର୍ପିଲା ଆଣି ।
ସନ୍ଧି କରିବାକୁ କଂସ ଛାମୁରେ ମିଳିଲ
କୃତାଞ୍ଜଳି ହୋଇ ତାର ଆଗେ ଉଭାହେଲ ।

ଅନେକ ପୁରଃସର ସେ କହଇ ବଚନ
ଶ୍ରୀମୁଖୁ ଅଇଲ ବଗଦଜସ୍ତୁ ଶୁଣିଣ ।
ଏହା କହିଣ କଂସକୁ କଲା ବହୁ ପୂଜା
ଆନନ୍ଦ ହୋଇ ବାହୁଡ଼େ କଂସାସୁର ରାଜା ।
ଗୋଷ୍ଠିଙ୍ଗ ରାଜାର ସୈନ୍ୟ ଚଳଲେ ତାସଙ୍ଗେ
ମିଳଲେ ଯାଇଁ ଗାନ୍ଧାରସେନ ରାଜ୍ୟଲଗେ ।
ଗାନ୍ଧାରସେନ କଂସର ବାରତା ପାଇଲା
ଶତେକର ଦ୍ରବ୍ୟ ଘେନ କଂସକୁ ପୂଜିଲା ।
ସନ୍ଧାନ ଘେନ ଶ୍ରୀମୁରେ ଯାଇ ଭକ୍ତହୋଇ
କରଯୋଡ଼ିଣ କହଇ ହୋଇଣ ବିନମ୍ରୀ ।
ଶତେକ ମତ୍ତହସ୍ତୀ ଦେ ବେନଶତ ନାରୀ ।
ଶ୍ରୀମୁରେ ଦେଇ କହଇ ବହୁ ପୁରଃସର ।
ତହୁଁ କଂସାସୁର ସମଦଣ୍ଡ ଚଳାଇଲା
ସିଂହନାଦ ପର୍ବତରେ ପ୍ରବେଶ ହୋଇଲା ।
ସିଂହନାଦ ନାମେ ଛତ୍ରି ଅଛଇ ନୃପତି
କଂସକୁ ସେ ଆଣିଦେଲା ତିନଶତ ହସ୍ତୀ ।
ତହୁଁ କଂସ ରାଜା ଚଳି ଯାଇ ଅତିବେଗେ
ସମ୍ମୁମେ ମିଳିଲା ଯାଇଁ ସଭରାଷ୍ଟ୍ର ଆଗେ ।
ଦିଗଭୈଶ୍ୱର ବୋଲି ଯେ ଛତ୍ରିର ନୃପତି
ସେ ନେଇ କଂସକୁ ଦେଲା ଦୁଇଶତ ହସ୍ତୀ ।
ସନ୍ଧାନମାନ ଦିଗଭୈଶ୍ୱରଠାରୁ ଘେନ
ପଞ୍ଚବନ ପରବତେ ପ୍ରବେଶିଲା ପୁଣି ।
ଛତ୍ରିର ନୃପ ନାରକାସୁର ମହାରାୟେ
ଅତିବଡ଼ ରାଜା ସେହୁ ପୃଥ୍ୱୀରେ ଅଜୟେ ।
ଅପ୍ରମିତ ବଳ ତାର ନ ଯାଏ କଳଣା
ବତିଶ ଅକ୍ଷୌହିଣୀ ବଳ ଅଟେ ଅକଳଣା ।
ଗନ୍ଧର୍ବ ରାକ୍ଷସ ଆଦି ତାର ଭୟ ନାହିଁ
ବଧିଲା ଅନେକ ରାଜଗଣ ନରସାଇଁ ।
ରାଜାମାନଙ୍କ ଦୁହିତା ବଳାତ୍କାରେ ନେଲା
ଆପଣାର ନଗରେ ସେ ସବୁ ଠୁଳ କଲା ।
ଅଟନ୍ତି ରାଜାମାନଙ୍କ ଜେମା ନବଯୁବା
ଏକାବେଳେ ଆଉ ଆଣି ସବୁ ହେବ ବିଭା ।
ସଂକଳ୍ପ କରିଛି ଏକଲକେ ଜଣ ସଙ୍ଖ୍ୟା
ଲକ୍ଷେକ ରାଣୀ ଆଣିଲେ ହୋଇବ ସେ ବିଭା
ତେଣୁକରି ରାଜଜେମା ସବୁଠାରୁ ଆଣି
ଅନ୍ତଃପୁରେ ରଖିଅଛି ଯତ୍ନେ ନୃପମଣି ।
ଅତିବଳବନ୍ତ ଅଟେ ସେ ଅସୁରରାୟ
ଦେବ ଦାନବ ମାନବେ ନାହିଁ ତାର ଭୟ ।
ସେ ରାଜା ରାଜ୍ୟେ ମିଳଲେ ଯାଇଁ କଂସାସୁର
ଅନ୍ତଃପୁରେ ସେ ନାରକା ଶୁଣି ବାରତାର
ବାହାରେ ଆସି ମନ୍ତ୍ରୀକି ବୋଲେ ନୃପସାଇଁ
କାହିଁର ବାରତା ର ଭୂ ପଶୁର ହୋ ଯାଇଁ ।
ଏତେଭଇରସା ଭସାରେ କାହାର ହୋଇଲା
ମୋହର ରାଜ୍ୟେ କେ ବାରତା ର ବଜାଇଲା
ମନ୍ତ୍ରୀ ବୋଇଲା ହେଦେବ ଅପୂର୍ବ କଥାଏ
ଯେବଣ ଦେଶର ସେହୁ ଅଟେ ମହାରାୟେ ।
ସାବଧାନେ ଶୁଣ ଦେବ ବୁଝିଅଛି ଯାହା
ଉଗ୍ରସେନ ରାଜା ପୁତ୍ର କଂସ ନରନାହା ।
ମହାବଳୀ ଅଷ୍ଟମଲ୍ଲ ଅଛନ୍ତି ତା ସଙ୍ଗେ
ଜଣକେ ଜିଣିପାରନ୍ତି ପୃଥ୍ୱୀ ରଣରଙ୍ଗେ ।
ଛପନକୋଟି ଯାଦବ ସର୍ବେ ରଣରଙ୍କା
ମହାଘୋର ସଂଗ୍ରାମକୁ ନ କରନ୍ତି ଶଙ୍କା ।
କାଳଦମନ ଯେ ବାଣ ଜରା ନୃପମଣି
ବଜ୍ରନାଭ ଆଦି କେହୁ ନ ପାରିଲେ ଜିଣି ।
ସମସ୍ତ ରାଜାମାନେ ରଣେ ଗଲେ ହାରି
ସମସ୍ତ ରାଜା ଅଛନ୍ତି ତାର ସେବାକରି ।
ପ୍ରତାପୀ ମହାରାଜା ସେ ଅତି ବଳବନ୍ତା
ଏ ତିନିପୁରେ ତାହାକୁ ନାହିଁନା ଜିଣନ୍ତା ।
ଯଦ୍ୟପି ଆପେ ଆସିବେ ଦେବ ତ୍ରିପୁରାରି
କଂସସଙ୍ଗେ ସଂଗ୍ରାମରେ ନିଶ୍ଚେ ଯିବେ ହାରି
ମନ୍ତ୍ରୀର ବଚନ ଶୁଣି ନାରକା ବୋଇଲା
ଏକଥାରେ ମୋତେ ମନ୍ତ୍ରୀ ସନ୍ଦେହ ଲାଗିଲା ।
କଂସାସୁର ରାୟେ ବୋଲି କହିଲ ମୋଆଗେ
ଏତେବଳବୀର୍ଯ୍ୟ ତାର ହେଲା କେଉଁ ବାଗେ
କେବଣ ଦେବତା ତାକୁ ହୋଇଅଛି ସାହା
ମାନବେ କେ ଏତେ ଯୋଦ୍ଧା ଶୁଣିନାହିଁ ଏହା
ମୋହଭଳି ଲୋକ ସଙ୍ଗେ ଯୁଝି ଆସିଅଛି
ନିଶ୍ଚୟ ଜାଣିଲି ସେହୁ ନ ଜାଣଇ କିଛି ।
ଯମ ଭୁବନ ପ୍ରାର୍ଥନା କରୁଅଛି ଆସି ।
ଆପଣାଗଳେ ଲଗାଇଅଛି କାଳଫାଶି ।
ଦେହ ବହି ଜୀବନକୁ ଛାଡ଼େ କପାଁ ଆଶ
ନିଶ୍ଚୟ ଜାଣ ସେ ମୂଢ଼ା ଏଥେ ଯିବ ନାଶ ।

କୋଟିଇନ୍ଦ୍ର ସମ ହେଲେ ଜିଣିବ ମୁଁ ଧରି
ମାନବ ମାତ୍ର ସିନା ସେ କାହ୍ନୁ ମୋ'ଠେ ସରି
ଆଚମ୍ବିତ ହୋଇ ରାଜା କୋପେ ପ୍ରଜ୍ୱଳିଲା
ମନ୍ତ୍ରୀର ବଚନ ଶୁଣି ଆସନୁ ଉଠିଲା ।
ଏକ୍ଷଣି ତାକୁ ଜାଅନ୍ତା ଆଣିବଇଁ ଧରି
ଯାଦବବଳ ସହିତେ ଅଷ୍ଟମଲ୍ଲ ମାରି ।
ମହାରାଜା ଆଜ୍ଞାଦେଲା ସୈନ୍ୟ ବେଗେ ସାଜ
ଶୁଣି ମାହୁନ୍ତେ ସାଜିଲେ ଅସଂଖ୍ୟ ଯେ ଗଜ
ସତୁରି ସହସ୍ର ତୁରଗ ଆଣିଲେକ ବାଛୁ
ଆଠଲକ୍ଷ ମାହୁନ୍ତଙ୍କ କରେ କୁନ୍ତ ଅଛୁ ।
ନବଲକ୍ଷ ରଥ ମଣ୍ଡି ଅଛୁ ଅତି ରଙ୍ଗେ
ସଂବଣ୍ଡି ସଜକରି ଚଳାଇଲେ ବେଗେ ।
ଆପେ ଯାଏ ମହାରାଜା ବିକ୍ୟବେଶ ହୋଇ
ସମରେ ସେ ବିଜେକଲା ରଥେକ ଆରୋହି
ବେଳକୋଟି ରଥ ସାଜେ ତିନକୋଟି ଗଜ
ଅସଂଖ୍ୟ ପଦାତି ବଣେ ହୋଇଲେକ ସଜ ।
ଶବଦରେ କମ୍ପ ଅଛୁ ବ୍ରହ୍ମାଣ୍ଡ ସପତ
ଆକାଶେ ଅଦୃଶ୍ୟ ହେଲେ ଗ୍ରହ୍ମାଦେବୀ କାନ୍ତ
ହାତୀ ରଥୀ ପଦାତିକ ବୀର ରଣଯୋଦ୍ଧୀ
ସାଜିଲେ ସଂଗ୍ରାମେ ସମବଣ୍ଡିର ଯେ ବଧି ।
ପୃଷ ଭଗଦତ୍ତ ଆସେ ହସ୍ତୀଏ ଆରୋହି
ଆଗୁଆଣି ଦଣ୍ଡେ ସେତୁ ଗଜକ ଚଳାଇ ।
ଆଲମ୍ବ ଲକ୍ଷେକ ମେଘଡମ୍ବର ଯେ ଛତା
ଉଦଣ୍ଡ ଲକ୍ଷେ ଉଡ଼ାଇ ଯାଏ ବଳବନ୍ତା ।
ନାରକାସୁର ଅନେକ ସମାବେଶେ ଗଲା
ନଗର ବାହାରେ ଥାଟ ପଟୁଆର କଲା ।
ବଜାଘୋଷ ବାରତୂର ବାଜେ ଗରୁଟାଣ
ଶଙ୍ଖ ମହୁରୀ ଧୁମ୍ବୁରୀ ବାଜେ ଅପ୍ରମାଣ ।
କଂସାସୁର ଆଗେ ଯାଇ ଜଗର କହିଲା
ସମବଣ୍ଡି ଘେନ ବୀର ନାରକା ଅଇଲା ।
ବଳ ଅପ୍ରମିତ ତାର ଚତୁରଙ୍ଗ ସୈନ୍ୟ
ଯାହାର ବାହାନେ କମ୍ପେ ଏ ତିନି ଭୁବନ ।
ଭଗଦତ୍ତ ବେଳ ପୃଷ ଅଟେ ରଣରଙ୍କା
ଆଗୁଆଣି ଦଣ୍ଡେ ଅଛୁ ନାହିଁ ତାର ଶଙ୍କା ।
ଆମ୍ଭଙ୍କୁ ଦେଖିଣ ବେଗେ ଧାଇଁଲା ସେ ରାଗେ
ବେଳଥାଟ ଅଧୋମୁଖେ ଗରୁଯୁଦ୍ଧ ଲାଗେ ।

ଜଗର ମୁଖୁଁ ଏସନ ବାରତା ପାଇଲା
ଅଷ୍ଟମଲ୍ଲଙ୍କୁ ପାଶକୁ ଡକାଇ କହିଲା ।
ଶୁଣ କେଶୀ ବୀର ଶୂର କହେ ଯାହାଯାହା
ସାବଧାନ ହୋଇ ତୁମ୍ଭେ ଶୁଣିଲକ ତାହା
ନାରକାସୁର ଯେ ଆଜ କରିବ ଆରେଣି
କାହା ବଳରକୁ କସ ଆସେ ବୀରମଣି ।
ବଳବନ୍ତ ଯୋଦ୍ଧା ଅଟେ ସେ ଅସୁର ରାଯ୍ୟ ।
ଜଗପାଳମାନେ ତାକୁ କରନ୍ତି ଯେ ଭୟ ।
ଯୁଦ୍ଧରେ ପୃଥିବୀଦେବୀ ଜାତ କଲା ତାକୁ
ମଞ୍ଚରେ ସମାନ ଯୋଦ୍ଧା ଅଛୁ କି ଏହାକୁ ।
ରାଜା ଯେ କହିଲା ତାଙ୍କୁ ଏସନକ ବାଣୀ
ହରଷିତ ହେଲେ ଅଷ୍ଟମଲ୍ଲେ ତାହା ଶୁଣି ।
କେଶୀ ବୋଲଇ ଆମ୍ଭର ଅଛି କି ଏ ଭାଗ୍ୟ
କଥାଏ ମାଗିବୁ ଯେବେ ନ କରିବ ରାଗ ।
ସବୁ ରାଜାଙ୍କ ସଙ୍ଗତେ ଆପେ ଆଗ ଯୁଦ୍ଧ
ଆଜର ସଂଗ୍ରାମେ ଆମ୍ଭ ବଳବୀର୍ଯ୍ୟ ବୁଝ ।
ଏକଥାରେ ସନମତ କଲେ ବୀରମଣି
ଆମ୍ଭେ ସଂଗ୍ରାମେ ତାହାକୁ ଧରିଦେବୁଁ ଆଣି
ଆଜର ସଂଗ୍ରାମେ ତୁମ୍ଭେ ଶସ୍ତ୍ର ନ ଧରିବ
ଆମ୍ଭେ ନ ପାରିଲେ ପଛେ ତୁମ୍ଭେ ଆବୋରିବ
କଂସ ବୋଇଲା ହୋ ଆମ୍ଭେ ସନମତ କଲୁ
ନାରକାସୁର ସମର ଗୋଟା ସମର୍ପିଲୁ ।
ନାରକା ସଂଗ୍ରାମେ ତୁମ୍ଭେ ସମସ୍ତେ ହୋ ରହ
ନ ପାରିଲେ ଆସି ପଛେ ମୋ ଆଗରେ କହ
ଯାଦବଙ୍କୁ ରାଇ ଆଜ୍ଞା ଦେଲା କଂସ ଦେବ
ସୈନ୍ୟ ଘେନ ତୁମ୍ଭେ ଅଷ୍ଟମଲ୍ଲ ସଙ୍ଗେ ଥିବ
କଂସ ମୁଖରୁ ଏସନ ଦୃଢ଼ବାକ୍ୟ ଶୁଣି
ମହା ମହା ବୀରମାନେ ଉଠିଲେ ତକ୍ଷଣି ।
ରେ ରେ କାର କରି ଥାଟ ପଡ଼ିଲେକ ମାଡ଼ି
ହୁଁକାର ଧ୍ୱନି କରିଣ ଗ୍ରୁଡ଼ ସିଂହରଡ଼ି ।
ଏକକୁ ଆରେକ ଚାହିଁ ଉପ୍ରୋଧ ଗ୍ରୁଡ଼ିଲେ
ଗଦା ମୁଦ୍ଗର ଢେଲ କୁନ୍ତ ପକ୍ଷୁଡ଼ିଲେ ।
ମାରନ୍ତି ଅଧରେ ଦନ୍ତ ଚାପି କରି ମୁଷ୍ଟି ।
ଏକ ଉପରେ ଆରେକ ପକ୍ଷୁଡ଼ିଲେ ଯଷ୍ଟି ।
ରଥ ଗଜ ଅଶ୍ୱ ଚଢ଼ି ହେଲେ ଆଗୁସରି
କୋଟି କୋଟି ନାରଚ ସେ ବେଷଭରେ ମାରି

ରକତରେ କରଦମ ହେଲା ମସ୍ତସ୍ଥଳୀ
ମେଦ ମାଂସକୁ ଭୁଞ୍ଜନ୍ତ ଦେବୀମାନେ ମିଳି ।
କଳକଳା ନାଦକରି ଧାମନ୍ତ ସେ ରଙ୍ଗେ
ରକତ ବିଲେପନ ଯେ ଭଇରବୀ ଅଙ୍ଗେ ।
ଶୂଳପାଶ ଅଙ୍କୁଶ ଯେ କରେଣ ଝିବନ୍ତି
ରଣେ ରଙ୍ଗେ ବିହରନ୍ତ ପିଶାଚୁଣୀ ଚଣ୍ଡୀ ।
ଗର୍ଜନ୍ତ ପଡନ୍ତ ବୀରେ କରି ରଣରଙ୍ଗ ।
ଖଣ୍ଡା ସାବଳ ଯେ କୁନ୍ତ ଲାଗିଅଛି ଅଙ୍ଗ ।
ଅପାର ଘୋର ସଂଗ୍ରାମ କଲକ ନାରକା
ଦେଖିଣ ଯାଦବବଳ ହୋଇଲେ ଚାଟକା ।
ରଣଭଙ୍ଗ ହୋଇ ବୀର ପଳାଇଲେ ଡରେ
ପଳାନ୍ତେ ନାରଚମାନ ପଡ଼ଇ ପିଠିରେ ।
ମହାଘୋର ସଂଗ୍ରାମ ଯେ ହେଲା ଅନ୍ୟୋଅନ୍ୟ
ପର କେ ଆପଣା ବୋଲି ନ ପାରିଲେ ଚିହ୍ନି
ଏକର ହସ୍ତରୁ ନଏ ଆରେକ ଉଚ୍ଛୁଡ଼
ତରସ୍ତେ ଯାଦବ ବଳ ଗଲେ ରଣ ଗୁଡ଼ ।
ଧାଇଁଗଲେ ଅଷ୍ଟମଲ୍ଲେ ହୋଇ ଆଗବଢ଼ି
ନାରକାସୁରର ଚଉପାଖ ଘେରି ବେଢ଼ି ।
ପ୍ରାକ୍ରମେ ଯେ ମହାବଳୀ ଧାଇଁଯାଇ ଆଗେ
ମେରୁର ଆଗରେ ଯେସନ୍ତେ ଐରାବତ ନାଗେ
ସମର କରନ୍ତ ଅଷ୍ଟମଲ୍ଲ ପରିଘାଇ
ମାର ମାର ଶବଦରେ କୂର୍ମ ଉଚ୍ଛୁଳଇ ।
ଦେଖି ଅତି ଗୁରୁ ରଣ ଭଗଦତ୍ତ ଯୋଦ୍ଧୀ
ଯୋଗାନ୍ତ ସିଦ୍ଧାନ୍ତ ବିଦ୍ୟା ଜାଣେ ମହୌଷଧି ।
ସଇନ୍ୟ ଦଶ ଅର୍ବୁଦ ସଙ୍ଗେ ତାର ନେଇ
ଲୁହ ଲୁହ ବୋଲି ବୀର ଆଗେ ଉଗାଳଇ ।
ବିନ୍ଧ୍ୟଗିରିକି ହାବୋଡ଼େ ଯେସନ୍ତେ ଗିରିମାଳ
ତେମନ୍ତ ଢଣଇ ଭଗଦତ୍ତ ମହୀପାଳ ।
ଅଷ୍ଟମଲ୍ଲଙ୍କର ରୂପ ଦେଖି ଭଗଦତ୍ତ
ବିସ୍ମୟରେ ଏସନ ଜନ୍ତୁ କାହୁଁ ହେଲେ ଜାତ ।
ଅଭିଷ୍ଟ ସଂଯୁତ ଏହି ସଙ୍କଟ ସ୍ୱରୂପ
ଦେଖିଲି ଶୁଣିଲି ନାହିଁ ଏସନକ ରୂପ ।
ଏତେବୋଲି ଆଗରୁ ସେ ଉଗାଳିଲା ଯାଇଁ
ଧାଡକାରେ ଅଷ୍ଟମଲ୍ଲେ ମିଳିଲେକ ତହିଁ ।
ଷଣ୍ଢ ଶକଟା ଅସୁର ଥିଲେ ଆଗ ହୋଇ
ହସ୍ତିଦଣ୍ଡ ଦେଖିଣ ସେ ବେଗେ ଗଲେ ଧାଇଁ
ପ୍ରଚଣ୍ଡ ନାକ କଷିଣ ଧରି ଥୋଇ ହସ୍ତ
ବୁଲାଇଣ କରୁଣ୍ଡନ୍ତି ମହାବଳବନ୍ତ ।
ଦନ୍ତ ଉପାଡ଼ି ତାହାର ଉପାଡ଼ନ୍ତି ଶୁଣ୍ଢ
ବୁକୁ ବିଦାରି ତାହାକୁ କରି ଖଣ୍ଡ ଖଣ୍ଡ ।
ମାରନ୍ତି ତାହାର କୁମ୍ଭସ୍ଥଳେ ବଜ୍ରମୁଷ୍ଟି
ଗଳଗାଜ ପଡ଼ନ୍ତି ତା ଶିର ଯାଏ ଫାଟି ।
ଲାଞ୍ଜ ଧରିଣ ତାହାକୁ ଦଅନ୍ତି ପକାଇ
ବିକୋଡି ମାରି ତାହାକୁ ଦ୍ୟନ୍ତି ଘଉଡ଼ାଇ ।
ଧାଅନ୍ତି ସେ ରେରେକାର କରି ଗଳଗାଜ
ହସ୍ତୀଙ୍କ ଉପରେ ନେଇ କରୁଣ୍ଡନ୍ତି ବାଜା ।
ଦରଣ୍ଡି ବୀରେ ମାରନ୍ତି ଧରି ମହାରୋଷେ
ଭାଙ୍ଗି ଭଗଦତ୍ତ ସୈନ୍ୟ ନ ରହିଲେ ପାଶେ
ଦଶ ଅର୍ବୁଦରୁ ଆଠ ଅର୍ବୁଦ ପଡ଼ିଲା
ଦୁଇ ଅର୍ବୁଦ ଘେନିଣ ଭଗଦତ୍ତ ଗଲା ।
ଯେଉଁଣଠାରେ ନାରକା ବୀର ଅଛି ରହି
ରଣଭଗ୍ନ ହୋଇ ଭଗଦତ୍ତ ମିଳେ ଯାଇଁ
ବଳଭଗ୍ନ ଦେଖିଣ ସେ ନାରକା ଅସୁର
କମ୍ପଇ କଦଳୀପତ୍ର ପ୍ରାୟେ ତା ଶରୀର ।
ସାରଥି ବୋଇଲେ ମୋର ରଥ ବାହୁ କନା
ଭାଙ୍ଗିଲେ ଆଠ ପଡ଼ିଲେ ଅନେକ ମୋ ସେନା
ଅକାରଣେ ଶତ୍ରୁ କାହୁଁ ମିଳିଲେକ ଆସି
ଏତେବଡ଼ ରାଜ୍ୟ ମୋର ପକାଇଲା ଧ୍ୱଂସି ।
ସୈନ୍ୟଙ୍କ ବିକଳ ଆଉ ଦେଖିବି ବା କେତେ
ଏ ମୋହର ଦେହଯାକ କମ୍ପେ ଯେସନ୍ତେ ବାତେ
ଆରେ ଆରେ ସାରଥି ମୋ ରଥ ବେଗେ ବାହୁ
ମୋରଥାନ୍ତେ ସୈନ୍ୟମୋର ହୋଇଲେ ନିଃସହ
ଏବେକ୍ଷଣି ସୈନ୍ୟଯାକ ମାରିବ ବିକୋଡି
ପ୍ରାଣ ଘେନ ତୁମ୍ଭେ ଆଜ ଯିବ କରେ ବନ୍ଦୀ ।
ଏତେ ବୋଲି ଶ୍ରୀଭୁଜରେ ଧଇଲା କୋଦଣ୍ଡ
ମନ୍ତ୍ରବଳେ ବନ୍ଧିଲା ସେ ଷାଠିଲକ୍ଷେ କାଣ୍ଡ ।
ପୁଣି ଅଶ୍ୱତ୍ଥାମ ବାଣ ଛନ୍ଦିଲାକ ବେଗେ
ଚଳିଲେ ନାରାଚମାନ ଗଗନରେ ବେଗେ ।
ପୁଣି ପଞ୍ଚାଶ ସହସ୍ର ବାଣ ମାରେ ଟାଣି
ବାହାନାଦ କରିଣ ସେ ଛନ୍ଦେ ପୁଣ ପୁଣି ।
ନିଃଶ୍ୱାସକେ ଛନ୍ଦଇ ସେ ବାଣ କୋଟି କୋଟି
ବାଣମାନେ ଗଲେ ଶୂନ୍ୟମଣ୍ଡଳକୁ ଘୋଟି ।

ଶୂନ୍ୟମଣ୍ଡଳ ପର୍ଯ୍ୟନ୍ତ ଘୋଟେ ଦେବଶର
ଅନ୍ଧକାରେ ନ ଦିଶିଲେ ଦେବ ଦାନବର ।
ଦେବଶର ଦେଖି କେଶି ପାଞ୍ଚଲକ୍ଷ ମୁଣ୍ଡ
ଛଡ଼ି ବାଣମାନେ ହୋଇଗଲେ ଖଣ୍ଡ ଖଣ୍ଡ ।
ମୁନ ମୋଡ଼ି ହୋଇ ଯାଇ ପଡ଼ିଲେ ଉପୁଡ଼ି
ଲଜ୍ଜାପାଇ ବାଣମାନ ଗଲେକ ବାହୁଡ଼ି ।
ବାବନ ବାଣ ବିନ୍ଧିଲା ନାରକା ଯେ ଟାଣି
ମୁଖ ଦନ୍ତାଗ୍ର ଧଇଲା ଗର୍ବେ କେଶୀ ପୁଣି ।
ଦେଖନ୍ତୁ ହେଲ ନାରକାର କୋପ ଯେ ବଢ଼ଇ
ଅଗ୍ନିଶର ବଜ୍ରଶର ମାରଇ ନଠାଇ
ପବନା ବାରୁଣା ମେଘା ଆଦି ଯେତେ ଶର
ମାରଇ ନାରକା କରି ଗର୍ଜନ ଅପାର ।
ନାଗପାଶ କାଳପାଶ କୁନ୍ତ ଗଦା ଯଷ୍ଟି
ଶୂଳ ମୁଦୁଗର ନେଇ ତା ଉପରେ ପିଟି ।
କାହିଁରେ ନୋହିଲା ସେହି କେଶୀଦେହ ଭେଦ
ଦେଖି ନାରକା ଅସୁର ପାଇଲା ବିଷାଦ
ପୁଣି ସେ ଲକ୍ଷେକ ବାଣ ବିନ୍ଧିଲା ତା ଶିରେ
କୋଡ଼ିଏ ବାଣ ବିନ୍ଧିଲା ପୁଣି କୋପଭରେ ।
କେଶୀ ବୋଇଲା ନାରକାସୁର ମୁଖ ଚୂର୍ଣ୍ଣି
ଦେବଶରମାନ ଥିଲେ ପେଶ କନା ତୁମ୍ଭ ।
ସମସ୍ତେ ପରା ବୋଲନ୍ତି ତୋତେ ମହାଯୋଦ୍ଧୀ
କେତେ ସନ୍ଧି ଜାଣୁ ଆଜ ଜାଣିମା ତୋ ବୁଦ୍ଧି
କେସନ ତୁ ଈଶ୍ୱରଙ୍କୁ କରିଅଛୁ ସେବା
କେସନେ ବର ଦେଇଛୁ ତୋତେ ମହାଦେବା ।
କଞ୍ଚିତ ସଂଗ୍ରାମକୁ ନୋହିଲା ତା ବଳ
ଆମ୍ଭର ଶସ୍ତ୍ର ବାରେକ ପାରିଲେ ସମ୍ଭାଳ ।
ତୋହର ଦେହକୁ ଏବେ ପାଞ୍ଚିଲେ ତୁ ରଖ
ନୋହିଲେ ତୁ ଏହିକ୍ଷଣି ସଂଯମନୀ ଦେଖ ।
ଏମନ୍ତ କହି ଶକତି ମାଇଲାକ ବେଗେ
ନାରକାସୁର କାଟିଲା ତାହା ଅତିବେଗେ ।
ମନ୍ତ୍ରବଳେ ବ୍ରହ୍ମବାଣ ମାଇଲା ନାରକା
କେଶୀ ଗିଳିଦେଲା ଦେଖି ହୋଇଲା ଚାଟକା ।
ବଇଷ୍ଣବୀ ଚକ୍ରଗୋଟା ନାରକା ବୁଲାଇ
କେଶୀ ବେକ ସଳଖରେ ମାଇଲା ନଠାଇ ।
ତିଳେ ନ ଭେଦିଲା ଚକ୍ର ବାହୁଡ଼ି ହେଲା ବଙ୍କା
କର କର ହୋଇ କେଶୀ ହସଇ ନିଃଶଙ୍କା ।

ଧାଇଁ ଯାଇଁ କେଶୀ ଉଠେ ରଥର ଉପରେ
ନାରକା ତାକୁ ଶାଉଁଟି ଧଇଲାକ କରେ ।
କେଶୀ ତାହାକୁ ଧଇଲା ବଳବନ୍ତ ଘଣେ
ଦୁହେଁ ମହାଯୋଦ୍ଧା କେହି ନଯୁଝନ୍ତି ଊଣେ ।
ଗଡ଼ାଗଡ଼ି ଧସାଧସି ମସାମସି ହୋଇ
ଖାଲଢିପ ସମତୁଲ କଲେ ରଣଭୂଇ ।
ଅହୋବଳ ଥାଟ ଦେଖି ଆଡ଼ହୋଇ ଗଲେ
ଦେଖଣାହାରି ହୋଇଣ ସମର ଦେଖିଲେ ।
ନାରକାସୁର କେଶୀକି ଧଇଲାକ ବଳେ
ବୁଲାଇ କୁଲାଳ ଚକ୍ର ପ୍ରାୟ ଅନ୍ତରାଳେ ।
କଚାଡ଼ିଲେ ନେଇ ତାକୁ ଶିଳାର ଉପରେ
ଅଚେତା ହୋଇଣ କେଶୀ ପଡ଼ିଲା ଭୂମିରେ ।
ଅଧା ବକା ଷଣ୍ଢ ଆଦି ବୀରମାନେ ଆସି
ପ୍ରହାରିଲେ କୁନ୍ତ ଯଷ୍ଟି ରଣରୋଳେ ପଶି ।
ମହାବଳବନ୍ତ ସେହି ନାରକା ଅସୁର
ରଥରେ ବସି ଧଇଲା କରେ ଧନୁଶର ।
କୋଟି କୋଟି ନାରାଚ ସେ ମାଇଲା ନଠାଇ
ଅଧାଆଦି ବୀରଙ୍କର ଅଙ୍ଗ ଦେଲା ଚୁଇ ।
ଏମନ୍ତ ବେଳେ ଚେତନା ପାଇଲା ସେ କେଶୀ
ଦେଖିଲା ନାରକା ରଥ ପରେ ଅଛି ବସି
ଧାଇଁ ଯାଇ ତାର ରଥ ଧଇଲା ସେ ବେଗେ
ଦେଖି ନାରକା ରଥରୁ ଡେଇଁ ପଡ଼େ ବେଗେ ।
ଅଧା ବକା ଯାଇଁ ତାର ଆଗେ ହେଲେ ଉଭା
ଗଦା କରେ ସେ ନାରକା ପାଉଅଛି ଶୋଭା ।
ଅଧା ବକା ସଙ୍ଗତରେ କରଇ ସମର
ପଛଆଡ଼ୁ ଧାଇଁ ଯାଇଁ କେଶୀ ମହାବୀର ।
ନାରକାସୁର କେଶକୁ ଧଇଲାକ ବଳେ
ଟେକି ଆଣନ୍ତେ ତା ପାଦ ନ ପଡ଼ିଲା ତଳେ
ସୈନ୍ୟ ତାହାର ଗୋଡ଼ାଇ ଅଛନ୍ତି ତା ପଛେ
କେଶୀ ନାରକାକୁ ଘେନିଯାଏ ଅନ୍ତରୀକ୍ଷେ
ବାମକରେ କେଶ ତାର ଧରିଅଛି ଟାଣି
କଂସକୁ ବୋଲେ ଶ୍ରୀଦେବ ବେଗେପକା ହାଣି
କଂସ ବୋଇଲା ରେ କେଶୀ ଏ ନାରକାସୁର
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଏକଗୋଟା ବୀର ।
କର୍ମର ଅବଳେ ଆଜ ପଡ଼ିଅଛି ଧରା
ଅସୁର ବୀର ମଧ୍ୟରେ ଏହି ଧନୁର୍ଦ୍ଧରା ।

ଏହା କହୁ ଗଜରବ କଲା କଂସରାଜ
ମନ୍ତ୍ରୀକ ଗୃହ୍ଣି ବୋଇଲା ନାରକା ଅସୁର ।
ବାଛୁ ବାଛୁ ପାଣିଦ୍ରବ୍ୟ ଆଣ ବେଗେ ଯାଇଁ
କଂସକୁ ତୋଷିବା ଭେଟି ଦ୍ରବ୍ୟମାନ ଦେଇ ।
ଶୁଣିଣ ମନ୍ତ୍ରୀ ସେଠାରୁ ବେଗେ ଚଳଗଲା
ଶକଟରେ ପାଣି ଦ୍ରବ୍ୟମାନ ପୂରାଇଲା ।
କଂସର ସମ୍ମୁଖରେ ତାହା ଥୋଇଲାକ ନେଇ
କଂସରାଜା ବୋଲଇ ଯେ ନାରକାକୁ ଚାହିଁ ।
ଆମ୍ଭର ଥାଟରେ ତୁମ୍ଭେ ହେଲ ସେନାପତି
ଚଳ ଆମ୍ଭ ସଙ୍ଗତରେ ଯିବା ହୋଇ ସାଥି ।
ନାରକା ବୋଇଲା ରାଜେନ୍ଦ୍ର ଗଲେ ତୁମ୍ଭ ସଙ୍ଗେ
ମୋ ନାମ ଶୁଣି ଯେତେକ ରାଜା ମସ୍ତାଙ୍କଗେ ।
ଦେଖା ଦରଶନ ଧନ ଦେବେ ତୋତେ ଆଣି
ପଛରେ ତୋତେ ନିନ୍ଦିବେ ସର୍ବ ନୃପମଣି ।
ବୋଲିବେ ଏ ନୃପତିର ବଳବୀର୍ଯ୍ୟ ନାହିଁ
ନାରକା ଅସୁର ସଙ୍ଗେ ମଇତ୍ର ଏ ହୋଇ ।
ତାହାକୁ ସଙ୍ଗତେ ଘେନ ସାଧନ୍ତି ଜଗତ
ଏଣେ ତୋ ସଙ୍ଗେ ଯିବାର ନୁହଇ ଉଚିତ ।
ଈଶ୍ୱର ତୋହ ମନକୁ ଗଲା କି ଏ କଥା
ତୁ ମହାବୀର ଏକାକେ ତ୍ରିଜଗତ ମାଥା ।
ତୋତେ ଯେ ଅସାଧ୍ୟ ହେବ ପଠାଇବୁ ଚର
ଥାଟ ଘେନ ସାହା ହୋଇ କରିବ ସମର ।
କଂସର ମନକୁ ଏହି କଥା ଯୋଗାଇଲା
ବାୟୁବ୍ୟ କୋଣକୁ ଚହୁଁ ଦଣ୍ଡ ଚଳାଇଲା ।
ନାରକା ତାର ପୁରକୁ ଗଲା ଦଣ୍ଡ ଘେନ
କଂସ ଅସୁର ପ୍ରତାପେ କମ୍ପଇ ମେଦିନୀ ।
ସତରିଲକ୍ଷ ପର୍ବତ ଦକ୍ଷିଣରେ ସ୍ଥିତ ।
ଗଣ୍ଡକୀ ନଦୀର ତୀରେ ସମଦଣ୍ଡ ଭିଡ଼ ।
କୁଞ୍ଜରଗଣ ଦେଶେ ଯାଇଁ ମିଳିଲେ ତା ସୈନ୍ୟ
ହସ୍ତିଙ୍କର ଘଣ୍ଟାରବ ପଦାତି ଗର୍ଜନ ।
ରଥଙ୍କର ଚକ ଘୋଷି ଅଶ୍ୱ ହେଷାରବ
ଓଟଙ୍କର ଘୋର ଧ୍ୱନି ଶୁଭେ ଅସମ୍ଭବ ।
ପାଦଘାତେ ଉଠି ଚୂନାହୋଏ ଶାଳଶିଳ
ମୁଖରବ ଶଙ୍ଖ ଯେହ୍ନେ ସିନ୍ଧୁର ଚହଳ ।
ଏକ ଚଳନ୍ତେ ଆରେକ ରଥ ଯାଏ ଜଣି
ବହୁଧ ଛନ୍ଦେ ବାଜଇ ବାଦ୍ୟ ଘୋର ଧ୍ୱନି ।

ଗଣ୍ଡକୀ ନଦୀର କୂଳ ତିନିପୂଣ ଗଲେ
ଝଣ୍ଡଗିରି ତଳେ ସମଦଣ୍ଡ ଯେ ରହିଲେ ।
ବଣାଶଏ ଯୋଜନ ସେ ପର୍ବତର ଉଚ
ବତିଶ କୋଶ ଓସାର ଅଟଇ ସୁସଞ୍ଚ ।
ପର୍ବତ ତଳ ଉପର ନୀଳବର୍ଣ୍ଣ ଜ୍ୟୋତି
ମୁକ୍ତେଶ୍ୱର ଲିଙ୍ଗ ଯେ ତହିଁ ଏକମୂର୍ତ୍ତି ।
କୋଳାହଳ ନାମେ ବନ ପର୍ବତର ତଳେ
ଶାଳଗ୍ରାମ ଉପୁଜଇ ତହୁଁ କାଳେ କାଳେ ।
ତିନିକୋଶ ଉଚ୍ଚଗ ସେ ପର୍ବତର ତଳ
ବଜ୍ରକୀଟମାନେ ତହିଁ କରୁଥାନ୍ତି କେଳି ।
ସେ ସ୍ଥାନେ ପ୍ରବେଶ ହେଲା କଂସ ନରପତି
ବହୁତ ପୋକ ଚରନ୍ତି ତହିଁ ବିବାଗତି ।
ଦିଶନ୍ତି ଯେ ଗୋଟି ଗୋଟି କୀଟ ନାନାବର୍ଣ୍ଣ
କଭ ତରଣ ଆଙ୍ଗୁଳ ଦିଶେ ଭିନ୍ନ ଭିନ୍ନ ।
କି ଅବା କହିବା ସେହି ପୋକଙ୍କ ମହିମା
ଆପେ ନିର୍ମାଣ ହୁଅନ୍ତି ବିଷ୍ଣୁ ମହାତ୍ମା ।
ପ୍ରତ୍ୟକ୍ଷେ ବିଷ୍ଣୁ ମୂରତି ଅଟେ କୀଟ ଗୋଟି
ଡରଡର ବ୍ରହ୍ମାରୂପେ କୀଟ କୋଟି କୋଟି ।
ଚାର ମୁଣ୍ଡ ଆଠ ଆଖି ଅଠଚାଳିଶ ଗୋଡ
ଛୟାଣୋଇ ବର୍ଣ୍ଣ ସବ ଅଙ୍ଗୁଳ ଯେ ଫାଡ
ଦନ୍ତ ଦ୍ୱୀରପରି ଟାଣ ଓଠ ହେମକାନ୍ତି
ପିଠି ଭୃଙ୍ଗବର୍ଣ୍ଣ ପେଟ ଶୁକ୍ଳବର୍ଣ୍ଣ ଜ୍ୟୋତି ।
ନାସିକା ଯେ ନୀଳବର୍ଣ୍ଣ ଚକ୍ଷୁ ସୂର୍ଯ୍ୟପରି
ଉର୍ଣ୍ଣନାଭି ସୂତ୍ରକୁ ଯେ ନାସାଅଗ୍ର ସରି ।
ନଖ ଗୋଷ୍ଠୀର ବର୍ଣ୍ଣ ଯେ ତାମ୍ରବର୍ଣ୍ଣ ମୁଣ୍ଡ
କପାଳ କାଚବର୍ଣ୍ଣ ଯେ ଅଗ୍ନି ବର୍ଣ୍ଣ ତୁଣ୍ଡ ।
ଯେତେକ ପ୍ରମାଣେ ପୋକ ବଜ୍ର ଅଣ୍ଡାଙ୍ଗା
ଶେଷ ଦେହର ସେ ରୂପ ବିଷ୍ଣୁ କୂର୍ମାଙ୍ଗା
ଟସ୍ୱ କାଣ୍ଡ ଖଣ୍ଡମାନ ନ କାଟଇ ଦେଖା
ପଞ୍ଚଭୂତ ପଞ୍ଚଆତ୍ମା ତାର ମାୟାମୟୀ ।
ଅଗ୍ନିର ଭିତରେ ପଡ଼ି ନ ପୋଡ଼େ ତା ଅଙ୍ଗ
କେତେବେଳେ ସେହି ଜୀବ ନୁହଇ ବିଭଙ୍ଗ ।
କାଳାନ୍ତକ ଯୁଗାନ୍ତକ ଯେ ପ୍ରଳୟାନ୍ତକ
ତେସନ ମୂରତି ଦିଶେ ସେହି ବଜ୍ରପୋକ ।
ସହସ୍ର ବରଷେ ଏକ ଶିଳା ସେ କାଟଇ
କାଟି ଶିଳାଗୋଟି ଚକ୍ରମାନ ଭେଦ ଦେଇ ।

ଶଙ୍ଖ ଚକ୍ର ଅଙ୍କିତ ଯେ ନାରାୟଣ ମୂର୍ତ୍ତି
ମତ୍ସ୍ୟ କୂର୍ମ ବରାହ ନୃସିଂହ ହଳପତି ।
ବାମନ ପରଶୁରାମ ରାମ ଅବତାର
ହଳୀରାମ ବଳୀରାମ ଯଶୋଦାକୁମର ।
ବଉଦ୍ଧ କଳକୀ ଦଶ ଅବତାର ମୂଳେ
ବଜ୍ରକୀଟେ ଯେ କାଟନ୍ତି ଏହା କରି ଠୁଳେ ।
ଦାମୋଦର ମୂର୍ତ୍ତି ଆଦି ଶିଳା କୋଟି କୋଟି
ବିଷ୍ଣୁ ଅବତାରମାନ କରି ପରିପାଟୀ ।
ବର୍ତ୍ତୁଳ କରି ପର୍ବତୁ ପଥରକୁ କାଟି
ଏସନକ ପ୍ରକାରେ ସେ ବଜ୍ରକୀଟ ଗୋଟି ।
ବିଶୁଦ୍ଧ ପବିତ୍ର ଶାଳଗ୍ରାମ ପୁଣ୍ୟମୟ
ପାଦୋଦକ ପାନେ ଘୋର ବ୍ରହ୍ମହତ୍ୟା କ୍ଷୟ ।
ଖଣ୍ଡଗିରି ପର୍ବତ ଯେ ନାଗେଶ୍ୱର ଯୋକ
ଗଣ୍ଡକୀ ନଦୀର ପାଣି ଏ ତିନହେଁ ଏକ ।
ଖଣ୍ଡଗିରି ପର୍ବତରୁ ସତ୍ୟେ ବରଷରେ
ଶାଳଗ୍ରାମ ଉପୁଜଇ ଗଣ୍ଡକୀର ଜଳେ ।
ଖଣ୍ଡଗିରି ପାହାଡ଼ରୁ ସୋହନ୍ତରେ ଆସି
ଶାଳଗ୍ରାମ ଦେବେଣେ ଲାଗି ଜାଲେ ପଡ଼େ ଖସି ।
ଜାଲିଯାଆଣ ତାହାଙ୍କୁ ଧରନ୍ତି ସେ ଯତ୍ନଁ
ଶାଳଗ୍ରାମଦେବଣେ ବୋଲି ଡକାଲଇ ସେ ତହୁଁ
ପ୍ରତ୍ୟକ୍ଷେ ବିଷ୍ଣୁ ଅଛନ୍ତି ସେହୁ ପୁଣ୍ୟ ଦେହା
ସୁରସିଦ୍ଧ ମୁନି ପୂଜା କରନ୍ତି ଯାହା ।
ସେ ନଦୀ କୂଳେ ରହିଲେ କଂସାସୁର ସୈନ୍ୟ
ଅନେକ ରାଜା ଭେଟିଲେ ଘେନି ସୈନ୍ୟଧନ
କେବଣ ରାଜା ହସ୍ତୀ କେ ଘେନିଣ ଯୁବଣ
କେହୁ ସିଂହାସନ ଦଣ୍ଡ ଛତ୍ର କେ ଦିଅନ୍ତି
କେବଣ ରାଜା ଦିଅନ୍ତି ରତନ ଭଣ୍ଡାର
କେବଣ ରାଜା କରନ୍ତି ଆସି ନମସ୍କାର ।
ଦର୍ପିଷ୍ଠ ଦାନବ ସେହୁ ଉଗ୍ରସେନ ବଳା
ଅନବାର ଯୋଦ୍ଧା ଯୁଦ୍ଧକାଳେ ଅଜର୍ଗଳା ।
ବ୍ରହ୍ମା ଇନ୍ଦ୍ର ରୁଦ୍ରଙ୍କୁ ଯେ ନାହିଁ ତାର ଖାତି
ଆହେଣି ଚଳନ୍ତେ ଭୟେ କମ୍ପେ ବସୁମତୀ ।
କଂସ ଭାରଭର ସହି ନ ପାରଇ ପୃଥ୍ୱୀ
ଟଳମଳ ହୋଇ କହେ ସେ ରୁଧିର ବାନ୍ତି ।
ଦିନୁ ଦିନ କ୍ଷୀଣ ଚିନ୍ତାଭରେ ମହାଦେବୀ
ନିଶିଦିବସ ସେବନ କରଇ ପୃଥ୍ୱୀ ।

ରୁଧିର ତା ନବଦ୍ୱାରୁ ବହେ ଖଳ ଖଳ
ସହି ନ ପାରିଣ ଦେବୀ ହୁଅନ୍ତି ବିକଳ ।
ଉଚ୍ଛୋଇ ସେ ଯେଣିକି ଦିଏ କୋପଦୃଷ୍ଟି
ଜାଳାନଳ ଅଗ୍ନି ସେହୁ ବେଗେ ଜଳ ଉଠି ।
ନିରନ୍ତେ ରୋଦନ କରେ ବସୁମତୀ ବସି
ଦିବସରେ କ୍ଷୁଧା ନାହିଁ ନିଦ୍ରା ନାହିଁ ନିଶି ।
ଅନେକ ଭାର ସେ କଂସ ପୃଥ୍ୱୀକି ହୋଇଛି
ଇନ୍ଦ୍ର ଆଦି ଦେବତାଙ୍କୁ ଭୟ ନାହିଁ କିଛି ।
ଦୁରନ୍ତକ କାଳନେମି କଂସ ଅବତାର
ଅତିବଳେ ବଳବନ୍ତା ମହାବଳୀ ବୀର ।
ସେହୁ କାଳନେମି ଦୈତ୍ୟ କଂସରୂପ ହେଲା
ଭୋଜବଂଶେ ଉଗ୍ରସେନ ପୁତ୍ର ବୋଲାଇଲା ।
ଏଣୁ ଏହାକୁ ତ୍ରିଦଶେ କରନ୍ତି ଯେ ଭୟ
ମହା ପ୍ରତାପୀ ଅସୁର କଂସାସୁର ରାୟ ।
ଜୟ ଦୁର୍ଗା ମାଗୋ ତ୍ରିଭୁବନ ନିବାସିନୀ
ଅନାଦି ମଙ୍ଗଳା ମାଗୋ ଦରିଦ୍ର ଧ୍ୱଂସିନୀ ।
ଚରାଚର ଜୀବ ମାତୋ ତୁମ୍ଭ କରୁ ଜାତ
ଦେବଲୋକ ନର ନାଗ ଲୋକରେ ପୂଜିତ ।
ଅଯୋନିସମ୍ଭୂତ ମାଗୋ ହୋଇଲ ତୋ ଦେହୀ
ଆଗେ ଜାତହେଲୁ ଜାତ କେହି କରି ନାହିଁ ।
ଚତୁର୍ବେଦଜାତ ମାଗୋ ହୋଇଛୁ ତୋକାୟେ
ବ୍ରହ୍ମା ବିଷ୍ଣୁ ମହେଶଙ୍କୁ ଅଗୋଚର ହୋଏ ।
ଅଭୟା ଅପର୍ଣ୍ଣା ମାଗୋ ତିନିକାଳ ଜ୍ଞାତା
ଶକ୍ତି ଗତି ଦାତ୍ରିଣୀ ମା ପ୍ରଳୟ ରଖନ୍ତା ।
ଖଡ୍ଗ କୃପାଣ ତ୍ରିଶୂଳ ଡମ୍ବରୁ ଶକତି
ପାଶ ଅଙ୍କୁଶ ପିନାକ ଧନୁ ସୂର୍ଯ୍ୟ ଜ୍ୟୋତି ।
କୋଟିଏ ଆୟୁଧେ ଶୋଭାପାଏ ଭୁଜଦଣ୍ଡ
ମଧ୍ୟାହ୍ନ ଆଦିତ୍ୟ ଜ୍ୱାଳାବଳୀ ଯେ ପ୍ରଚଣ୍ଡ ।
ଶୁମ୍ଭ ନିଶୁମ୍ଭ ମହିଷାସୁର ମହାବୀର
ରକ୍ତବୀଜ ଚଣ୍ଡ ମୁଣ୍ଡ ଆଦି ଯେ ଅସୁର ।
ଘୋରଘଣ୍ଟ ଯମଘଣ୍ଟ ଭ୍ରମର କେମାନେ
ରଣରଙ୍ଗ କରି ବଧ କଲୁ କୁତୂହଳେ ।
ଅନନ୍ତକୋଟି ବ୍ରହ୍ମାଣ୍ଡେ ଅଛୁ ତୁ ଗୋ ବ୍ୟାପି
ସଚରାଚର ବ୍ରହ୍ମାଣ୍ଡ ତୁମ୍ଭ ବିନା ଥାପି ।
ଯାଙ୍କର କେଶ ବିକଟ ଘୋର ଦନ୍ତପନ୍ତି
କାଳାନଳ ପ୍ରାୟ ଦିଶେ ନୟନର ଜ୍ୟୋତି ।

ରୁଧିର ବିଲେପନ ତୋ ଭସ୍ମଙ୍କର ଅଙ୍ଗ
ସିନ୍ଦୂରବର୍ଣ୍ଣ ବସନ ତୋର ତନୁ ରଙ୍ଗ ।
ରଙ୍ଗ ହିମ ବାସ ତୋର ହସ୍ତେ ରଙ୍ଗବାଣ
କପାଳକୁ ତୋର ରଙ୍ଗ ଟିକା ଶୋଭା ପାଇ ।
ରଙ୍ଗ ଅଳକା ତୋହର ମାଗୋ ରଙ୍ଗପାଟେ
ରଙ୍ଗ କାଚ ରଙ୍ଗପାଟ ଓଢ଼ଣି ଶୋହେ ।
ରଙ୍ଗଧନୁ ରଙ୍ଗ ଶର ଖର୍ପର ଯେ କାନ୍ତ
ନୀଳମେଘରେ ବିଜୁଳି ଯେସନେ ଝଟକନ୍ତ ।
ହୀରା ମଣି ମାଣିକ୍ୟ ତୋ କଣ୍ଠେ ରତ୍ନହାର
ଲୋହିତ ପିଙ୍ଗଳ ବର୍ଣ୍ଣ ସୁବର୍ଣ୍ଣ ଆକାର ।
ଅଷ୍ଟରତନ ଜଡ଼ିତ କର୍ଣ୍ଣେ ଶୋହେ କାପ
ଦେଖିବାମାତ୍ରେ ହରଇ ସୁର ନର ଦର୍ପ ।
ନିଶାରେ ଉଦୟ ଯେସନେ ଚନ୍ଦ୍ରମା ମଣ୍ଡଳ
ଶ୍ରୀମୁଖ ମଣ୍ଡଳ ସୁଧାକରଠୁଁ ଉଜ୍ଜ୍ୱଳ ।
ନାସା ତିଳପୁଷ୍ପେ ଶୋହେ ଅପୂର୍ବ ବସଣି
ହେମବନ୍ତନନ୍ଦିନୀ ତୁ ଆଦ୍ୟ ଠାକୁରାଣୀ ।
ପୃଥ୍ୱୀର ଭାରହର ମୋ ବୃତ୍ତି ସେ ଧରନ୍ତା
ବିନୟ ପ୍ରାର୍ଥନା ମୋର ଘେନ ଆଦ୍ୟମାତା ।
ହରି ଭକ୍ତି ରସଲୀଳା ସାର ଏହି ଗ୍ରନ୍ଥ
ଅଚ୍ୟୁତ ଦାସ ଶରଣ ସଦା ସାଧୁସନ୍ଥ ।

—(୦)—

## କଂସର ସ୍ୱର୍ଗ ପୁର ଆକ୍ରମଣ

ଶୁଣ ଆହେ ମୁନିବର କହେ ନରନାହା
ବିସ୍ତାରି କହିବା ମୋତେ ମାଗୁଅଛି ଏହା ।
କଂସ ଭଗବତେ ମୋତେ କହିଲଟି ଯାହା
ତୁମ୍ଭ ମୁଖରୁ ଶୁଣିଣ ନିସ୍ତରିଲି ତାହା ।
ପଞ୍ଚମ ପୁରାଣ ହରିବଂଶ ଯା ଉପାଧି
ଏଥିଉତ୍ତାରୁ ସେ କଂସ କଲା କେଉଁ ବିଧି ।
ପୁରାଣେ ଅଛି ପଞ୍ଚମ ଏହି ହରିବଂଶ
ସଂକ୍ଷେପି କହିବା ମୋତେ ବ୍ୟାସଦେବଶିଷ୍ୟ ।
ଏତେ ବୋଲିଣ ସେ ରାଜା କରପଦ୍ମ ଯୋଡ଼ି
ପ୍ରଣାମ କରି ଶୋଇଲା ମୁନିପାଦେ ପଡ଼ି ।
ରାଜାର ନିର୍ମଳ ଭକ୍ତିଭାବ ମୁନି ଦେଖି
ପ୍ରସନ୍ନେ କହନ୍ତି ଧ୍ୟାନ ଧାରଣାକୁ ରଖି ।
କହନ୍ତି ଯେ ଶୁକଯତି ଶୁଣ ତୁହେ ରାୟ
ହରିବଂଶ ଶୁଣି ତୁମ୍ଭ ପାପ କର କ୍ଷୟ ।
ଉହ୍ଲ ତଣ୍ଡ୍ରିକା ନଧାକୂଳେ କଂସରାଜା
ଅନେକ ନୃପତି ତାଙ୍କୁ କଲେ ପାଦପୂଜା ।
ରାଜ୍ୟଭାର ସିଂହାସନ ଦଣ୍ଡଛତ୍ର ମୂଳେ
ସମ୍ମାନ ଦେଇଣ ପୂଜା କରନ୍ତି ସକଳେ ।
ନଉପୂର୍ଣ୍ଣ ମାଡ଼ି ରହି ଅଛନ୍ତି ଯେ ଥାଟ
ମୁଖରାକ ଧ୍ୱନି ଭାଙ୍ଗେ ସିନ୍ଦୂର ମୁକୁଟ ।
ବେଙ୍କୁ ବେଳ ଥାଟ ତାର ହୋଇଲେ ଗହଳ
କଳଣା ନ ଯାଇ ତାର ଅକଳିତ ବଳ ।
ଖଣ୍ଡଗିରି ତଳେ ସୈନ୍ୟ ଅଛନ୍ତି ଯେ ରହି
ନାରଦ ଋଷି ସେଠାରେ ପ୍ରବେଶିଲେ ଯାଇଁ ।
ସୁବର୍ଣ୍ଣ ବର୍ଣ୍ଣ ପରାସ୍ତ ବିରାଜଇ ଜ୍ୟୋତି
ବିଭୂତି ଲେପନ ତନୁ ନିନ୍ଦେ ଚନ୍ଦ୍ରକାନ୍ତି ।
ହସ୍ତେ ତାହାଙ୍କର ବୀଣା କମଣ୍ଡଳୁ ଶୋହେ
କପିଳବର୍ଣ୍ଣ ବିଭୂତି ଅଙ୍ଗେ ଶୋଭାପାଏ ।
କାଖରେ କଳଧୂକୁଢ଼ ହସ୍ତେ ତମ୍ବପାଣି
ବ୍ରହ୍ମାଙ୍କ ସମାନ ମୁନି ବିରାଜଇ ମୂର୍ତ୍ତି ।
ବୃହତ ସାମଗାୟନ କରନ୍ତି ସେ ମୁନି
ସୈନ୍ୟମଧ୍ୟେ ପ୍ରବେଶିଲେ କରି ହରିଧ୍ୱନି ।
ନାରଦ ଆସନ୍ତେ କଂସ ଦୂରଠୁଁ ଦେଖିଲା
ଉଠି ଆସି ସାଷ୍ଟାଙ୍ଗେ ସେ ନମସ୍କାର କଲା ।
ସୁବର୍ଣ୍ଣର ପାତ୍ରେ ଗଙ୍ଗ ଜଳକୁ ପୂରାଇ
ମୁନିଙ୍କ ଚରଣ ବେଗେ ପଖାଳିଲା ନେଇ ।
ପରମ ସାନନ୍ଦ ହୋଇ କଂସାସୁର ବୀର
ପାଦୋଦକ ନିହୁଡ଼ାଇ ଆପଣାର ଶିର ।
ଗର୍ଭକୁ କ୍ଷେପିଲା କିଛି ଆପଣାର କରେ
ଆସନ ଦେଇ ବୋଲଇ ବ୍ରହ୍ମାଙ୍କ କୁମରେ ।
ଦୁର୍ବା ତଣ୍ଡୁଳ ଆସନ ପାଦାସନ ଦେଇ
କରପଦ୍ମ ଯୋଡ଼ି ପୁଣି ମୁନିଙ୍କୁ ବୋଲଇ ।
କାହିଁଥିଲ ମୁନି ତୁମ୍ଭେ ଅଇଲ ଯେ ଏଥେ
ସିଦ୍ଧି କାରତା ମୁନି ସେ କହିବାକ ମୋତେ ।
କୃତାର୍ଥ ହେଲି ତୁମ୍ଭଙ୍କୁ ଦେଖି ମୁହିଁ ଆଜ
ଲଭିଲି ପରମଗତି ସଫଳ ମୋ କାର୍ଯ୍ୟ ।
ନାରଦ ବୋଇଲେ ଥିଲୁଁ ଅମର ଭୁବନେ
ଭଗବତେ ବାର୍ତ୍ତା ପାଇ ଅଇଲା ଏ ସ୍ଥାନେ ।
କଂସବୋଲେ ଭଗବତେ କରି ମୁଁ ଅଇଲି
ପୃଥ୍ୱୀ ରାଜାମାନଙ୍କୁ ସମରେ ଜିଣିଲି ।

ଏଥିକୁ ଜଗତେ ମୋତେ ବୋଲୁଛନ୍ତି କଂସ
ଏଥିର ସମସ୍ୟା ମୋତେ କହ ବ୍ରହ୍ମା ଶିଷ୍ୟ
ମେରୁ ପ୍ରଦକ୍ଷିଣେ ମୋର ଅଛି ମନଇଚ୍ଛା
ସବୁ ରାଜାଙ୍କୁ ଜିଣିବ ବଅଛ ମୋତେ ବାଞ୍ଛା ।
ନାରଦେ ବୋଇଲେ ତୁହି ଶୁଣ କଂସ ରାୟ
ସଂଗ୍ରାମେ ସକଳରାଜା କଲୁ ଏବେ ଜୟ ।
ଏକ ରାଜା ମଞ୍ଚପୁରେ ଅଛି ବଡ଼ ଦୁଷ୍ଟ
ବଳକ୍ଷଣ ଅଟେ ତାର ନାମ ଜମାଗୋଷ୍ଠ
ତାହାକୁ ସ୍ତୁଡ଼ଣ ଏକା ସମସ୍ତ ଜିଣିବୁ
ଏସନକ ବାରତା ମୁଁ କହିଲି ରେ ବାବୁ ।
କଂସର ଆଗେ ନାରଦ ବୋଇଲେ ଏ ବାଣୀ
ବଡ଼ ବିଷାଦ ପାଇଲା ବୀର କଂସ ଶୁଣି
ନୋହୁ ବଗଢ଼ଜେ ପଛେ ଉଠିବ ଏକ୍ଷଣି ।
କହ ମହାମୁନି ତାକୁ କେମନ୍ତେ ମୁଁ ଜିଣି
ନାରଦ ବୋଇଲେ ଯେବେ କୃପ ବ୍ରହ୍ମା ଆଣି
ତାହା ବଳେ ଜମାଗୋଷ୍ଠ ରାଜା ପାରୁ ଜିଣି ।
ସେ କୃପବ୍ରହ୍ମାଙ୍କୁ ଆଣ ଗଉରବ କରି
ଅମର ପୁରେ ମାନ୍ତ୍ରିକ ନାହିଁ ତାକୁ ସରି ।
ଗଉରବ କରନ୍ତି ଯେ ତାକୁ ବଜ୍ରପାଣି
କଂସ ନୃପତି ହରଷ ହେଲା ତାହା ଶୁଣି ।
ଗୁପତେ ପୁଣି ନାରଦ କଂସକୁ କହିଲେ
ଆତୁର କଥା ଏ ଆମ୍ଭେ ଜାଣିଅଛୁ ଭଲେ ।
ତୁହି ଆମ୍ଭଙ୍କୁ କରୁଛୁ ଯେଣୁ ବହୁ ସେବା
ଏତେ ଉପାୟ ବାରତା କେହ୍ନେ ନ କହିବା ।
କଂସ ବୋଇଲା ମୁନି ହେ ଥାଇ ତୁମ୍ଭ ଦୟା
ତେଣୁ ମୁଁ ଜାଣେ ତୁମ୍ଭର ନାହିଁ ମୋତେ ମାୟା ।
ଏମନ୍ତ ଶୁଣିଣ ମୁନି ହସ ହସ ହେଲେ
ଦରହସିତ ବଦନେ କଂସକୁ କହିଲେ ।
ତୁହେ। କଂସରାଜେ ହାନ ଲାଭ ତ ନ ଜାଣୁ
ଏହି ନର୍ଦ୍ଧମା ନୃପତି ମାନଙ୍କୁ ତୁ ଜିଣୁ ।
ଏହାଙ୍କୁ ଜିଣିଲେ ଯଶ ପଉରୁଷ ନାହିଁ
ଏପରି ଦୃଢ଼ ବାକ୍ୟ ଯେ ନାରଦ କହଇ ।
ତୁହି କଂସରାଜା ସବୁ ସ୍ଥାନେ ମହାରଥୀ
ବେଦମୁଖରେ ଉତ୍ତମ ଥିବ ତୋର କଥା ।
ମଞ୍ଚ ରାଜାମାନେ ସାଧିହେଲେ ତୋତେ ସିନା
ଏହିବେଶେ ସ୍ୱର୍ଗକୁ ତୁ ଉଞ୍ଚ ବାହୁ ଜନା ।

ଆଣିବୁ ଅନେକ ଧନ ଜିଣି ସୁରପତି
ପୁଣି ସନ୍ତୋଷ ହୋଇଲା କଂସ ନରପତି ।
ଯେଉଁଦିନ ବଗଢ଼ଜେ କଲୁ ଭୋଜସାଇଁ
ମାତଳି ବାରତା କହେ ଇନ୍ଦ୍ର ଆଗେ ଯାଇଁ
ଅମର ପୁରେ ତୋ କଥା ପଡ଼ିଥାଇ ବାବୁ
ବୃହସ୍ପତିଙ୍କି ପୁଚ୍ଛିଲେ ଦେବଗଣ ସବୁ ।
ବୃହସ୍ପତି କହିଲେକ ପାଞ୍ଜି ଗୋଟା ଫେଡ଼ି ।
ବୋଇଲେ ସ୍ୱର୍ଗକୁ କଂସ ରାଜା ଦେବ ଧାଡ଼ି
ଅନେକ ଉପଦ୍ରବ ସେ ନକଟେ କରିବ
ସଂଗ୍ରାମ କରି ନୋଡ଼ିଲେ ଅବଶ୍ୟ ମରିବ ।
ସୁଧର୍ମା ସଭାରେ ଆମ୍ଭେ ଏତେକ ଶୁଣିଲୁ
ସେ କଥା ଗୋଟି ଆସି ଯେ ତୋଆଗେକହିଲୁ
ତୁହି ନ ଯାଉ ସ୍ୱର୍ଗରେ ଲଗେ ବଡ଼ ଭୟେ
ଅଷ୍ଟମଲ୍ଲ ଘେନଯାଅ ତୁହି ତହିଁପାଏ
ଏତେ କହିଣ ନାରଦ ଅନ୍ତର୍ଦ୍ଧାନେ ଗଲେ
ତହିଁ କଂସାସୁର ଭୟେ ମନେ ମନେ ଭାଳେ ।
ନାରଦ ବଚନ କଂସ ହେଜି କଲା ମନ
ଦୂତକୁ ଡ଼ାକି କହିଲା ଶୁଣ ମୋ ବଚନ ।
ଏହିକ୍ଷଣି ଯିବୁ ତୁହି ଅମର ପୁରକୁ
ଗୌରବ କରି ଆଣିବୁ ସେ କୃପ ବ୍ରହ୍ମାକୁ ।
ମନ୍ତ୍ର ବିଧାନରେ ସେହି ପୂଜାବିଧି କଲେ
ସମର କରିବ ସିନା ଜମାଗୋଷ୍ଠ ତୁଲେ ।
କଂସ ଆଜ୍ଞାରେ ଅମର ପୁରେ ଗଲା ଦୂତ
କୃପ ବ୍ରହ୍ମାର ମନ୍ଦରେ ମିଳିଲା ତୁରିତ ।
କଂସ ନୃପତିର ଆଜ୍ଞା କହିଲା ବୁଝାଇ ।
କଂସ ଦୂତଠାରୁ ସେହି ଗଉରବ ପାଇ ।
ମନେ ବିଚାରଇ ମୁହିଁ ନ ଯିବଇଁ ଯେବେ
ଅସୁର ଆସିଣ ବଳେ ଧରି ଘେନଯିବେ ।
ଆପଣାର ମାନ ଆପେ କମା ହରାଇବ
ଏହାର ସଙ୍ଗତେ ଯାଇ କଂସକୁ ଭେଟିବ ।
ଏମନ୍ତ ଭାଳି ସେ ଦୂତ ସଙ୍ଗତେ ଅଇଲା
କଂସ ନୃପତି ଦେଖିଣ ଗଉରବ କଲା ।
ଆସନ ପାଦାସନ ସେ ଦେଇ କଲା ପୂଜା
ଗ୍ରାମପାଟଣା ଦେଇଣ କଲା ତାକୁ ରଜା ।
ପରୀକ୍ଷ ଆଗେ କହିଲେ ଶୁକ ମହା ଯତି
ଏଥୁ ଅନନ୍ତରେ କଥା ଶୁଣ ଭବ୍ୟସତି ।

ଅଷ୍ଟମଲ୍ଲଙ୍କୁ ସରଣ କଂସ ନରସାଇଁ
ଗତାଗତ କଥାଯାକ ବୁଝାଇ କହଇ ।
ଜମାଗୋଷ୍ଟ ଉପରକୁ ସୈନ୍ୟ ଏବେ ସାଜ
ତାର ରାଜ୍ୟ ଲଙ୍ଘି ଆମ୍ଭେ ଉଜାଡ଼ିବା ଆଜ ।
ଯାହାର ନାମ ଲେଖି ମୁଁ ପକାଇବ ପୋଛୁ
ହରିହର ବ୍ରହ୍ମା ତାକୁ ନ ପାରନ୍ତି ରଖି ।
ମନ୍ତ୍ରବଳେ କୃପବ୍ରହ୍ମା ରଖିପାରେ ଏକା
ଏଣୁ ଆମ୍ଭର ମନରେ ନାହିଁ କଛୁ ଦକା ।
ଏପରି ଆଜ୍ଞା ସତ୍ତୁଁ ସେ ଦେଲକ ନରେଶ
ଶୁଣିଣ କେଶୀ ଆଉ ଯେ ହୋଇଲା ହରଷ ।
ଏ ସମୟେ ଯମାଗୋଷ୍ଟ ଭଗଗ୍ ଯେ ଥିଲା
କଂସର ବଚନ ଯାକ ସବୁ ସେ ଜାଣିଲା ।
ବେଗେ ଯାଇ ଜଣାଇଲା ନୃପତି ଗ୍ରାମୁରେ
ସାବଧାନ ହୋଇ ତୁମ୍ଭେ ଶୁଣ ନୃପବରେ ।
କଂସମାର ଲଭିଥିଲ ଗଣ୍ଡ କାଉଁ ଖିରେ
ନାରଦ ମୁନ ମିଳିଲେ ଆସିଣ ସେଠାରେ ।
ନାରଦଙ୍କୁ ଦେଖି କଂସ ପୂଜାବିଧି କଲା
ସବୁ ରାଜାମାନଙ୍କର ବୃତ୍ତାନ୍ତ କହିଲା ।
ନାରଦ ବୋଇଲେ ଶୁଣ କଂସାସୁର ରାୟେ
ଏକ ରାଜା ଅଛି ମହା ଦୁର୍ବାର ଅଜୟେ ।
ସମସ୍ତ ରାଜା ହୋଇଲେ ତୋର ବଶବର୍ତ୍ତୀ
ଜିଣି ନ ପାରିବୁ ଜମାଗୋଷ୍ଟ ନରପତି ।
ଏସନ ବାରତା ସତ୍ତୁଁ ନାରଦ କହିଲେ
ମୁନଙ୍କର ମୁଖ ଚାହିଁ କଂସ ନୃପ ବୋଲେ ।
ଜମାଗୋଷ୍ଟ ରାଜା ଯେବେ ଜିଣି ନ ପାରିଲ
କେମନ୍ତେ ମୁଁ ଜଗତରେ ବାନା ଉଡ଼ାଇଲ ।
ଏମନ୍ତେ ଶୁଣି ନାରଦ ବୋଇଲେ ବଚନ
ତାହାକୁ ଯେ ଜିଣିବାକୁ ଅଛି ଏକଜଣ ।
କୃପବ୍ରହ୍ମାକୁ ସ୍ୱର୍ଗରୁ ବେଗେ ଘେନ ଆସ
ତାର ମନ୍ତ୍ରେ ଜମାଗୋଷ୍ଟ ଦର୍ପ ହେବ ଧ୍ୱଂସ ।
ତାହା ଶୁଣି କଂସାସୁର ଆନନ୍ଦ ହୋଇଲା ।
ଅମର ଭୁବନୁ କୃପବ୍ରହ୍ମା ଅଣାଇଲା ।
ଆମ୍ଭ ପଛେ ପଛେ ଦଣ୍ଡ ଆସୁଅଛି ଲାଗି
ହୋଇବ ଉଦ୍ୟମକର ହୋଇ ବେଗି ବେଗି ।
ଉଗର ମୁଖରୁ ବାର୍ତ୍ତା ଏସନକ ପାଇ
ମନ୍ତ୍ରୀ ମୁଖକୁ ଚାହିଁଲା ରାଜା ନୃପସାଇଁ ।
ବୁଝିଲକ ମନ୍ତ୍ରୀ ଆହେ। ଚରଗଣ ବାର୍ତ୍ତା
ଫେଡ଼ିକରି କହ ମୋତେ ଏ ବିଷମ କଥା ।
ରାଜା ବଚନେ ବୋଇଲା ମନ୍ତ୍ରୀଚୂଡ଼ାମଣି
ସାବଧାନେ ଶୁଣ ତୁହେ। ନୃପ ଶିରୋମଣି ।
ସନ୍ଧାନ ଦେଇ ତୋଷିବା ଆମ୍ଭେ କଂସରାୟେ
ନୋହିଲେ ଆମ୍ଭେ ଏଥିରେ ଯାଇବା ଅଜୟେ ।
ଅବଶ୍ୟ ଆସିବ ଏଥେ ସମ୍ପଦଣ୍ଡ ସାଜ
କୃପବ୍ରହ୍ମା ହସ୍ତେ ତୋତେ ମାରିବନା ଗଞ୍ଜି ।
ନାରଦ ମହାମୁନିତ କହିଦେଲେ ତାକୁ
ନୋହିଲେ କେବା ସମରେ ଜଣନ୍ତା ତୁମ୍ଭଙ୍କୁ
ମନ୍ତ୍ରୀର ବଚନେ ରାଜା ସନମତ କଲା
ତୋର ବଚ୍ଛରକୁ ମନ୍ତ୍ରୀ ଯେମନ୍ତ ଆସିଲା ।
ରାଜାର ବଚନେ ସେହି ମନ୍ତ୍ରୀଚୂଡ଼ାମଣି
ରାଜ୍ୟ ବାହାର ହୋଇଲା ଆଠ ସଙ୍ଗେ ଘେନି ।
ଶ୍ୱେତ ରଥେ ମୁକ୍ତଇଲା ଦେଖା ଦରଶମା
ଶତେକ ନଗ୍ନ ଯୁବଷ୍ଟ ବେଶ କରୁ ଘେନ ।
ସହସ୍ର ଅଶ୍ୱ ବେହୁଖାର ବେଗ ମହାତେଜ
ଏତେକ ଘେନ ସଙ୍ଗତେ ଚଳେ ମନ୍ତ୍ରୀରାଜ ।
ବର୍ଣ୍ଣନ କଲକ ଯାଇ କଂସର ଗ୍ରାମୁର
ଭେଟି ଇଲା ଦରଶମା ପ୍ରିୟବହୁ ସାର ।
ଦେଖିଣ କଂସ ରାଜନ ସୁପ୍ରସନ୍ନ ହୋଇ
ବୋଇଲା ସେ କେଶୀ ଦୈତ୍ୟ ମୁଖକୁ ଅନାଇ
ଦର୍ଶନ କଲା ଏ କେଉଁ ଦେଶ ରାଜା ଆସି
କରଯୋଡ ଯୋଡ଼ି ଆଗେ ଜଣାଇଲା କେଶୀ ।
ଏହିଟେକ ଏ ଜମାଗୋଷ୍ଟ ନୃପତିର ମନ୍ତ୍ରୀ
ଶୁଣି କଂସାସୁର ହେଲା ପରମ ଯେ ଶାନ୍ତ ।
ଆହେ। ମନ୍ତ୍ରୀବର ତୋତେ ଦେଖିଲି ସୁବୁଦ୍ଧି
ଯେଣୁ ଦରଶନ କଲୁ ମୋତେ ଦେଇ ନିଧି ।
ଏତେ ବୋଲି କଂସ ଅଷ୍ଟମଲ୍ଲଙ୍କୁ ଚାହିଁଲା
ଯାହତ କଥାମାନ ଯେ ମଣାଇ କହିଲା
ଏବେ ହେ। ଯିବା ସ୍ୱର୍ଗକୁ ରଥ ଗଜ ସାଜ
ଆଣିବା ଅନେକ ଧନ ଜିଣି ସୁରରାଜ ।
ଆବର ବୋଇଲା ସମ୍ପଦଣ୍ଡ ଏଥି ଥାଉ
ଆମ୍ଭ ସଙ୍ଗେ ହାତୀ ରଥୀ ଗୋଟିଏ ନ ଯାଉ ।
ଏତେକ ବୋଲି ଅସ୍ଥାନେ ଯାଇଁ ବିଜେ କଲା
ସକଳ ସୈନ୍ୟ ଗ୍ରାମୁକୁ ଡକାଇ ଆଣିଲା ।

ଏକକୁ ଅନେକ ଚକ୍ଷି ହେଲେ ସର୍ବେ ସଜ
ମଣ୍ଡିଲେ ରଥ ଆଦର ସେନା ଅଶ୍ୱ ଗଜ ।
ରଣରାଜ ପୃଷ୍ଠେ ଦେଲେ ଅଶ୍ୱ ସଜ କରି
ନାନାଦ ଶସ୍ତ୍ର ଧରି ସେ ହେଲେ ଆଗୁସରି ।
କୋଦଣ୍ଡ କାଣ୍ଡ ଧରିଛୁ କେହି ଖଡ୍‌ଗଫଳା
ଧାମନ୍ତ କେ ଶୀଘ୍ରମୂର୍ତ୍ତି ହୋଇ ଅନର୍ଗଳା ।
ଅଗାଧ ସଇନ ତାର କେ କରେ କଳନା
ମଧ୍ୟାହ୍ନ ଆଦିତ୍ୟ ପ୍ରାପ୍ତ ରଥ ଜଗଜ୍ଜିଣା ।
ସ୍ୱର୍ଣ୍ଣ କଳଶ ପତାକା ନେତ ମାଳମାଳ
ଧ୍ୱଜ ଚୂଳ ତେଜେ ଯେସନ ଦିଶେ ଜଣାକାଳ ।
ପୋହଳା ମାଣିକ୍ୟ ହୀର ନୀଳା ମୋତିଗୁନ୍ଥା
ମରକତ ବଇଡ଼ୂର୍ଯ୍ୟ ମାସ୍ୱଗ ମୁକୁତା ।
ବର୍ତ୍ତୁଳ ମୋତିମାଳ ଯେ ରଙ୍ଗପାଟେ ଗୁନ୍ଥି
ଗଜଦନ୍ତର ପିକୁଳା ମାନ ପନ୍ତ ପନ୍ତ ।
ଝଲକେ ହୀରା ପଗଡ଼ି ପାଟଆର କମ
କମନ୍ଦାଣ୍ଡର ଉପରେ ଖଞ୍ଜା ଶୁଦ୍ଧ ହେମ ।
ନବରତନର ସ୍ତମ୍ଭ ପାବଚ୍ଛ ବଇଠି
ହୀରା ପାଟଆ ଝଟକ ଦିଶେ ପରିପାଟୀ ।
ଏମନ୍ତେ ଅପୂର୍ବ ରଥ ସାଜିଲେ ସାରଥି
ରଥ ଆରୋହି ବସିଲେ ତା ଉପରେ ରଥୀ ।
ଅଶ୍ୱମାନଙ୍କୁ ଯୋଚିଲେ କରେ ଧରି ବାଗ
ରଥକୁ ଧରି ସାରଥି ବାହେ ବେଗ ବେଗ ।
ଦୁନ୍ଦୁଭି ଆଦି ଯେ ବାଦ୍ୟ ରଥି ଆଗେ ବାଜେ
ଆଳମ୍ବ ମେଘାଡ଼ମ୍ବର ପାଟେ ଲକ୍ଷେ ସାଜେ ।
କେବଣ ରଥରେ ବ୍ୟାଘ୍ର କେଉଁରଥେ ସିଂହ
କେଉଁରଥେ ବାହୁଟିଆ କେଉଁରଥେ ଖଗ ।
ଶୁଭମଙ୍ଗଳ ବେଳାରେ ଦିବ୍ୟବେଶ ହେଲେ
କଂସ ସମଦଣ୍ଡ ଶୁଭ ଅନୁକୂଳ କଲେ ।
ଆକାଶ ମାର୍ଗରେ ରଥ ଊର୍ଦ୍ଧ୍ୱେ ଚଳଇ
ଷାଛତୂର ଘାତେ ସ୍ୱର୍ଗପୁର ଉଛୁଳଇ ।
ପବନଘାତେ ଚଳିଲା ମେରୁର ମଣ୍ଡଳ
ଅନବାର ପେଣ୍ଢା ତାର ଚତୁରଙ୍ଗ ଦଳ ।
ନାରଦ ବଚନ କଂସ ହୃଦମଧ୍ୟେ ଘେନି
ଆନନ୍ଦେ ଥାଟକୁ ଘେନି ଚଳେ ଉଗ୍ରସେନି ।
ମାର ମାର ଧର ଧର ଶବଦ ଉଗ୍ରସେ
ନବଖଣ୍ଡ ମେଦିନୀ ଯେ କମ୍ପେ ମହାତ୍ରାସେ ।
ମେରୁର ବାୟୁବ୍ୟ କୋଣ ଦକ୍ଷିଣ ମୁଖରେ
ମହାକ୍ରୋଧେ କଂସ ଯାଏ ସୈନ୍ୟ ସଙ୍ଗତରେ
ସମାରୋହେ କଂସାସୁର ବାହିଲା ସ୍ୱର୍ଗକୁ
ରଥମାନ ଉଠି ଉଠି ଯାଏ ଉପରକୁ ।
ଅର୍ଦ୍ଧ ଆକାଶେ ଗନ୍ଧର୍ବମାନେ ରହିଥିଲେ
କଂସ ସ୍ୱର୍ଗେ ଆସିବାର ବାରତା ପାଇଲେ ।
କଂସ ଯିବାର ବାଟରେ ଗନ୍ଧର୍ବେ ଭେଟିଲେ
ଲେଉଟି ଯାଇଁ ବାସବ ଛାମୁରେ କହିଲେ ।
ସୁଧର୍ମା ସଭାରେ ଯାଇଁ ମାତଳି କହିଲା
କଂସ ଦିଗବିଜେ କରି ସ୍ୱର୍ଗକୁ ବାହିଲା ।
ମଣିପୁର ନୃପତିଙ୍କି ବଳେ ବନ୍ଦକଲା
ଗଣ୍ଡକୀ ନଦୀର କୂଳେ ଥାଟକୁ ରଖିଲା ।
ବଳବନ୍ତ ଅସୁରଙ୍କୁ ଘେନି ଆସେ ବାହି
ଦେବନଦ୍ଧୁଁ ବେଗେ ସେହି ଆସୁଛନ୍ତି ଧାଇଁ ।
ଏହିକ୍ଷଣି ଘୋଟିବେ ସେ ଆସି ସ୍ୱର୍ଗପୁର
ନିକଟ ହେଲେଣି ଏବେ ସମ୍ଭାଳ ତୋ ପୁର ।
ପୃଥ୍ୱୀ ନ ଦିଶଇ ତାର ଅକଳନ ସୈନ୍ୟ
ଦୁର୍ବାର ଅସ୍ତ୍ରମଲ୍ଲଙ୍କୁ ଘେନି ସଙ୍ଗତେଣ ।
ଜଣେ ଜଣେ ସ୍ୱର୍ଗ ଜରିପାରନ୍ତି ସେ ଜୟ
ନିଶ୍ଚୟ ଦେବ ତାହାଙ୍କୁ ହେଲା ପ୍ରାଣେ ଭୟ ।
ଏକଥା ବସ୍ତୁର ବେଗେ କରି ଦେବରାଜ
ନିଶ୍ଚୟ ଅମର ପୁର ନାଶ ଯିବ ଆଜ ।
ଏତେ କହିଣ ମ ତଳ ହୋଇଲେକ ତୁନି
ବୃହସ୍ପତିଙ୍କି ଅନାଇ ପୁଚ୍ଛେ ସସ୍ତୋଣି ।
ହେ ଗୁରୁ ତୁମ୍ଭେତ ଭୂତ ଭବିଷ୍ୟତ ଜ୍ଞାତା
ଗତାଗତ ଧ୍ୟାନ ବଳେ ଜାଣ ସବୁକଥା ।
ତୁମ୍ଭର ମନ୍ତ୍ରଣାବଳେ ସବୁକାର୍ଯ୍ୟ ସିଦ୍ଧି
ସ୍ୱର୍ଗ ରକ୍ଷା କରିବାକୁ ଅଛୁଟି କି ବୁଦ୍ଧି ।
ବୃହସ୍ପତି ବୋଇଲେ ହୋ ଶୁଣ ସୁରପତି
ଏକଥା ଶୁଣିଣ ଆମ୍ଭେ କଲୁ ବଡ଼ଖାତ ।
ବିଧାତା ଶାପେ କନ୍ଦର୍ପ କାଳନେମି ହେଲା
ଏ ଜନ୍ମରେ ଆସି କଂସାସୁର ବୋଲାଇଲା ।
ଉଗ୍ରସେନର ନନ୍ଦନ ପ୍ରତାପୀ ସେ ବୀର
ପୃଥ୍ୱୀଦେବୀ ନ ସହଇ ତାର ପାଦଭର ।
କ୍ରୋଧ ଲୋଚନେ ଯେଣିକି ଚାହଇ ସେ ଦୃଷ୍ଟି
ଦଳ ଦଳ ହୋଇ କମ୍ପେ ନବଖଣ୍ଡ ସୃଷ୍ଟି ।

ବ୍ରହ୍ମା ରୁଦ୍ର ଆଦିକରି ଆପେ ବଜ୍ରଧାରୀ
କାହାରି ହସ୍ତରେ ସେହୁ କଂସ ଯେ ନମରି ।
କାଳନେମି ରୂପହୋଇ ଥିଲା ଯେତେବେଳେ
ପାଦ ଚାରି ନ ଜିଣିଲା ପ୍ରଳୟର ଜଳେ ।
ପାତାଳ ପୁରଠାରୁ ଏ ସ୍ୱର୍ଗପୁର ଯାଏ
ସଚରାଚର ପୂରିଲା ତାର ମହାକାୟେ ।
ଡରେ ଚନ୍ଦ୍ରସୂର୍ଯ୍ୟ ଭାବେ ଅସ୍ତ ଯେ ହୋଇଲେ
ପାତାଳ ବୈକୁଣ୍ଠ ପୁରେ ବିଷ୍ଣୁଙ୍କୁ କହିଲେ ।
ସୁରଙ୍କ ବଚନେ ଧାଇଁ ଅଇଲେକ ସ୍ୱାମୀ
ଅଶୀସହସ୍ର ବର୍ଷ ଯୁଦ୍ଧ କଲା କାଳନେମି ।
ସେ କାଳନେମି ଧଇଲା ଏବେ କଂସଦେହି
ତାର ମହାବଳ କାହିଁ ଆନବଳେ ସହି ।
ବୋଇଲେକ ବୃହସ୍ପତି ଶୁଣ ସୁରରାୟ
ବିଷ୍ଣୁ ବ୍ୟତିରେକେ କଂସ ଆନେନୋହେକ୍ଷୟ
ତୋହରପ୍ରାୟେ କୋଟିଏ ଇନ୍ଦ୍ର ଯେବେ ହେବ
ତଥାପି ସେହୁ କଂସକୁ ଜିଣି ନ ପାରିବ ।
ଅକାରଣେ ଗଞ୍ଜିନୁହ ସନ୍ଧି ବେଗେ ଦେବା
ସୁରପଠାଇ ବିଷ୍ଣୁଙ୍କୁ ଏତେ ଜଣାଇବା ।
ବିଷ୍ଣୁ ଯେ ଅନନ୍ତ କୋଟି ବ୍ରହ୍ମାଣ୍ଡ କାରଣୀ
ତାହାଙ୍କୁ ଜଣାଇଲେ ସେ କରିବେ ପୁଣି ।
ସବୁକାଳେ ମର୍ତ୍ତେ ଆସି ହୁଅନ୍ତି ସେ ଜାତ
ସମସ୍ତେ ସମସ୍ତେ ହୁଏ ସ୍ୱର୍ଗେ ଉତପାତ ।
ଏଥିକ ଆମ୍ଭେମାନେ ଯେ କରିଥିବା ଭୟ
ଅବଶ୍ୟ କରିପାରନ୍ତି ହରି ତାକୁ ଜୟ ।
ଇନ୍ଦ୍ର ବୋଇଲେ ଗୁରୁ ହେ ବିଷ୍ଣୁ ଛନ୍ତି କାହିଁ
ସମସ୍ତେ ଲୁଣ୍ଠି ହୋଇଣ କହିବାନା ଯାଇଁ ।
ଆହେ। ଦେବଇନ୍ଦ୍ର କର୍ମା ବାଳପ୍ରାୟ କହୁ
ଅଗ୍ନି ପାଖରେ ତରଳ ଯାଏ ଯେସନ୍ତେ ଜଉ ।
କଂସର ତୋହର ପୁଣି ଦେଖାଦେଖି ନାହିଁ
ଆଗରୁ ଏଡେ ଆରତ ହେଉଛୁ କପାଇଁ ।
ଯେତେବେଳେ ଇନ୍ଦ୍ରତୁହି ଦୁଃଖେ ହେବୁ କଷ୍ଟି
ତେବେ ବିଷ୍ଣୁଠାକୁ ନେବା ବୋଇଲେ ଗୁରୁଟି
ଏବେ ସ୍ଥିର ହୋଇ କିଛୁକାଳ ରହିଥିବୁ
କଂସର ଉପଦ୍ରବ ତୁ ସମସ୍ତେ ସହିବୁ ।
ମହା କଟାଳ ଯେବେ ସେ କରିବ ଅବଧି
ଧର୍ମକୁ ଜିଣିଲେ ସିନା ହେବ କାର୍ଯ୍ୟସିଦ୍ଧି ।

ଆପଣା ବୁଦ୍ଧିରେ ଯେତେ ସିଦ୍ଧ ହେବ କାର୍ଯ୍ୟ
ପଣ୍ଡିତ ଜନ ଦେଖିବ ଶୁଣ ଦେବରାଜ ।
ଦେବଗୁରୁ ବଚନରେ ଇନ୍ଦ୍ରହେଲେ ତୋଷ
ସୁଧର୍ମା ସଭାରେ ବସି କଶ୍ୟପଙ୍କ ଶିଷ୍ୟ ।
ବରୁଣ ପବନ ଚନ୍ଦ୍ର ସୂର୍ଯ୍ୟ ସାତବାର
ଅଷ୍ଟବସୁ ମୁଳେ ଯମ ନୈର୍ଋତ କୁବେର ।
ବୈଶ୍ୱାନର ନାମେ ଯେଉଁ ଅଗ୍ନି ଦଇବତ
ନକ୍ଷତ୍ର କରଣ ଯୋଗତିଥି ସର୍ବେ ସ୍ଥିତ ।
ଆବର୍ତ୍ତ ସମ୍ବର୍ତ୍ତ ଦ୍ରୋଣ ପୁଷ୍କର ଯେ ମେଘ
ବୁଧ ଶୁକ୍ର ବୃହସ୍ପତି ବସିଛନ୍ତି ଆଗ ।
କାଳ ଯେ ବିକାଳ ଚିତ୍ର ଗୁପତ କାରଣ
ବ୍ରହ୍ମଋଷି ଦେବଋଷି ରାଜଋଷି ଗଣ ।
ଯକ୍ଷ ରକ୍ଷ ଗନ୍ଧର୍ବ ଯେ ବିଦ୍ୟାଧରବଳ
ନୃତ୍ୟଭଙ୍ଗ କରନ୍ତି ସେ ଆସ୍ଥାନର ତଳ ।
ଅନେକ ସମ୍ଭାର ଘେନି ବିଜେ ସୁରସାଇଁ
ନିକଟେ ଦେଖିଲେ କଂସ ଆସୁଅଛି ବାହି ।
ଆଦିତ୍ୟର ତେଜ ଜିଣି ବିହର ତା ରଥ
ମେଘ ଯେସନେ ଆବୋରି ଥାନ୍ତି ଶୂନ୍ୟପଥ ।
ରଥର ଉପରେ ନେତ ପତାକା ଉଡ଼ନ୍ତି
ନୀଳମେଘରେ ବିଜୁଳି ଯେସନ୍ତେ ଝଟକନ୍ତି ।
ଘାରଚକ୍ରର ଦେ ଗଜଘୋଷ ମହାଘୋର
ଶୁଣିଣ ଦେବଲୋକେ ଯେ ହୋଇଲେକାତର
ବୃହସ୍ପତି ବୋଇଲେ ତୁ ଶୁଣ ସଚୀସାଇଁ
କଂସେ ସନ୍ଧାନ ନ ଦେଲେ ପରିତ୍ରାଣ ନାହିଁ ।
ପ୍ରଚଣ୍ଡରେ ମହାତେଜେ ବିଜେ କଂସରାଜା
ଖଣ୍ଡେଦୂରୁ ଯାଇଁ ତାକୁ କରିବାନା ପୂଜା ।
ଯେବେ ତୁମ୍ଭେମାନେ ବଳେ ଯିବ ତାରପାଶ
ତୁମ୍ଭେ ସକଳ ଦେବତା ଯିବ ପ୍ରାଣେ ନାଶ ।
ସାମାନ୍ୟ ଜନ ପ୍ରାୟେ ନ ତାକୁ ମଣିଅଛ
ଏତିକ୍ଷଣି ତାର କଥା ବୁଝିବ ପ୍ରତ୍ୟକ୍ଷ ।
ତୁମ୍ଭେମାନେ କଂସକୁ ଯେ ସାମାନ୍ୟ ନ ମଣ
ବିସ୍ତରିଲେ ତୁମ୍ଭଠାରୁ ବଡବୋଲି ଜାଣ ।
ପୂର୍ବେ କାମଦେବ କାଳନେମି ହୋଇଥିଲା
ଯଦୁ ଭୋଜବଂଶେ ଏବେ କଂସ ହୋଇଲା ।
କାମଦେବ ଅବତାର ଜାଣ ଦେବରାଜା
ଆସ୍ଥାନେ ବସାଇ ତାକୁ କର ପାଦପୂଜା ।

ଅସୁର ଜନମ ପାଇ ପାଶୋରିଲା ତହା
ଗତ କଥା ତାର କି ନ ଜାଣୁ ଶଚୀନାହା ।
ଯୁଗରେ ଏ କାମଦେବ ତୋର ପୁତ୍ର ପୂର୍ବେ
ଅସୁର ସ୍ୱଭାବେ ତାହା ପାଶୋରିଲା ଏବେ ।
ଆବର ବିଶେଷେ ସେହୁ ସ୍ୱଗଂବନ୍ତ ରାଜା
ଲକ୍ଷେ ନୃପତି କରନ୍ତି ତାର ପାଦେ ପୂଜା ।
ଏବେ ସେ ଆସି ହୋଇଲା ମଞ୍ଚପୁରେ ଜନ୍ମ
ଆଗହୁଁ ଏକଥା ଆମ୍ଭେ ଜାଣିଅଛୁ ପୁଣ ।
ତାହାକୁ ଯେ ନ ମାନିଲେ ଭଲଗତି ନାହିଁ
କଂସ କୋପକଲେ ଆମ୍ଭେ ବର୍ତ୍ତିବାକ କାହିଁ
ଏହା ନ ବିଚାରି ଯେବେ କରିବାକ ରଣ
ଜିଣି ନ ପାରିବା ସବୁ ଯିବ ଅକାରଣ ।
କେବଳ ଅରିଷ୍ଟି ମେଣ୍ଟି ଯିବା ବୁଦ୍ଧିଯୋଗେ
ସମ୍ଭାଳ ହେଲେ ଜନ୍ମିବା ପଛେ ବିଷ୍ଣୁ ଆଗେ
ଏମନ୍ତ ବିଚାର କରୁ କରୁ ଦେବେ ସ୍ୱର୍ଗେ
କହୁଁ କହୁଁ କଂସ ଆସି ମିଳିଗଲା ଆଗେ ।
କଂସ ଦେଖି ଦେବଲୋକେ ଆସନୁ ଓହ୍ଲାଇ
ବେହରଣ ଗୁଡ଼ ଉଭାହେଲେ ତଳେ ଯାଇ ।
ବୃହସ୍ପତି ଆଦି କରି ଚନ୍ଦ୍ର ସୂର୍ଯ୍ୟ ମୁନେ
ଡରେଣ ଉଭାହୋଇଲେ ଆସ୍ଥାନର ତଳେ ।
ଦେଖିଣ କଂସରାଜନ ରଥରୁ ଓହ୍ଲାଇ
ଇନ୍ଦ୍ର ସିଂହାସନ ମାଡ଼ି ବସିଲାକ ଯାଇ ।
ଦେବତାମାନେ ପାଖରେ କେହି ନ ବସିଲେ
କଂସର ତେଜ ଦେଖିଣ ଭୟେ ଓହ୍ଲାଇଲେ ।
ଉପରକୁ ଉଠିବାକୁ ନାହିଁ କାର କ୍ଷମ
ପ୍ରଚଣ୍ଡ ତେଜେ ଉଗ୍ରନ ଅଇଲା କି ଯମ ।
ନିର୍ଧୂମ ଅଗ୍ନିକି ଜିଣି ବିରାଜଇ ତେଜ
ଲୋହିତ ପିଙ୍ଗଳ ବର୍ଣ୍ଣ ଦିଶଇ ଦନୁଜ ।
ପିନାକ ସମାନ ଧନୁ ଧରିଅଛି କରେ
ସ୍ତମ୍ଭରେ ଦେବତାମାନେ ନ ରହିଲେ ଡରେ
ସାତ୍ୟକି ଅକ୍ରୂର ଅନାଧୃଷ୍ଟି ଯେ ଉଦ୍ଧବ ।
ବସୁଦେବ ସହାଜତ ସକଳ ଯାଦବ ।
ଅରିଷ୍ଟ ଯେ ଜପାସୁର ଜାମଳା ଶକଟ
ଷଣ୍ଢ ଧେନୁକା କୁବଳ ଅଘା ଆଦି ଆଠ ।
ଷଣ୍ଡ ମନ୍ତ୍ରୀ ଅଷ୍ଟମଲ୍ଲେ କଂସ ଆଜ୍ଞା ପାଇ
ଆସ୍ଥାନ ଉପରେ ଉଠି ବସିଲେକ ଯାଇଁ ।

ଚଉଦ ସେନାଙ୍କୁ ଘେନ ବସିଲା ଆସ୍ଥାନେ
ତଳେ ଉଭା ହେଲେ ଇନ୍ଦ୍ର ଆଦି ସୁରଗଣେ ।
ଉପରେ କଂସରାଜନ କରିଅଛି ସଭା
ସ୍ତମ୍ଭେଣ ଦେବଗଣ ହୋଇଛନ୍ତି ଉଭା ।
ଇନ୍ଦ୍ର ବଦନକୁ ଚାହିଁ କହେ କଂସରାଜା
ଏ ସ୍ୱର୍ଗ ମଣ୍ଡଳେ ଆମ୍ଭେ ହେଲୁ ସୁରରାଜା ।
ନହୁଷ ପିତାମହର ଅଟଇ ଏ ବୃତ୍ତି
ସମସ୍ତେ ଭୋଗକଲୁ ତୁ ଆସି ଆମ୍ଭ ପୃଥ୍ୱୀ ।
ଜୀବନେ ଆଶାଥିଲେ ତୁ ସ୍ୱର୍ଗ ଛାଡ଼ି ବେଗେ
ନୋହିଲେ ପ୍ରାଣ ଛୋହର ଘେନିବ ଖଡ଼ଗେ ।
ଆହେ ଦେବେ ତୁମ୍ଭେ ଯେବେ ନ ଛାଡ଼ ଆକାଶ
ଦେବଗୋଷ୍ଠ ମାନେ ସବୁ ଯିବ ପ୍ରାଣେ ନାଶ
ଯମ ନୈର୍ଋତ କୁବେର ଗ୍ରହ ତାରାଗଣ
ଏ ସ୍ୱର୍ଗମଣ୍ଡଳେ ତୁମ୍ଭେ ଅଛ ଯେତେ ଜଣ ।
ଏ ଅମର ପୁରୁ ଆଜ ଏକ୍ଷଣି ଯିବ
ଏକଥା ନ କଲେ କେହି ପ୍ରାଣ ନ ପାଇବ ।
ଯେବେ ଛାଡ଼ି ନ ଯିବ ତା ଉପାୟ କହୁଛୁ
ସମର କର ମୋ ସଙ୍ଗେ ନ ବିଚାରି କିଛୁ ।
ସମରେ ଜିଣିଲେ ପଛେ ସ୍ୱର୍ଗ ଭୋଗ କର
ଜିଣି ନ ପାରିଲେ ରଣଯଜ୍ଞ କରି ମର ।
ଏତେକ ବୋଲି ସୁଧର୍ମା ସଭା ବସେ ମାଡ଼ି
ଅଷ୍ଟମଲ୍ଲଙ୍କୁ ବୋଇଲା କପାଁ ଯିବା ଛାଡ଼ି ।
ଆଜହୁଁ ଆମ୍ଭେ ଏ ସ୍ୱର୍ଗେ ହେଲୁ ସୁରସାଇଁ
ଅଷ୍ଟଦିକପାଳ ତୁମ୍ଭେ ଆଠେ ହୁଅ ଯାଇଁ ।
ଯେଉଁ ଦେବତା ନ ଦେବ ତାର ଅଧିକାର
ଆମ୍ଭ ଆଜ୍ଞା ଘେନ ତାକୁ ସେହିଠାରେ ମାର ।
ଏସନକ ଆଜ୍ଞା ଯହୁଁ ଦେଲା କଂସ ରାୟ
ଶୁଣିଣ ଡରେ କମ୍ପିଲା ଦେବତାଙ୍କ କାୟ ।
ଆସ୍ଥାନତଳେ ସମସ୍ତେ ଛନ୍ତି ଉଭାହୋଇ
କଂସ କଥା ଶୁଣି ଜ୍ଞାନ କାହାର ଯେ ନାହିଁ ।
ଏକ ଆରେକ ଖଳନ୍ତି କାନେ କାନେ ଲାଗି
କେଉଁଦେବତା ବୋଲନ୍ତି ହେବା ପ୍ରାଣତ୍ୟାଗୀ
ଧର୍ମକୁ ସୁମରି ଦେବଗଣ ଯେ ସକଳ
ଯେ ଯାହା ମତେ ହୁଅନ୍ତି ଅତ୍ୟନ୍ତ ବିକଳ ।
ଏ ବେଳେ ସେ ଇନ୍ଦ୍ର ବୃହସ୍ପତିଙ୍କି ରାଇଲେ
ଧୀର ଧୀର କରିଣ ସେ କାନରେ କହିଲେ ।

ଏ କଥା ମୋତେ ସନ୍ଦେହ ଲାଗିଲା ତ ଆସି
କଷ୍ଟେ ସ୍ୱର୍ଗ ଛାଡ଼ିଯିବା ସିନା ସ୍ୱର୍ଗବାସୀ ।
ଏତେ ସଙ୍କଟରୁ ପାର ହୋଇବା କେମନ୍ତେ
ଏଥିକୁ କି ପ୍ରତିକାର କହ ଗୁରୁ ମୋତେ ।
କଂସର ବଚନେ ମୋର ସରିଲା ତ ବୁଦ୍ଧି
ତ୍ରିଦଶ ଦେବଙ୍କ କାର୍ଯ୍ୟ ନୋହିବାକ ସିଦ୍ଧି ।
ବଳେ ଆସି ସ୍ୱର୍ଗ ମାଡ଼ି ବସିଲାଣି କଂସ
ବାଉସ୍ତଣ ଭୁବନ ମୋ' କ୍ଷଣେ ଗଲା ନାଶ ।
ତୁମ୍ଭର ବୁଦ୍ଧି ବଳରେ ପାର ଯେବେ ରଖି
ନୋହିଲେ ସକଳ ଦେବ ହେଲୁ ବଡ଼ ଦୁଃଖୀ
ବୃହସ୍ପତି ବୋଇଲେ ତୁ ଶୁଣ ଶଚୀନାହା
ଆଗହୁଁ ତୋହର ଆଗେ କହିଅଛୁଁ ଯାହା ।
ଏହି ସେହି କାଳନେମି କଂସରୂପଧାରୀ
ସବ ବଳସାର୍ଯ୍ୟ ଘେନ ଅଛି ଅବତରି ।
କେମନ୍ତ ପ୍ରକାରେ ତୁମ୍ଭେ ଏଥୁ ରକ୍ଷା ହୋଇ
ଅନନ୍ତଶେଯେ ବିଷ୍ଣୁଙ୍କୁ ପଚାରିବା ଯାଇଁ ।
ସେ ବିଷ୍ଣୁ ଦେବ ଆମ୍ଭଙ୍କୁ ଦେବେ ଯେଉଁ ବୁଦ୍ଧି
ନିଶ୍ଚୟ ଆମ୍ଭର କାର୍ଯ୍ୟ ତେଣେ ହେବ ସିଦ୍ଧି
ଇନ୍ଦ୍ର ବୋଇଲେ ଗୁରୁ ହେ ପଛେ ଜଣାଇବା
ଏ ଉପଦ୍ରବ କେମନ୍ତେ କହ ମେଣ୍ଟାଇବା ।
ଅମର ସମ୍ପଦ ହେନ ଯିବ ଦାନାରଙ୍ଗେ
ରହ ବୋଲିବା ସ୍ୱଜନ ନାହିଁ କେହି ସଙ୍ଗେ ।
କାଷ୍ଠ ପାଷାଣ ହେଲଣି ସବୁଙ୍କର ଦେହି
ଅରକ୍ଷ ହେଲୁ କାହାକୁ କହିବୁ ହେ ଯାଇ ।
ଦିଗପାଳମାନେ କେତେ ଥିବେ ଦୁଃଖ ସହି
ଏ ଦୁଃଖ ଏବେ କାହାକୁ କହିବା ନା ଯାଇ ।
ନିଶ୍ଚୟ ନାଶଗଲା ଏ ଅମର ମଣ୍ଡଳ
ଦେବଙ୍କର ହେଲା ଆସି ମରଣର କାଳ ।
କାହାର ବଳେ ଏ ସ୍ୱର୍ଗପୁର ନୋହେ ରକ୍ଷି
ଧର୍ମଦେବତା ଲୋକକୁ ଏଥିକୁ ଯେ ସାକ୍ଷୀ ।
ହେ ଧର୍ମଦେବତା ମୋତେ ପ୍ରତିକାର କର
ଏହା ନ ବୁଝିଲେ ଠାବ ନାହିଁ ଯେ ଆମ୍ଭର ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଦେବଙ୍କ ଦେବତା
ଶଙ୍କଟ ପଡ଼ିଲା ନାଥ ଛଡ଼ା ମନବ୍ୟଥା ।
ଆମ୍ଭଙ୍କୁ ଯେ ଜାତକଲ ସୃଷ୍ଟିଭର ଅର୍ଥେ
ଆମ୍ଭେ ନାଶଗଲେ ସୃଷ୍ଟି ରହିବ କେମନ୍ତେ ।

ଆମ୍ଭେ ଜନ୍ମି ଅଛୁଁ ଦୁଷ୍ଟ ନିବାରିବା ପାଇଁ
ଆମ୍ଭେ ଗଲେ ଏ ସଂସାର ରହିବ ବା କାହିଁ ।
କଂସ କଣ୍ଠେ ସରସ୍ୱତୀ ଦେବୀ ଗୋ ବସିବ
ତେବେ ଦେବଙ୍କର ଶୃଙ୍ଖଳ ଯେ ଫିଟିବ ।
ଏତେ ବୋଲି ଦେବ ସରସ୍ୱତୀଙ୍କି ସୁମରି
ପାଦେ ପଡ଼ି ଶୋଇ ସ୍ତୁତି ଅନେକ ଯେ କରି ।
ଜୟ ତୁ ସାରଦା ମାଗୋ ବିଷ୍ଣୁର ବଲ୍ଲଭୀ
ମହାଯଜ୍ଞ ଜାତକଲେ ବ୍ରହ୍ମା ଏହି ଭୁବ ।
ଅନୁପାନ ସମ୍ଭୂତ ମାଗୋ ଅଟଇ ତୋରଦେହି
ଆଦିଅନ୍ତ ମଧ୍ୟ ତୋର ନ ଜାଣନ୍ତି କେହି ।
ଧବଳ ଅଙ୍ଗ ସ୍ଫଟିକ ଜିଣି ତୋର କାନ୍ତି
ଜଗଜ୍ଜନ ମୋହିଲୁ ଅପାଙ୍ଗେ ଯୋଡ଼ଚନ୍ତି ।
ଅମ୍ବରରେ ନିର୍ମାଣ ତୋ ଶିରେ ସପ୍ତଶିଖା
ସ୍ୱର୍ଣ୍ଣ କୁଣ୍ଡଳ ଶୋଭିତ ଜିଣି ପଦ୍ମ ରେଖା ।
ମଣି ମାଣିକ୍ୟ ମର୍କତ ଏହି ତିନି ହେମ
ଉପମା ନୋହି ତୁମ୍ଭର ରୂପ ଅନୁପମ ।
କଣ୍ଠେ ତୁମ୍ଭର ଗୋ ନବରତ୍ନ ହାର ଶୋହି
ପରମ ମାହେଶ୍ୱରୀ ତୋ ବିଷ୍ଣୁ ମନ ମୋହି ।
ସପତସ୍ୱର ଧ୍ୱନି ତୋ କରେ ବ୍ରହ୍ମବୀଣା
କୂତୁହଳେ ଜଣି ଜଣି ବାଜେ ଜଗଜ୍ଜିଣା ।
ଗାନ୍ଧାର ସ୍ୱରରେ ମାଗୋ ସପ୍ତସ୍ୱର ବାଇ
ଯୋଗନିଦ୍ରା ଦେଲେ ବିଷ୍ଣୁ ଜାନୁ ଶିରେ ଦେଇ
ଅଳି ଆଳି ବେଣୀ ତୋର କୁଣ୍ଡଳୀ ଭୁଜଙ୍ଗ
ସର୍ବଦା କୁଶଳ ତୋର ଅଟଇ ସର୍ବାଙ୍ଗ ।
ଦେବାଙ୍ଗନିନିବାସରେ ଶୋଭିତ ତୋ କାୟେ
ମୁନିମାନଙ୍କୁ ତୋ ମାୟା ଅଗୋଚର ହୋଏ ।
କାଶୀଦେଶ ମାଗୋ ଦକ୍ଷପାଳ ନରପତି
ତୁମ୍ଭ ପାଦପଦ୍ମେ କରିଥିବାରୁ ଭକତି ।
ଜୀବନ୍ତେ ବିପୁଳ ଲକ୍ଷ୍ମୀ ସେ ସୁଖେ ଭୁଞ୍ଜିବ
ଅନ୍ତଃକାଳେ ଯାଇ ବିଷ୍ଣୁ ବୈକୁଣ୍ଠେ ବସିବ ।
ସକଳ ଜନ ଜନ୍ତୁଙ୍କୁ କଲ ତୁମ୍ଭେ ବଶ
ବେଦମତେ ତୁମ୍ଭବଶେ ସକଳ ତ୍ରିଦଶ ।
ତୁମ୍ଭ ଯୋଗୁ ଏ ସକଳ ଲୋକେ ଜ୍ଞାନପାଇ
ଜୀବ ପ୍ରସରଇ ମାଗୋ ତୁମ୍ଭ ପାଦ ଧ୍ୟାଇ ।
ବେଦମନ୍ତ୍ର ମର୍ମ ତତ୍ତ୍ୱ ଆଦ ଉଦ୍ଧାରିଲ
କଣ୍ଠୁ ବ୍ରହ୍ମ ପରିଯନ୍ତେ ତୁମ୍ଭେ ଉଆଇଲ ।

ସକଳ ଘଟରେ ଥାଅ ତୁମ୍ଭେ ଗୋ ଭରତ
ଲପନ କୋଟି ଜୀବ ତୁ କଲୁ ଜଗପତି ।
ତୁମ୍ଭବାକ୍ୟ ପ୍ରମାଣରେ ସ୍ତୁରେ ସବଂଚଣ୍ଡୀ
ତେଣୁ ତୁ ବୋଲାଉ ବାକ୍ୟଦେବୀ ଆଗୋମାତ
ତୋତେ ସେବାକଲେ ମାଗୋ ସ୍ଫୁରଇସୁବୁଦ୍ଧି
ଯଥା ବୁଦ୍ଧି ତଥା ସିନା ବଖାଣନ୍ତି ସିଦ୍ଧି ।
ମମକଣ୍ଠ ଆଭରଣ ହୁଅ ମହାମାୟେ
ତୁମ୍ଭ ପ୍ରସାଦେ ଫିଟିବ ଏ ସଂସାର ଭୟେ ।
ହରିବଂଶ ଗ୍ରନ୍ଥ ମାଗୋ କହ ଦେବୀ ମୋତେ
ଅନେକ ଭକତି ମାଗୋ କରୁଅଛି ତୋତେ ।
ତୁମ୍ଭ ଯେବେ ସୁପ୍ରସନ୍ନ ହେବୁ ମହାମାୟେ
କହିବ ଏ ହରିବଂଶ ଅତି ପୁଣ୍ୟମୟେ ।
ସାରଦାଙ୍କ ପଦ ପାଦେ ଥାଇ ଏମାର ସେବା
ଅଚ୍ୟୁତ ଦାସ ମୁଁ ମୋତେ ଗତିମୁକ୍ତି ଦେବା

—*—

## କଂସର ସପ୍ତସାଗର ଭ୍ରମଣ

ଏମନ୍ତେ ସ୍ତୁତି ଅନେକ କଲେ ଦେବବୃନ୍ଦ
ଶୁଣିଣ ସେ ମହାମାୟା ହୋଇଲେ ଆନନ୍ଦ
ବସ୍ତୁ ସୀମାସ୍ଥାନେ ଯୋଗ ବଜାଇଣ ଥିଲେ
ସଧାତାଙ୍କ ସ୍ତୁତି ଯୋଗବଳେ ସେ ଜାଣିଲେ
ଧାତକାରେ ସୁପ୍ରସନ୍ନ ହେଲେ ଯୋଗମାୟା
ଶୂନ୍ୟେଥାଇ ଦେଖାଇଲେ ଆପଣାର କାୟା
ଦରହସିତ ବଦନେ କହନ୍ତି ସେ ବାଣୀ
କଂସର କଣ୍ଠେ ପ୍ରବେଶ ହେବ ଏହିକ୍ଷଣି ।
ଯେମନ୍ତେ ସେ ଦୁଷ୍ଟ କଂସ ଛାଡ଼ିବ ଦୁର୍ବୁଦ୍ଧି
ତେସନ ଉପାୟ କଲେ ହେବ କାର୍ଯ୍ୟ ସିଦ୍ଧି
ଏବେଳକ ତାର ଧାଡ଼ି ବଞ୍ଚାଇବ ଯୋଗେ
ପୁଣ ଉପଦ୍ରବ କଲେ କହ ବସ୍ତୁ ଆଗେ ।
ଏତେ ବୋଲି ଧାତକାରେଦେବୀ ବଜେକଲେ
କଂସରାଜା କଣ୍ଠତଟେ ଯାଇଣ ବସିଲେ ।
ତତକ୍ଷଣେ ସେ ଦାନବ ହୋଇଲା ବିମୋହ
କୋପ ତାର ଶାନ୍ତହେଲା ଉପୁଜିଲା ସ୍ନେହ ।
ସୁବୁଦ୍ଧି ଯେ ପ୍ରସନ୍ନ ସଦମାର୍ଗ ବାଣୀ
ଦୟା ବହି ଧୀର କଥା କହେ ନୃପମଣି ।
ଦେବେ ଭୟ ହୋଇଥିଲେ ଆସ୍ଥାନରତଳେ
ଦରହସିତ ବଦନେ କଂସ ମନେ ଭଲେ ।
କଂସ ଗୃହାଣୀକି ବିଗପାଳ ଡରୁଥିଲେ
ମହାଭୟ ପାଇ ପଛଘୁଞ୍ଚା ଦେଉଥିଲେ ।
ଭୟେ କମ୍ପମାନ ଦେବଗଣଙ୍କର ଦେଖି
କାତର ହୋଇ ସେ କଥା ନ ପାରନ୍ତି କହି
ମାର୍ଜାର ଦେଖି ଇନ୍ଦୁର କରେ ଯେସନ୍ତେ ସାନ୍ତ
ତେସନ ଜାଣ ଦେବତା କଂସ ନରପତି ।
ଦେବଙ୍କର ଭୟ କଂସ ନୟନେ ଦେଖିଲା
କୋପ ଛାଡ଼ି କଂସ ଚିତ୍ତେ ଦୟା ଯେ ବସିଲା
ଆସ୍ଥାନର ଉପରକୁ ଡାକି ବୃହସ୍ପତି
କହିଲା ଏ ଦେବଗଣ ବସନ୍ତୁ ମୋ କତି ।
କଂସର ଆଜ୍ଞାରେ ବୃହସ୍ପତି ଗଲେ ବେଗେ
କୃତାଞ୍ଜଳି ହୋଇ ଉଭା କଂସାସୁର ଆଗେ ।
ଦେବଗୁରୁ ବୋଲି କଂସ ନମସ୍କାର କଲା
ଆଶ୍ୱାସନା କରି ଆଣି ପାଶେ ବସାଇଲା ।
କଂସ ବୋଇଲା ଗୁରୁହେ କର ମୋର ବୋଲ
ସ୍ୱର୍ଗେ ସୁଖେ ବସିବାକୁ ଖୋଜ ଦିନ ଭଲ
ପାଞ୍ଜି ଧରି ଗୁରୁ ଖୋଜ ସପତାଙ୍କେ ଏହା
କେଉଁଦିନ ସ୍ୱର୍ଗେ ଆମ୍ଭେ ହେବା ସୁରନାହା
ଶୁଣିଣ ସେ ବୃହସ୍ପତି ଫେଡ଼ି ପାଞ୍ଜି ମୁଠି
ଖଡ଼ୀଯେନ ବୋଲେ ଚକ୍ରି କୋଷ୍ଠି ଗୋଟା କାଟି
ଟଥିବାର ରଷଯୋଗ କରିଣ ମିଶାଇ
ସପତାଙ୍କ ଗଣି ନବଗ୍ରହଙ୍କୁ ବସାଇ ।
ଖୋଜିଲେକ ବୃହସ୍ପତି ଶୁଭ ଅନୁକୂଳ
ଏଗାର ବରଷ ଯାଏ ନାହିଁ କିଛି ଭଲ ।
ଦଶ୍ଚ ଯେଣ ସମସ୍ୟେକ ଯାଇଁ ରହିଥିବ
ଶୁଭ ଯୋଗବଳେ ଇନ୍ଦ୍ର ପଦରେ ବସିବ ।
ବେଦଶାସ୍ତ୍ର ମତେ ବୁଝ ଏମନ୍ତ ବିଗ୍ରହ
ମନକୁ ନ ଯୋଗାଇଲେ ଯାହା ଇଚ୍ଛା କର
ଶୁଭବେଳେ କାର୍ଯ୍ୟ କଲେ ହୁଅଇଟି ଭଲ
ଏଗାର ବରଷଯାଏ ନାହିଁ ଅନୁକୂଳ ।
ବେଦଶାସ୍ତ୍ର ପ୍ରମାଣେ ଯା କହିଲୁ ସେ ଭଲ
ସ୍ୱର୍ଗ ମଞ୍ଚ ପାତାଳେ ନ ହେବ ଅମଙ୍ଗଳ ।
ଶୁଭଯୋଗେ ଯେବେ ତୁମ୍ଭେ ହେବ ସୁରପତି
ନିଶ୍ଚିନ୍ତେ ଭୋଗ କରିବ ପୁର ବାରସ୍ତ୍ରୀ ।
ଏତେକହି ଦେବଗୁରୁ ହୋଇଲେ ମଉନ
ଆପଣାର ହୃଦମଧ୍ୟେ ବିଚାରେ ଗଗନ ।

ଯୁକତେଚ ସରସ୍ୱତୀ କଣ୍ଠେ ଛନ୍ତି ରହି
ଆବର ବିଶେଷ ଗୁରୁ କହିଲେ ମନାଇ ।
ଆପଣା ମନେ ବିଗ୍ଭରି ହୋଇ ସେ ସନ୍ତୋଷ
ମନ୍ଦବେଳେ ବସିଲେ ଯେ ହେବ ସର୍ବଧ୍ୱଂସ ।
ଏକାବଶ ବରଷତ କହୁଁ କହୁଁ ଯିବ
ସେ କାଳ ଯାଏ ଏ ଇନ୍ଦ୍ର ଆମ୍ଭର ହୋଇବ
ବରଷେ ବରଷେ ମୋତେ ସନ୍ଧ ଦେଉଥିବ
ମଧୁରାକଣ୍ଠକେ ଦେଖା ଦରଶନ ଦେବ ।
ବଯୋଗେ ନହୁଷ ରାଜା ହୋଇ ସୁରପତି
କାଳ୍ପତରେ ନାଶଗଲା ଏଡ଼େକ ସମ୍ପତ୍ତି ।
ଋଷିଙ୍କି ଯାଇ ବୁହାଇ ହୋଇ ସର୍ପଦେହୀ
ଜାଣି ହୁଡ଼ିଲା ତାହାକୁ ରଖନ୍ତା କେ ନାହିଁ ।
ଅଷ୍ଟମଲ୍ଲଙ୍କୁ ବୋଇଲା ତୁମ୍ଭେ କସ ମଣ
ସେମାନେ ବୋଇଲେ କଥା ଅଟଇ ପ୍ରମାଣ ।
ଧାର୍ମିକ ବିବେକୀ ତୁମ୍ଭେ ଅଟ ଗୁଣ ନିଧି
ତୁମ୍ଭେ ଯାହା ଆଜ୍ଞା ଦେଲେ ଆମ୍ଭର ସେ ସିଦ୍ଧି
ଯୁକତେ ଆମ୍ଭର ଇନ୍ଦ୍ରପଦ ହୋଇ ଜନା
ସନ୍ଧ ଦେଇ ଆସ୍ଥାନରେ ଇନ୍ଦ୍ର ବସେ ସିନା ।
ସମସ୍ତେ ପଛେ ଆସିବା ଶୁଣି ବଣ୍ଡିଭଣ୍ଡ
ଏକାବେଳେ ଇନ୍ଦ୍ର ପଦ ବସିବ ନା ମାଣ୍ଡ ।
ଏତେକ ବଚନେ କଂସ ହୋଇଲା ସନ୍ତୋଷ
ବିଗ୍ଭରି ବୋଲେ ବାହୁଡ଼ି ଯିବା ଏବେ ଆସ ।
ଦେବଙ୍କୁ ବୋଲେ ସ୍ଥମ୍ଭକୁ ମୋର ଯାଉଥିବ
ଉପହାର ଦେଇ ମୋର ସଭାରେ ବସିବ ।
ଏମନ୍ତ ବଚନ ଯହୁଁ ବୋଲେ କଂସାସୁର
ସବୁ ଦେବତାଙ୍କ ମନ ହୋଇଲା ସୁସ୍ଥିର ।
ସରସ୍ୱତୀଙ୍କି ପ୍ରଶଂସା କଲେ ସୁରରାଜେ
ତୋର ପ୍ରସାଦେ ଖଣ୍ଡିଲୁଁ ସିନା ଅପଚୟେ ।
ଧାଇଁକାରେ ସୁରପତି ଭଣ୍ଡାରେ ପଶିଲେ
ଅନେକ ଯେ ଧନରତ୍ନ ଆଣି ସମର୍ପିଲେ ।
ନବଶାଖା ମୁକୁଟ ଯେ ଗୁଣାଭୂଷା ମଣି
ଶ୍ରୀକରେ କଂସକୁ ଇନ୍ଦ୍ରଦେବ ଦେଲେ ଆଣି ।
ଶୂରସେନ ନାମେ ହସ୍ତୀ ସୁନାସ ଯେ ଗଜ
କଂସର ସ୍ଥମ୍ଭରେ ଆଣି ଦେଲେ ସୁରରାଜ ।
ନାନାବ ନାମା ନଧିରୁ ଆଠଲକ୍ଷ ଆଣି
କଂସର କରେ ସମର୍ପି ଦେଲେ ବଜ୍ରପାଣି ।

ବାଜଗତି ଯାନ କଳ୍ପତରୁ ସିଂହାସନ
ପାଞ୍ଚଲକ୍ଷ ଆଣି ଦେଲେ ଅମ୍ଳାନ ବସନ ।
ମୋତିଝରା ଲଗିଥିବା ଅଷ୍ଟରତ୍ନ ବେଣୀ
କଂସର ସ୍ଥମ୍ଭରେ ଆଣି ଦେଲେ ଜମ୍ଭଭେଦୀ ।
କୁବେର ବରୁଣ ଚନ୍ଦ୍ର ସୂର୍ଯ୍ୟ ବୃହସ୍ପତି
ନଇର୍ଋତ ମରୁତ ଯେ ଯମ ବେଧାପତି ।
ଯକ୍ଷ ଗନ୍ଧର୍ବର ମୂଳେ ଦେବଗଣ ଯେତେ
ଜଣେ ଜଣେ ଆସି ସନ୍ଧ ଦେଲେ ଯେଝାମତେ
ସ୍ୱର୍ଗ ମଣ୍ଡଳେ କଂସକୁ ଦେବେ କଲେ ପୂଜା
ବୃହସ୍ପତିର ବଚନେ ତୋଷ କଂସରାଜା ।
ଅଷ୍ଟମଲ୍ଲଙ୍କୁ ଗ୍ଭହିଁଣ ବୋଲେ କଂସରାୟ
ଦେବ ଦାନବ ମାନବ ସବୁ କଲୁ ଜୟ ।
ଏଥୁ ବାହୁଡ଼ଣ ଚ୍ଭଲ ମଥୁରାର ଯିବା
ନବଦ୍ୱୀପେ ସପତସାଗର ଭ୍ରମିବା ।
ଅମରପୁରୁଷେ ଗଲେ ସମଦଣ୍ଡ ନେଇ
ଗଙ୍ଗାନଦୀ ତୀରେ ତୀରେ ସୈନ୍ୟ ଚଳାଯାଇ ।
ପ୍ରବେଶ ହୋଇଲା କଂସ ହରଙ୍କ ଉଦ୍ୟାନେ
ଅନେକ ରାଜ୍ୟେ ମିଳଲେ ଆସିଣ ସେ ସ୍ଥାନେ ।
ହରଷେ ଚଳଲା କଂସ ତିନଦିନ ରହି
କୋଳାହଳ ବନେ ସୈନ୍ୟ ମିଳିଲେକ ଯାଇଁ
ଉଗର ଆଗରେ ପଥ କଡ଼ାଇଣ ନେଲା
ମଗଧରାଜା ସଙ୍ଗେ କଂସ ବାଟ ଗ୍ଭଲିଗଲା ।
ବେନବଳ ମିଶିବାରୁ ହୋଇଲା ଗହଳ
ପଞ୍ଚାଶୋଇ ଯୂଣ ମାଡ଼ ଚକ୍ରଛନ୍ତି ବଳ ।
ଅସଂଖ୍ୟବଳ ତାହାର ଅଗୋଚର ଆଟ
କଂସର ପାଦ ପଡ଼ନ୍ତେ କମ୍ପେ ପୃଥ୍ୱୀପୃଷ୍ଠ ।
ଯେବଣଠାବରେ କଂସ ଉଭାହୋଏ ଯାଇଁ
ଡରେଣ ପୃଥିବୀ ଦେବୀ ତଳକୁ ଲସଇ ।
ତାର ମହାଭରଂ ସହି ନ ପାରଇ ମହୀ
ସହି ନ ପାରି ଆଖିରୁ ଲୁହ ପଡ଼େ ବହି ।
ସହି ନ ପାରି ପୃଥିବୀ କଂସ ପାଦଭର
ହଉତେ ମାଉଳୋଚନ କମ୍ପେ କଳେବର ।
ବିକଳେ ଯାଇ ଗୃହ ରି କରେ ବିଧାତାଙ୍କୁ
ହେ ଦେବ ବାରେକ ରକ୍ଷା କରିବା ଆମ୍ଭଙ୍କୁ
ତୁମ୍ଭେ ବିଧାତା ସଂସାର ଗୋଷ୍ଠା ଭିଆଇଲ
ଏତେ ଗଞ୍ଜଣା କପାଇଁ କହ ମୋତେ ଦେଲ ।

କଂସର ଘରରେ ମୁଁ ନ ପାରଇ ସହି
ଘୁଞ୍ଚିବ ମୁଁ ରସାଗତ ହେଉ ପଛେ ମହୀ ।
ନୋହିଲେ ଏହାର ଘାତକାରୀ କର ବହି
ନଷ୍ଟେ ଘୁଞ୍ଚିବ ମୁଁ ଆଉ ନ ପାରିବ ବହି ।
ସାତବର ବାନା ଗୋଟା ବହେ କଂସରାୟେ
ଦୁରହୁଁ ଦେଖିଲେ ତାକୁ କମ୍ପଇ ମୋ କାୟେ ।
ଶୁକଦେବ କହିଲେ ହେ ଶୁଣ ମହାରଥୀ
କହିବାକୁ ଅଗୋଚର କଂସାସୁର କଥା ।
ପୃଥିବୀ ଉପରେ ଥିଲେ ଯେତେ ରାଜାମାନେ
ତୋଷିଲେ ଆସି ଯେ ଯାହା ଦରଶନୀ ଧନେ ।
ଦେବଲୋକ ନାଗଲୋକ ନରଲୋକ ଯେତେ
ଭୃତ୍ୟଜନ ପ୍ରାୟେ ଆସି ଖଟନ୍ତି ସମସ୍ତେ ।
କଂସର ସୈନ୍ୟକହନ୍ତେ ନୋହିବ ଯେ ଶେଷ
ଅଗୋଚର ଥାଟ ବଳ ଅଶ୍ରୁତ ଅଦୃଶ୍ୟ ।
ପୂର୍ବେ ନାରକା ରାବଣ ଆଦି ସାରେ ଥିଲେ
ଅନେକ ହମ୍ଭାର ଯେଣ୍ଣ ଉଗଭଜେ କଲେ ।
ଜିଣି ଅନେକ ରାଜାଙ୍କୁ ଲଙ୍ଗି ସମରସ୍ତ୍ରି
ଛତ୍ରୁଁ ବଶଗୁଣ ଏହି କଂସରଜା ଥାଟ ।
ତଳେ ଉପରେ ନୋହି ନ ଥିବେ ରସାତଳେ
ତ୍ରଇଲୋକ୍ୟ ଜିଣିଲା ସେ ନିଜ ଭୁଜବଳେ ।
ଅନେକ ସମ୍ଭାରେ ଉଗଢଜେ ସେ କରଇ
ସାରତୂର ଶବଦରେ ବ୍ରହ୍ମାଣ୍ଡ କମ୍ପଇ ।
ପଶ୍ଚିମ ମୁଖେ ସେ ରୁଦ୍ରବେଣୀକୂଳେ ଯାଇ
କପିଳାସ କନ୍ଦରେ ସେ ପ୍ରବେଶ ହୁଅଇ ।
ଧବଳ ବର୍ଣ୍ଣ ପର୍ବତ ଦିଶେ ଜ୍ୟୋତିର୍ମୟେ
କୋଟିଏ ଚନ୍ଦ୍ରମା କି ସେ ହୋଇଛି ଉଦୟେ ।
ଚଉଦଯୋଜନ ଉଚ୍ଚ ସୁସଞ୍ଚ ସେ ଅତି
ଷୋଳସହସ୍ର ଯୋଜନ ଅଟେ ପାର୍ଶ୍ୱପ୍ରସ୍ତ
ଦୁଇସହସ୍ର ପର୍ବତ ବେଢି ଚଉକତ
ମଳୟ ପବନ ତହିଁ ବହଇ ଯେ ନିତ୍ୟ ।
ପର୍ବତ ତଳେ ଅଛଇ ହରଙ୍କ ଉଦ୍ୟାନ
ଅମର ମଣ୍ଡଳଧରେ ସେହି ଉପବନ ।
କହନ୍ତେ ଯେ ନ ସରଇ ପର୍ବତ ମହିମା
ନରତେ ଶଙ୍କର ଯେଣ ଉହରନ୍ତି ଉମା ।
ଯେତେବେଳେ ମନୋବାଞ୍ଛା ଯେ କରିବ ଯାହା
ତକ୍ଷଣେ ତାକୁ ପ୍ରାପତ ହୁଅଇଟି ତାହା ।

ପର୍ବତର ଶୋଭାଗୋଟା ଅତି ଉପବନ
ସମସ୍ତ ବୃକ୍ଷ ତହିଁରେ ଥିବାରୁ ଶୋଭନ ।
ତେଣୁ ସେ ପର୍ବତ ଶୋଭା ଅଟେ ଅନୁପମ
ମହାପ୍ରଳୟ ନ ଲାଗେ କପିଳାସ ନାମ ।
କୋଟିଏ ସ୍ୱର୍ଗରୁ ଶ୍ରେଷ୍ଠ କପିଳାସ ଭୂମି
ଭଜେ କରିଛନ୍ତି ଯହିଁ ସଦାନନ୍ଦ ସ୍ୱାମୀ ।
ଅଛନ୍ତି ଚଉଦକୋଟି ଶିବ ତଉପାଶେ
କ୍ରୀଡ଼ା କରନ୍ତି ସେ ଯୋଗପଥେ ନାନାରସେ
ସର୍ଜନା କରନ୍ତି ବିଶ୍ୱକର୍ମା ତହିଁ ବସି
ତହିଁ ଭଜେ କରିଛନ୍ତି ଦେବ କାଶୀବାସୀ ।
ସେ ପୁର ମହିମା କେତେ କହିବ କେ ବସ
ଜନମ ମରଣ ବାଧା ନ ଲାଗଇ ଲେଶ ।
କୈଳାସ କନ୍ଦରେ କଂସ ଯାଉଥିଲା ପଶି
ଦେଖି ରୁଦ୍ରଗଣେ ଆଗେ ଓଗାଳିଲେ ଆସି ।
ଧାଇଁଲେ ବହୁତ ବଳ ଦେଖି ଯୋଗିବଳ
ହସ୍ତେ ଭୈରବ ଜଟାର ଡମ୍ବରୁ ତ୍ରିଶୂଳ ।
ଧାମନ୍ତି ସେ ସିଂହନାଦ କରି ରୋଷଭରେ
ଯାଇଁ ପ୍ରବେଶ ହୋଇଲେ କଂସର ଗୁମ୍ଫରେ ।
ବିଭୂତି ଭୂଷଣ ଅଙ୍ଗେ ଶିରେ ଦିବ୍ୟଜଟା
ଖେତଧ ଭୂତର ମିଳ ନାଚନ୍ତି ଖେମଟା ।
ସଇନ୍ୟ ଗହଳ ଦେଖି ଆସନ୍ତି ସେ ଧାଇଁ
କଂସ ଅସୁରକୁ ବାଟେ ଓଗାଳିଲେ ଯାଇଁ ।
ଦେଖି କଂସରାୟେ ତାଙ୍କୁ ପଚାରିଲା ବେଗେ
ତପସ୍ୱୀ ଲୁଚିଏ ଆସି ଓଗାଳନ୍ତି ଆଗେ ।
ଦାନ ଯେଣିବାକୁ ଏବା ଅଛନ୍ତି ସେ ଆସି
ଯାଆନ୍ତ ପଚାର କିସ କହନ୍ତି ତପସ୍ୱୀ ।
କେଶୀ ବୋଇଲା ସେବେଦେବ ଶୁଣ ଉଗ୍ରସେନ
କାଳୁଆ ବ୍ରାହ୍ମଣ ଜାଣ ନୁହନ୍ତି ଏ ପୁଣି ।
ଈଶ୍ୱରଙ୍କ ଗଣପୁର କପିଳାସେ ଥାନ୍ତି
କୋଟି ଚନ୍ଦ୍ରଗଲେ ତିଳ ପର୍ଯ୍ୟ ମଣନ୍ତି ।
ପ୍ରଳୟ କାଳରେ ନାହିଁ ଏମାନଙ୍କ ମୃତ୍ୟୁ
ଅମର ମହାତ୍ମା ଏ ଯେ ଜାଣି ଦେବତଲ୍ଲୁ ।
ଜନମ ମରଣ ବାଧା ଏହୁଁ ନ ଜାଣନ୍ତି
ପୂର୍ଣ୍ଣବ୍ରହ୍ମରୂପୀ ଏ ଯେ ସଦା ଜୀଉଛନ୍ତି ।
ଭୁମ୍ବଦାନକୁ ଯେ ନାହିଁ ଏହାଙ୍କର ଆଶ
ଏହାଙ୍କ ବିବସେ ସ୍ୱର୍ଗେ ଇନ୍ଦ୍ର ଯାଇ ନାଶ ।

ଏହି ସିନା ରୁଦ୍ରଗଣ ଜାଣ ଦଣ୍ଡଧାରୀ
ଏମାନେ ଯୁଦ୍ଧ କରନ୍ତି ଇନ୍ଦ୍ର ସମସରୀ ।
ତପେ ଗରିଷ୍ଠ ଏମାନେ ବଳିଷ୍ଠ ସ୍ୱଭାବେ
ଏହାଙ୍କ ସଙ୍ଗତେ ଦ୍ୱନ୍ଦ କରିବା କି ଆମ୍ଭେ ।
ଏଥେ ଅମରିଷ କଲେ ଅପଯଶ ପାଇବା
ତପିଙ୍କି ଯେ ଦ୍ରୋହକଲେ ସମସ୍ତେ ମରିବା ।
ବଡ଼ ପଣରେ ନିନ୍ଦନ୍ତି ଏହାଙ୍କୁ ଯେ ଅବା
ତାଙ୍କ ମରଣେ ସଂଶୟ ନାହିଁ କି ଦେଖିବା ।
କେଶୀ କହିଲକ ଯହୁଁ ଏସନକ ବାଣୀ
ପର୍ବତକୁ ନମସ୍କାରି କଂସ କଲା ଶୁଣି ।
କେଶୀ ବୋଇଲା ହେ ଆଣ ବାହୁଡ଼ାଇ ଥାଟ
ଯୋଗୀ ସନ୍ନ୍ୟାସୀ ସଙ୍ଗେ କି କରିବା ମୁରାଟ
ଈଶ୍ୱର ଦେବତା ସଙ୍ଗେ କର୍ପ । ଆମ୍ଭ କଳ
ଯାହାର ବଚନେ ତଥ୍ୟତର ଯାଇ ଜଳ ।
ଜଳନ୍ତା ଅନଳେ ପଶି ଝାସ କସ ଦେବ
ସେ ତ ଅନୁଗ୍ରହ କଲେ ଅଜାମର ହେବ ।
ତାହାଙ୍କ ସଙ୍ଗତେ କମ୍ପା ଆମ୍ଭ କଳିହନ୍ଦ
ବାହୁଡ଼ ନ ଗଲେ ଲୋକେ ବୋଲିବେ ତ ମନ୍ଦ
ଆମ୍ଭର ସେ ପିତାଗୁରୁ ଆମ୍ଭେ ତାଙ୍କ ଶିଷ୍ୟ
ଆସ୍ତବଳେ ତାଙ୍କୁ କରି ପାରିବା କି କିସ ।
ଦେଖୁଁ ଦେଖୁଁ କେ ଦୁସ୍ତର ସମୁଦ୍ର ଲଙ୍ଘିବ
ନିର୍ଧୂମ ଅଗ୍ନିରେ ପଶି କେହୁ ଝାସଦେବ ।
ଏତେ ବଡ଼ପଣ କାର୍ଯ୍ୟ ଆମ୍ଭରତ ନାହିଁ
ବେଢ଼ା ବୁଲିଯିବା ସୈନ୍ୟ ଆଣ ବାହୁଡ଼ାଇ ।
କଂସକୁ ଘେନିଣ କେଶୀ ବେଗହୋଇ ଗଲା
ସୈନ୍ୟଙ୍କୁ ଲେଉଟାଇ ସେ ବାଟ ଭାଙ୍ଗି ଦେଲା
କପିଳାସ ଗୁଡ଼ ବାଳଗଡ଼ିତଲେ ଗଲେ
ତହୁଁ ବିସର୍ଜନ ନଦୀ କୂଳରେ ମିଳଲେ ।
ତହିଁ ଚହିଣୀ ନାମରେ ବହେ ନଦୀ ଗୋଟି
ନୈର୍ଋତ କୋଣୁ ଦକ୍ଷିଣ ସମୁଦ୍ରେ ସେ ପୁଟି ।
ସେ ନଦୀର କୂଳରେ ଯେ କେହି ନ ରହିଲେ
ନୈର୍ଋତ ଗୁଡ଼ ଦକ୍ଷିଣମୁଖ ହୋଇ ଗଲେ ।
ମେରୁର ଦକ୍ଷିଣ ଭାଗେ ସଇନ ଚଳାଇ
ଝଗଡ଼ଜେ ବଣ ଚଳେ କଂସ ଭୋଜସାଇଁ ।
ପାତାଳେ ବାସୁକୀ ନାଗ କମ୍ପେ ପାଦଭରେ
ରାଜାଏ ଆସି ଶରଣ ପଶୁଛନ୍ତି ଡରେ ।

କେ ଗଜ ତୁରଗ କେହୁ ରଥନ୍ତ ଯୁବତୀ
କେଉଁ ରାଜା ଦଣ୍ଡ ସିଂହାସନ ଆଣିଦ୍ୟନ୍ତି ।
ଅନେକ ସମ୍ଭାରେ ଚଳେ ଉଗ୍ରସେନ ବତ୍ସ
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ କେ ନାହିଁ ସମକକ୍ଷ ।
ହରଷେ ବଳ ତାହାର ଯାନ୍ତି ଅତିବେଗେ ।
ତୁରିତେ ମିଳଲେ ଯାଇଁ ବିନ୍ଧ୍ୟଗିରି ଲଗେ
କଂସ ବୋଇଲା ହେ କେଶୀ କାହାର ଏ ସୀମା
କେଶୀ ବୋଇଲା ଅଛନ୍ତି ଏଥେ ଦେବୀ ଉମା
ସତ୍ୟେ ଚଣ୍ଡମୁଣ୍ଡ ରକ୍ତବୀଜ ନାଶ କଲେ
ମହିଷାସୁରର ଦର୍ପ ଏ ଦେବୀ ମର୍ଦ୍ଦିଲେ ।
ଶୁମ୍ଭ ନିଶୁମ୍ଭ ଆଦି ଯେ ସମର ଦେମାଳ
ଏ ଆଦି ବହୁତ ଥିଲେ ନିଶାଚର ବଳ ।
ପୃଥ୍ୱୀଭାରର ଅବହେଳେ ଏ ସଂହାରି
ରହିଲେ ଏ ବିନ୍ଧ୍ୟଗିରିଶିଖେ ମାହେଶ୍ୱରୀ ।
ଅନାଦି ଅପର୍ଣ୍ଣା ଏ ଯେ ଜଗତର ମାତା
ଏହାଙ୍କରେ ଏ ସଂସାର ହୋଇଲା ରକ୍ଷିତା
ଭାବେଣ ସଦାଶିବଙ୍କୁ ବରି ଦକ୍ଷଘର
ତେଣୁକରି ବୋଲାଇଲେ ଭବାନୀଶଙ୍କର ।
ଏ ମେରୁ ମେଖଳ ଅଟେ ଏହାଙ୍କ ଆଶ୍ରମ
ମହିଷାକୁ ମାରି କଲେ ଏଠାରେ ବିଶ୍ରାମ ।
ବିନ୍ଧ୍ୟ ନାମରେ ଦଇତ୍ୟ ପୂର୍ବେ ଏଥେ ଥିଲା
ଦୁର୍ଗାଙ୍କ ସଙ୍ଗେ ସମର କରି ସେହି ମଲା ।
ବିନ୍ଧ୍ୟଦୈତ୍ୟକୁ ମାଇଲେ ସେହି ଦେବୀ ଯହୁଁ
ବିନ୍ଧ୍ୟଗିରିନିବାସିନୀ ବୋଲାଇଲେ ତହୁଁ ।
ଏଯେ ଅନାଦିଶକ୍ତି କଲେ ସବୁ ଜାତ
ସର୍ବ ଦେବତାଙ୍କର ଏ ଅଟନ୍ତି ଯେ ମାତ ।
ଈଶ୍ୱରଙ୍କୁ ଭାବେ ଯହୁଁ କଲେ ସେହି ଭର୍ତ୍ତା
ତେଣୁ ସେହି ମହାଦେବ ଜଗତକର୍ତ୍ତା ।
ମେରୁମେଖଳ ଅଟଇ ଏହାଙ୍କର ସୀମା
ଦୈତ୍ୟଙ୍କୁ ମାରି ଏଠାରେ ରହିଲେ ସେ ଉମା
ଏହିଠାରେ ଆମ୍ଭେ ଆଜ ତେଣିକି ନ ଯିବା
ଏଠାରୁ ତେଣିକି ଗଲେ ସମସ୍ତେ ମରିବା ।
ମହଗଣେ ଦେବୀଙ୍କ ଯେ କରିବ କଟାଳ
ସବୁଙ୍କର ଏହିଠାରେ ପୂରିବଟି କାଳ ।
କଂସବୋଲେ କେଶୀ ଯେବେ ଏ କଥା ପ୍ରମାଣ
ଆପଣେ ଯାଇ ମୋ ସୈନ୍ୟ ବାହୁଡ଼ାଇ ଆଣ

ଦେବାଙ୍କ ସଙ୍ଗେ ଆମ୍ଭର କିସ ଅବା ଦ୍ୱନ୍ଦ
ଏତେବେଳେ ଯଶ ନାଶି ବୋଲାଇବ ମନ୍ଦ ।
କଂସର ବଚନେ ସେହି କେଶୀ ବୀର ଗଲା
ସଇନ ଘେନି ମନ୍ଦର ପର୍ବତେ ମିଳିଲା ।
ପୂର୍ବ ଅଭିମୁଖେ ଚତୁରଙ୍ଗ ଦଳ ଚଳିଗଲେ
ମନ୍ଦର ପର୍ବତେ ଯାଇଁ ସେଠାରେ ରହିଲେ ।
ହାତୀ ରଥୀ ପଦାତିକ ଅଶ୍ୱର ଚହଳ
ଜନୁ ଜନୁ କଂସ ସୈନ୍ୟ ହୋଇଲା ପ୍ରବଳ ।
ଯେବଣ ଠାବରେ କଂସାସୁର ମିଳେ ଯାଇଁ
ସେଦେଶର ସୈନ୍ୟ ତାର ପଛରେ ଗୋଡ଼ାଇ
ସିଂହନାଦ କରି ସର୍ବେ ତୂରୀ ବାଇ
ମନ୍ଦର ପର୍ବତ ସୈନ୍ୟ ଯାଆନ୍ତି ପଳାଇ ।

—✻—

## କଂସ ସଙ୍ଗେ ନିବାତକବଚର ଯୁଦ୍ଧ ଓ ପରାଜୟ

ଏସନ ସମୟେ ବଜ୍ରକବଚର ବାଳ
ନିବାତକବଚ ବୋଲି ତେଜେ ଅନର୍ଗଳ ।
ମୃଗୟାର ବିନୋଦେ ସେ ଆସିଥିଲା ଯୋଗେ
କଂସାସୁର ଥାଟ ଯାଇ ଦେଖିଲା ସେ ଆଗେ ।
ତୂରୀ ବାଜା ବାଜେ ଶବଦ ପ୍ରଚଣ୍ଡ
ବାଜନ୍ତେ କମ୍ପେ ମେଦିନୀ ଯାକ ନବଖଣ୍ଡ ।
ଦେବଗଣ ସହିତରେ କଂସ ସର୍ବଜୟୀ
ତେଣୁ କରି କାହାରିକି ତାର ଭୟ ନାହିଁ ।
ସଂଗ୍ରାମେ ଶକତି ଧୈର୍ଯ୍ୟ ଅଟଇ ପ୍ରବଳ
ନିବାତକବଚ ଶୁଣି ଏସନ ଚହଳ ।
ତୂରୀ ନାଦ ଶୁଣି ଧାଏଁ କୋପ ମୁଖେ
ବଜ୍ର ଗଦା ମୁଦ୍ଗର ଜାକିଅଛି କାଖେ ।
ଗିରିବର ଶିଖେ ଉଠି ଚଳେ ଦେଲା ଦୃଷ୍ଟି
ଆସଇ କଂସ ଅସୁର ଗିରିବନ ଘୋଟି ।
ତଳେ ମଧ୍ୟ ଛଡ଼ା ନାହିଁ ନ ଦିଶଇ ବାଟ ।
ଶତେକପୂର୍ଣ୍ଣ ଗିରି ମାଡ଼ି ଆସୁଛନ୍ତି ଥାଟ ।
ଦେଖୁଁ ଦେଖୁଁ ସୈନ୍ୟ ତାର ନିକଟେ ହୋଇଲା
ତାହା ଦେଖିଣ ଦାନବ କୋପେ ପ୍ରଜ୍ୱଳିଲା ।
ଧାଇଁଲା ଅସୁର ଗଦାବରକୁ ବୁଲାଇ
ବାହା ନାଦ କରି ପୁଣ ପୁଣ ଗରଜଇ ।
ବିକଟ ଅଧରେ ଉଠ ମଠ ଦନ୍ତ ଚାପି
ମନ୍ଦର ଗିରି ପରାୟେ ବଢ଼ି କାମରୂପୀ ।
ଓଗାଳଇ ରହ ରହ ବୋଲି ରୋଷଭରେ
ପ୍ରଚଣ୍ଡ ବହ୍ନିକି ତେଜ ଓଗାଳେ ଆଗରେ ।
ହୁଁକାର ଧ୍ୱନି କରିଣ ଦେଲା ସିଂହ ରଡ଼ି
ଏକାବେଳେ ପଡ଼େ ସତେ ମେରୁଶୃଙ୍ଗ ଝଡ଼ି ।
ପାଦଘାତେ କମ୍ପଇ ଯେ ଦେବୀ ମହୀସ୍ଥଳୀ
ସୈନ୍ୟ ଓଗାଳି ଗର୍ଜଇ କୋପେ ମହାବଳୀ ।
ବନ୍ଧ ଭଙ୍ଗିଲେ ଯେସନେ ସ୍ରୁଅ ବଢ଼ି ପାଣି
ସେହିପରି ଧାଇଁଲା ସେ ଦୈତ୍ୟକୁଳମଣି ।
ବ୍ୟାଘ୍ର ଦେଖି ଛେଳିପଲ ଯେସନ କାତର
ଚଳି ନ ପାରି ରହନ୍ତି ହୋଇ ପଛଭର ।
ସେତୁବନ୍ଧ ପ୍ରମାଣେ ସେ ଓଗାଳିଛି ପଥ
ବାଟ ନ ପାଇ ସଇନ୍ୟ ଭୟରେ ନିଶତ ।
କୋପାନଳ ହୋଇ ଉଗ୍ରସେନର ନନ୍ଦନ
କେଶୀକି ଚାହିଁ ବୋଲଇ ଏସନ ବଚନ ।
ଆଗୁଆଣି ଦଣ୍ଡ ମୋର ନ ଚଳେ କିପାଇଁ ।
ଯେବଣ ବୀର ଆସିଣ ବାଟ ଓଗାଳଇ ।
କେଶୀ ଜଣାଇଲା ଆଗେ କରପଦ୍ମ ଯୋଡ଼ି
ବୀରେକ ଓଗାଳି ସୈନ୍ୟ ନ ଦିଅଇ ଛାଡ଼ି ।
ହିରଣ୍ୟକବଚ ବୋଲି ଏକଇ ଦଇତ
ନିବାତକବଚ ବୋଲି ଏ ତାହାର ସୁତ ।
ଶୂରବର ଶକତି ସେ ରଣେ ରଣରଙ୍କା
ବ୍ରହ୍ମା ବିଷ୍ଣୁ ଶଙ୍କରଙ୍କୁ ନ କରଇ ଶଙ୍କା ।
ତିନିପୁର ମଧ୍ୟେ ତାକୁ ଜିଣନ୍ତା କେ ନାହିଁ
ମୃଗୟା ବିନୋଦେ ଆସିଥିଲା ଏକା ହୋଇ
ଅସୁର କାମରୂପୀ ସେ ଜାଣେ ନାନା ମାୟା
ମନ୍ଦରଗିରି ପ୍ରମାଣେ ବଢ଼ାଇଛି କାୟା ।
ସେହି ବୀର ଗୋଟା ଆସି ଓଗାଳିଛି ଆଗେ
ମାନବ ଥାଟ ଦେଖିଣ ଧାମଇଁ ସେ ବେଗେ
କେଶୀର ବଚନେ କଂସ କହେ ଶିର ଧୁଣି
ଉପହାସ କଥା ମୋତେ କହୁଛୁ ନ ଜାଣି ।
ସଂଗ୍ରାମେ ଶକତି ତୁହି ଅଟୁ ମହାବଳ
ଏକା ଜଣକୁ ଦେଖିଣ ହେଉଛୁ ବିକଳ ।
ତୁମ୍ଭର ବଳ ପ୍ରାକ୍ରମ ତୁମ୍ଭେ ଭଲେ ଜାଣ
ତୁମ୍ଭର ତୁଣ୍ଡେ କିପାଇଁ ଏସନ ବଖାଣ ।

କୋଟିଏ ଇନ୍ଦ୍ରକୁ ତୁମ୍ଭେ କରିପାର ଜୟ
ତୁମ୍ଭ ଭଳ ଲୋକ ତାଙ୍କୁ କରୁଅଛ ଭୟ ।
ତୁମ୍ଭଙ୍କ କ ଜଣିପାରେ ଜଣେ ମାତ୍ର ସେହି
ମୋହର ମନକୁ ଏହା ପ୍ରତେ ଯାଉନାହିଁ ।
ସୂ ଚୀମୁନେ କେହୁ ଅବା ପର୍ବତ ଟାଳବ
ହସ୍ତେ କେ ଅବା ସମୁଦ୍ରେ ତୁଙ୍ଗର ବାନ୍ଧବ ।
ସୂର୍ଯ୍ୟର କରଣ କେହୁ ଉହାଡ଼କ ହସ୍ତେ
ବସୁନ୍ଧର ଗ୍ରୁଡ଼ଲେ କ ବହବ କେ ମାଥେ ।
ଏକାଂଜଣକେ ଜଣିବ କେହୁ ଏହବଳ
ଏକଜଣ ଦେଖି ତୁମ୍ଭେ ହୋଇଲ ନବଳ ।
ଆହେ। ସାର କେଶୀ ତୁମ୍ଭେ ଶୁଣ ଆମ୍ଭ ବାଣୀ
ଅଷ୍ଟମଲ୍ଲ ସଙ୍ଗେ ଘେନ ଯୁଦ୍ଧ କର ପୁଣି ।
ସେ ମୋର ଶତ୍ରୁ ଓଗାଳ ଯାଇ ତାଙ୍କୁ ଆଗେ
ଜୀବନ୍ତା ଧର ତାହାଙ୍କୁ ଘେନଆସ ବେଗେ ।
ଏସନକ ଆଜ୍ଞା ତାଙ୍କୁ ଦେଲ କଂସାସୁର
ଅଷ୍ଟମଲ୍ଲ ଘେନ କେଶୀ ଧାଏଁ ଆଗୁ ସାର ।
ପଛରେ ଗୋଡ଼ାଇଛନ୍ତ ସକଳ ସଇନ୍ୟେ
ଧାମନ୍ତ ଗର୍ଜନ କର ସେନାପତିମାନେ ।
ମାର ମାର ଧର ଧର ଡାକ ଉଚ୍ଚସ୍ୱରେ
ଧାମନ୍ତ ଯେ ଏକମୁଖ ହୋଇ କୋପଭରେ ।
କରେ ଶସ୍ତ୍ର ଘେନ ସାର ଏକମୁଖ ହୋଇ
ଗଦା କୁନ୍ତ ମୁଦୁଗର ମାରନ୍ତ ଚୁହାଇ ।
ଢେଲ ତଦ୍ଦ କାତ୍ତ ଶକ୍ତି ସାବେଳ ପରିଘ
ରାକ୍ଷସକୁ ମାରନ୍ତ ସେ ବେଢ଼ି ବେଗେ ବେଗ
ଏକା ନବାତକବଚ ରହିଅଛି ଆଗେ
ସକଳେ ଶସ୍ତ୍ର ଧରଣ ମାରୁଛନ୍ତ ରାଗେ ।
କେହି ଶସ୍ତ୍ର ଗ୍ରୁଡ଼ କେହି ମାରେ ବଜ୍ରମୁଷ୍ଟି
ଦାନବ ଶରୀରେ ବାଜ ଅଗ୍ନି ଜଳ ଉଠି ।
ଅନେକ ରାଜାଙ୍କ ସୈନ୍ୟ ଚତୁରଙ୍ଗ ବଳ
ପର୍ବତ ଉପରୁ ପଡ଼େ ଯେସ୍ନେ ଜଳଧାର ।
ତେସନ ସଂଜାତ ଶସ୍ତ୍ର ମାରବାରୁ ବେଢ଼ି
ନବାତକବଚ ଏକା ଯୁଦ୍ଧେ ଆଗବଢ଼ି ।
ତା ଶରୀରେ ବାଣମାନ ପଡ଼ି ଝମକନ୍ତ
କୋପଭର ହୋଇ ଧାଇଁ ଯାଇଁ ମହାରଥୀ ।
ବଜ୍ରତୁଣ୍ଡ ଆଣ୍ଠ ଅଟଇ ଅସୁରର ଦେହୀ
ମୁନ ମୋଡ଼ ହୋଇ ଶସ୍ତ୍ର ଭୂମିରେ ପଡ଼ଇ ।

ରଥୀ ମହାରଥୀ ଯୋଦ୍ଧା ଅନେକ ଯେ ଥିଲେ
କେହି କେହି ଶରମାନ ଯୋଗ ପ୍ରହାରିଲେ ।
କୌଣସି ପ୍ରକାରେ କର ନ ପାରିଲେ ଜୟ
ଅଷ୍ଟମଲ୍ଲ ଦେଖି ତାଙ୍କୁ କଲେ ମହାଭୟ ।
ମନେ ବସ୍ମରନ୍ତ ଏଥେ କରିବା କ ବୁଦ୍ଧି
ଦୁର୍ବାର ଦାନବ ଏହୁ ଉଣେ ନୋହେ ସାଧି
ଯୁଦ୍ଧକୁ ନ ଜଣିଲେ ଲୋକେ ପାଇବା ନା ଲଜ
ପାଇ ଅପକୀର୍ତ୍ତି ନାଶ ଯିବ ବଳବୀର୍ଯ୍ୟ ।
କଂସରାଜା ମୁଖ ଆମ୍ଭେ ଗ୍ରହିବା କେମନ୍ତେ
ଧିକ ଧିକ ଶବଦତ ଶୁଭିବ ଜଗତେ ।
କେଶୀ ବୋଲେ ଆସ ଭଲ ଘଡ଼ଏ ଲଗିବା
ଶକଟାସୁର ବୋଇଲ ସମର ଭଙ୍ଗିବା ।
ଯାମଳା ବୋଇଲ ତୁମ୍ଭେ ନ ଜାଣ ହୋ କଛୁ
ନ ପାରିଲେ ଭଙ୍ଗିଯିବା କସ ଭୟ ଅଛୁ ।
ଜୟ ଅପଜୟ ଦେନ କ୍ଷତ୍ରିଙ୍କର କଥା
ଏଥକୁ କପାଇଁ ମନେ ଭାଳୁଅଛ ବୃଥା ।
ଅନୁକ୍ଷଣେ ପ୍ରାଣୀଙ୍କି କ ମିଳୁଥାଏ ଯଶ
ବ୍ରହ୍ମା ଇନ୍ଦ୍ର ପଦ ଗଲ କରିବ ସେ କସ ।
ଯେବଣ କାଳରେ ବ୍ରହ୍ମା ସୃଷ୍ଟି କଆଇଲ
ଲଭ ପାଖେ ହାନ ପାଖେ ନେଇଣ ଥୋଇଲ
ଗର୍ବେକ ହୋଇଲେ ପୁଣି ହୁଏ ବବେକ
ବବେକ ଥିବା ଲୋକର ଆସେ ଅବବେକ ।
ଦୃଷ୍ଟି ଏକ ହୋଇଲେ ଯେ ଗୁରୁଷେ ହୁଅଇ
ଏସନ ପ୍ରକାରେ ବହୁ ଲହ ଯେ ଅଛଇ ।
ପୁଣ୍ୟ ଏକ ହୋଇଲେ ଯେ ପାପେକ ହୁଅଇ
ଆପଣାର ସତ୍ୟ ଥିଲେ ଧର୍ମ ଉପୁଜଇ ।
ସଂସାର ସାଗର ଗୋଟା ଅଟଇ ଅନିତ୍ୟ
ବଢ଼ଇ ଛୁଡ଼ଇ ପୁଣି ଚନ୍ଦ୍ରଜ୍ୟୋତି ବତ ।
କ୍ଷତ୍ରିମାନଙ୍କର ଜାଣ ଏସନକ ଭାବ
ହାରିବା ଜଣିବା ଦୁଇ କ୍ଷତ୍ରିର ସ୍ୱଭାବ ।
ଯୁଆ ଯୁଦ୍ଧ କଳ ଦ୍ୱନ୍ଦ ଆଦ ଖଡ଼ ପୀଡ଼
ପଶାପାଲି ଚଉସାର କାଠି ବାକ୍ୟ ଦୃଢ଼ ।
ଏତେକ କଥାରେ ଲୋକ ପୀଡ଼ ବସାଇଲେ
ଅବଶ୍ୟ ଜଣେ ଏଥିରେ ହାରିବ ନା ଭଲେ
ଏଥକୁ ଯେ ମାନକଲେ ଧର୍ମ ହୋଏ ନାଶ
ପାରି ବା ନ ପାରି ଥରେ ଲଗିବା ହେ ଆସ

ଏତେ ବୋଲି ଆଠେ ଯଣେ ବାହାନାଦ କରି
ଦାନବ ଦେହେ ପିଟିଲେ ଗଦା କରେ ଧରି ।
ଯେସନେ ପକ୍ଷୀ ଉଡ଼ନ୍ତି ଗଗନର ମାର୍ଗେ
ଆଣ୍ଠେ ସେ ଗଦା ପିଟିଲେ ପବନଠୁଁ ବେଗେ
ଅଷ୍ଟମଲ୍ଲଙ୍କର ରୂପ ଦେଖି ଅସମ୍ଭବ
ନାସିକାରେ ହସ୍ତଦେଇ ହସିଲା ଦାନବ ।
ଏମନ୍ତ ଜନ୍ତୁ ଉପୁଜ ରହିଥିଲ କାହିଁ
ଜନ୍ମଠୁଁ ଏମନ୍ତ ରୂପ ମୋର ଦେଖା ନାହିଁ ।
ସଂଗ୍ରାମ କରିବା ପାଇଁ ତୁଅ ସମସରି
କସ ଜୀବନ ଭୁସ୍ତର ଆଜ ନେବ ଧରି ।
ଏତେବୋଲି ସେ ଦାନବ ଦ୍ରୁହସିତ ହେଲା
ବାମକରେ ଆକର୍ଷି ସେ ଆଠଙ୍କୁ ଧଇଲା ।
କଇବର୍ତ୍ତ ଯେସନେକ ଗୃହ୍ନେ ମୀନ ଲେନ୍ତା
କେଶକୁ କେଶ ଧରିଣ ଛନ୍ଦେ ବଳବନ୍ତା ।
ଅଷ୍ଟମଲ୍ଲଙ୍କୁ ଘେନଣ ଯାଏ ଧୀରେ ଧୀରେ
ଦେଖିଣ ସକଳ ସୈନ୍ୟ ରହିଲେ କାତରେ ।
ବସୁଦେବ ଅନାଧୃଷ୍ଟ ସାତ୍ୟକ ଉଦ୍ଧବ
ଅକ୍ରୂର ସହାଜିତ ଏ ଯେତେକ ଯାଦବ ।
ସବୁ ରାଜାଙ୍କର ଥିଲେ ଯେତେକ ସଇନ୍ୟ
ସେମାନଙ୍କୁ ସଙ୍ଗେ ଘେନି କରନ୍ତି ସଂଗ୍ରାମ ।
ଜୀବନ ନିଆଶାରେ ସେ ବହୁତ ଯୁଝିଲେ
ଶସ୍ତ୍ର ନ କାଟିବା ଦେଖି ଅପସରି ଗଲେ ।
ଅଷ୍ଟମଲ୍ଲ କେଶଧରି ନବାତକବଚ
ଅବହେଳେ ଚଳେ ଦେହ ହଶଇ ସୁସଞ୍ଜ ।
ବଜ୍ରରେ ଯେହ୍ନେ ପର୍ବତମାଳ ଯାନ୍ତି ଛୁଡ଼ି
ଡରେ ସକଳ ସଇନ ପଳାଇଲେ ଘୁଡ଼ି ।
ଘୁମୁରେ ତାହାର କେହି ରହନ୍ତା ସେ ନାହିଁ
ସଧୀରେ ସଧୀରେ ବୀର ଘରକୁ ଗମଇ ।
କଂସ ଘୁମୁରେ ସାତ୍ୟକ ଯାଇଁ ଜଣାଇଲା
କର ଦୁଇକ ଯୋଡ଼ିଣ ବିନୟୀ କହିଲା ।
ନବାତକବଚ ନେଲା ଅଷ୍ଟମଲ୍ଲ ଧରି
ଥାଟଯାକ ଖର୍ଙ୍ଗ ଡରେ ଗଲେ ଅପସରି ।
ଯେସନେକ କଇବର୍ତ୍ତ ଗୃହ୍ନେ ମୀନଜାଲ
ସେସନ ପ୍ରକାରେ ଅଷ୍ଟମଲ୍ଲଙ୍କର ହାଲ ।
ଧରି ମେରୁପ୍ରାୟେ ଦୈତ୍ୟ ଯାଉଅଛି ମାଡ଼ି
ସମସ୍ତେ ପଳାଇଗଲେ ଶସ୍ତ୍ରମାନ ଛାଡ଼ି ।

ଘୁମୁରେ ତାହାର କେହି ରହନ୍ତା ସେ ନାହିଁ
କାଳ ଦେବତା ପରାୟେ ଆସୁଅଛି ଧାଇଁ ।
କେବଣ ବସ୍ତୁର ଭେବ କରିବା ଏଥିକି
ଏତେକ ବୋଲି ମଉନ ହୋଇଲେ ସାତ୍ୟକି
ଏସନ ଶୁଣିଣ କୋପେ କଂସାସୁର ରାୟେ
ପବନଠର ଉମ୍ଭାପ୍ରାୟେ କମ୍ପାଇ ତା କାୟେ ।
ଧାମଇ ଅଧରେ ଦନ୍ତସ୍ଥିପି ରୋଷଭରେ
ମତ୍ତବ୍ୟାଘ୍ର ଧାମଇ କି ମୃଗଳ ପଲରେ ।
ସାରଥିକି ପୃଚ୍ଛିଲା ସେ କଂସାସୁର ବୀର
ଦୈତ୍ୟ ଘୁମ୍ଭକୁ ରେ ମୋର ବାହ ରଥବର
ଦେଖିବାନା ସେହି କେତେ ଅଟେ ବଳୀୟାର
ସଂଗ୍ରାମ ହୋଇବ ଆଜ ତାହାର ମୋହର ।
ଯେବଣହିଁ ଅଷ୍ଟମଲ୍ଲ ମୋର ପ୍ରାଣସଖା
କେ ତାଙ୍କୁ ଧରି ନେଉଛି ମୋତେ ତାକୁ ଦେଖା
ସେମାନେ ମୋର ଜୀବନ୍ତା ବନ୍ଦୀହେଲେ ଆଜ
ତାଙ୍କ ଅଭାବେ ମୋର ଏ ଜୀବନେ କି କାର୍ଯ୍ୟ
କେ ତାଙ୍କୁ ଧରି ଆଜରେ ବନ୍ଧକଲା ପୁଣି
ତାକୁ ନେଇ ମୋତେ ବେଗେ ଭେଟା ଏହିକ୍ଷଣି
ଶୁଣି ସାରଥି ବାହିଲା ରଥ ଘୋଡା ବେଗେ
ନେଇ ଭେଟାଏ ନବାତକବଚର ଆଗେ ।
ବେନବୀର ଏକମୁଖେ ହୋଇଲେକ ଭେଟ
କେତୁ ମଙ୍ଗଳ ଯେସନେ ମେରୁର ନିକଟ ।
ଅଷ୍ଟମଲ୍ଲଙ୍କ ଦୁର୍ଦ୍ଦଶା କଂସରାଜା ଦେଖି
ସହସ୍ରେ ବାଣ ମାଇଲା ଉପ୍ରୋଧ ଉପେକ୍ଷି ।
କଙ୍କପକ୍ଷମନ୍ଦା ବାଣ କଂସହସ୍ତେ ଘେନ
ମନ୍ତ୍ର ପଢ଼ିଣ ସନ୍ଧାନ କଲା ଉଗ୍ରସେନ ।
ପୁଣି କୋଡ଼ିଏ ନାରଚ ଗୁଣରେ ବସାଇ
ଦାନବର ଉପରକୁ ଛନ୍ଦିଲା ନଠାଇ ।
ଦେବଶର ମାଇଲା ସେ ଘେନ ଅତିବେଗେ
ମାଇଲା ସେ ବାଣ ଅଷ୍ଟମଲ୍ଲଙ୍କର ରାଗେ ।
ପେଷଇ ଅନକାରଣ ଶର କଂସାସୁର
ଦକ୍ଷିଣ ଭୁଜେ ଧରେ ତା ଆଗସରି ବୀର ।
ବଗଣ୍ଡି ଭୁଜେ ଧରିଣ ମସିଗୁଣ୍ଡା କରି
ପାଟି ବସ୍ତ୍ରାରି ଗର୍ଭକୁ ଦେଲା ଦୈତ୍ୟ ଭରି ।
ତାହା ଦେଖି କଂସ କୋପେ ଅନ୍ତରାଳ ହୋଇ
ବାବନ ଶତେକ ଶର ଗୁଣରେ ବସାଇ ।

ମନ୍ତ୍ରି ନାରାଚ ପେଷିଲ ଗଜ ଶୂନ୍ୟପଥେ
ପଡ଼ିଲେକ ବାଣ ଯାଇ ଦୈତ୍ୟ ବାମହସ୍ତେ ।
ବାମଅଙ୍ଗେ ପଶୁଁ ସେହି ନାରାଚ ବାଜିଲା
ବ୍ୟଥାପାଇ ଦୈତ୍ୟ ଅଷ୍ଟମଲ୍ଲଙ୍କୁ ଛାଡ଼ିଲା ।
ବନ୍ଦୀରୁ ମୁକତ ପଛୁଁ ହେଲେ ଅଷ୍ଟମଲ୍ଲ
ଗତ ଆତ୍ମା ପାଇଣ ସେ ବୃଦ୍ଧି ବଳ ବଳ ।
ତହୁଁ ଯାଇଁ ମିଳିଲେ ସେ କଂସର ଆଗରେ
ଧାଇଁଲେକ ଏକମେଳ ହୋଇ ବେଗଭରେ ।
ଏସନ ଯୁଦ୍ଧ ଦେଖିଣ ସୈନ୍ୟ ଗଲେ ଧାଇଁ
ଶେଲ ଚକ୍ର ଗଦାକୁନ୍ତ ପ୍ରହାରିଲେ ନେଇ
ଯେବଣ କଂସକୁ ଭୟ ପାଇ ସ୍ୱର୍ଗବାସୀ
ପୂର୍ବେ କାଳନେମୀ ଜନ୍ମ ହୋଇଅଛି ଆସି ।
ଅଷ୍ଟମଲ୍ଲେ ସେ ନବାତକବଚ ଧଇଲେ
କଠୋର ମାଡ଼ ତାହାକୁ ଅନେକ ମାଇଲେ ।
ବୁକୁ ବିଦାରିଣ କଟି ବସ୍ତ୍ରାରିଣ ଧରି
କେଶଧରି ପକାଇଲେ ତଳେ ଝିଙ୍କି କରି
କେଶକୁ ଧରିଣ କେହୁ ଓଟାରି ମାଇଲେ
ତଳେ ପକାଇଣ କେହୁ ମାଡ଼ିଣ ବସିଲେ
କେହୁ କନ୍ଧେ କେହୁ ମୁଣ୍ଡେ ବସିଲେକ ଯାଇ
ବୁକୁ ବିଦାରି ପାଟିରେ ହସ୍ତକୁ ପୂରାଇ ।
କେହୁ ବିଦାରି ପକାନ୍ତି ଦାନବର ପିଣ୍ଡ
ସାତ ପାଞ୍ଚ ଘୋଷାରନ୍ତି ଧରି ପିଣ୍ଡ ଖଣ୍ଡ ।
ସକଳ ଯାଦବ ଶସ୍ତ୍ର ଧରିଣ ମାରନ୍ତି
କେ କୁନ୍ତ ସାବେଳ କେହି ଖଡ଼ଗ ପ୍ରହାରନ୍ତି ।
ମୁଖମାଡ଼ ପଡ଼ିଲ ସେ ଅସାଷ୍ଟମ ହୋଇ
ହିଙ୍ଗୁଳ ପର୍ବତ ଜାଣି ଶରୀର ଦିଶଇ ।
ପର୍ବତରୁ ଜଳ ଗଡ଼େ ବରଷିଲେ ଘନ
ଗିରିଶୃଙ୍ଗ ଫୁଟି ଯେହ୍ନେ ରୁଧିର ତେସନ ।
ମୂର୍ଚ୍ଛାଗତ ହୋଇ ବୀର ପଡ଼ିଲା ଭୂମିରେ
କେବଳ ନିଶ୍ୱାସମାତ୍ର ବହେ ନାସିକାରେ ।
ଅସମ୍ଭବ ସମରତ କଲା ମହାବୀର
ସକଳ ସୈନ୍ୟ ବେଢ଼ିଣ ମାଇଲେ ଅପାର ।
ନବାତକବଚ ପଛୁଁ ଅସାଷ୍ଟମ ହେଲା
କରପଦ ଯୋଡ଼ି କେଶୀ କଂସକୁ କହିଲା ।
ଟେକ ଧରିକ ଏହାକୁ ନେଇ ଯିବା ଗଡ଼େ
କଂସ ବୋଇଲା ଯେ ହେଉ ଧର ତାକୁ ଦୃଢ଼େ

କଂସର ବଚନେ କେଶୀ ଆଦି ଯେ ଧଇଲେ
ବାମହର ଧରି ଟେକ ନେଇ ବସାଇଲେ ।
କେଶୀ ବୋଇଲାରେ ତୋତେ ଠାକୁରଙ୍କ ଦୟା
ଦୃଷ୍ଟିତ ଯିବ ତୁ ଦେଖ କଂସଙ୍କର କାୟା ।
ଦୈତ୍ୟ ବୋଲେ କୃଷ୍ଣ ହସ୍ତେ ମାଡ଼ ଅଛିଖାଇ
ଉଠି ବସିବାକୁ ମୋର ଶକ୍ତି ଆଉ ନାହିଁ ।
ଛଟପଟ ହେଉଛି ମୋ ଜ୍ଞାନ ନାହିଁ କିଛି
କେବଳ ନାସିକା ରନ୍ଧ୍ରେ ପବନ ଯାଉଛି ।
ଖଣ୍ଡ ଖଣ୍ଡ କରି ମୋର ବିଦାରିଛି ଦେହି
ଆୟୁଷ ଥିବାରୁ ସିନା ଜୀବ ଅଛି ରହି ।
ଟେକ କରି ମଥା ମୋର ଟଳ ନ ପାରଇ
ନମସ୍କାର କରିବାକୁ ହସ୍ତ ନ ଚଳଇ ।
କୃଷ୍ଣ ଇଚ୍ଛା ସୁଖେ ଯାହା ତାହା ପାର କରି
ମରଣକୁ ତିଳେ ଡର ନାହିଁନା ମୋହର ।
ବ୍ରହ୍ମା ବିଷ୍ଣୁ ରୁଦ୍ରଆଦି ଯେତେ ଦେବଗଣ
ଛପନ କୋଟି ଯେ ଜୀବଜନ୍ତୁ ଜନମାନ ।
ଦାନବ ରାକ୍ଷସ ଆଦି ଅସୁର ଯେତେକ
ଯୁଦ୍ଧେ ଜିଣିବାକୁ ନାହିଁ କାହାରି ଯେ ଶକ୍ୟ ।
କାହାର ହସ୍ତରେ ମୃତ୍ୟୁ ନାହିଁ ଯେ ମୋହର
ନାହାନ୍ତି ମୋ ଚତୁରଙ୍ଗ ବଳ ଯେ ସଙ୍ଗର ।
ଅସ୍ତ୍ର ଶସ୍ତ୍ର ନ ଥିବାରୁ ଯୁଦ୍ଧରେ ହାରିଲି
କଳପିଯୋଦ୍ଧା ମୁଁ ଆଜ ବ୍ୟୂହରେ ପଡ଼ିଲି ।
ନବାତକବଚ ବୋଲି ନ ଜାଣେକେ ମୋତେ
ଯାର କାଳକେୟଗଣ ବନ୍ଦିତ ଜଗତେ ।
ସେ ବୀରକୁ ବୋଇଲୁ ତୁ ଏମନ୍ତ ବଚନ
ମୋ ଦୃଷ୍ଟିତ ଯିବ କଲେ କଂସ ଦରଶନ ।
ଆଦର କହିଲୁ ମୋତେ କହିବ ପ୍ରଣାମ
ଶୁଣିଲି ସିନା ମୋହର କର୍ମହେଲା ବାମ ।
କଂସରାଜା ଉଠି ତାର ଚରଣେ ଲୋଟିଲା
କଲ୍ୟାଣ କର ଟେକ ରାହୁ ମୂର୍ତ୍ତି ଅଟେ ପିଲା ।
ହାରିବ ଜିଣିବା ଜାଣ ଷତ୍ରିଙ୍କର ବୃତ୍ତି
ନବାତକବଚ ଶୁଣି ହୋଇଲା ତୃପତି ।
ବୋଇଲା କଂସର ମୁଖ ଚାହିଁ କେଶୀବୀର
ମହାବଳୀ ବୀର ନାହିଁ ଏହା ପରକାର ।
ଭାଗ୍ୟବଳେ ଆମ୍ଭେ ସିନା ପାଇଲେକ ଜୟ
ରଣପୁରେ ଏହୁରାଜା ଅଟଇ ଅଜେୟ ।

ଶୁଣି କଂସରାଜା ବସୁ ପୂଜା ବିଧି କଲା
ଅନେକ ପ୍ରବୋଧି ତାଙ୍କୁ ବିନସ୍ଥୀ ହୋଇଲା ।
ମହାତଳକର ଚଢ଼ି ଗଲା ତାର ପୁରେ
କଂସାସୁର ଧ୍ୱସ୍ତ ପୁଣି ଏଥୁ ଅନନ୍ତରେ ।

—✽—

## କଂସର ପୂର୍ବ ଦିଗେ ଯାତ୍ରା

ପୂର୍ବ ଅଭିମୁଖେ ତାର ଚଳାଇଲା ବଳ
ମିଳିଲେ ଯେ ଲବଣୁଙ୍ଗ ପର୍ବତର ତଳ ।
ସେ ପର୍ବତ ତଳେ କଂସରାଜା ବଳ ଥାନ୍ତି
ଦେବ ମାନବ ଦାନବ ସକଳ ସାଧନ୍ତି ।
ଶତ ଇନ୍ଦ୍ର ହେଲେ ତାଙ୍କୁ ଜିଣନ୍ତା କେ ନାହିଁ
ପର୍ବତ ଶୃଙ୍ଗରେ ଥିଲେ ଯେତେ ରାସ୍ତେ ତହିଁ ।
ଉଟରେ ପାଣିଦ୍ରବ୍ୟ ଦେଇ ସନ୍ଧି କଲେ ଆସି
ସନ୍ତୋଷେ କଂସ ତାହାଙ୍କୁ ବଚନେ ଆଶ୍ୱାସି
ଅଦୃଷ୍ଟ ଅଶ୍ରୁତ କଂସ ବିଗଢକେ କଥା
କେହି ଜଣେ ତାର ଆଗେ ନୋହେ ସାମରଥ ।
ମାନବେ ଦୁର୍ଲ୍ଲଭ ସେହି ଦେବେ ଅଗୋଚର
ଏହି କଥା କହିବାକୁ ଶକତି କାହାର ।
ଯେତେ ରାଜ୍ୟ କଂସରାଜ ବିଗଢକେ କଲା
ଖାଲ ଖଣ୍ଡ ଠିକର ଯେ ସମତୁଲ ହେଲା ।
ସାରଦା ଦେବୀ ଯେତେକ କହିଛନ୍ତି ମୋତେ
ତଦନ୍ତ କରି କହିବ ମୁହିଁ ତାହା କେତେ ।
ସାରଦା ମୁଖରୁ ଯେତେ ପ୍ରମାଣ ପାଇଲି
ଠିକ ଠିକ କରି ହରିବଂଶ ବଖାଣିଲି ।
ବୁଦ୍ଧ ଜନମାନଙ୍କର ଚରଣେ ମୋ ଆଶ
ବାଳକ ମତ ମୋହର ନ ଧରିବା ଦୋଷ ।
ବେଦବ୍ୟାସଙ୍କ ନନ୍ଦନ ଶୁକଦେବ ଯତି
ସେ ସିନା ଜାଣନ୍ତି ଏହି ଭୂମିବଂଶ ସ୍ଥିତି ।
ଅକଳିତ ହରିବଂଶ ପୁରାଣ ମହିମା
ତଦନ୍ତ କରି ଜାଣନ୍ତି ଏକା ବେଦବ୍ରହ୍ମା ।
ଏ କଥା ଜାଣି କହିବ କାହାର ସାହସ
ସମସ୍ତେ ତରି ତାରିବା ହରିନାମ ଘୋଷ ।
କହନ୍ତି ଯେ ଇଦଂ ପ୍ରତିବାକ୍ୟ ଶୁକ ଯତି
ଶୁଣ ସାବଧାନେ ଭୁହୋ ପଣ୍ଡୁ ପଣନାତି ।
ଦୁର୍ବାର ଦାନବ ସେହି କଂସ ମହାବୀର
ପୃଥ୍ୱୀ ଦେବୀ ନ ସହଇ ତାର ପାଦଭର ।

ମଧୁକୈଟଭ ତାରକା ଅସୁର ଆଦି ଥିଲେ
ତେତେ ତେତେ ରାଜାମାନେ ବିଗଢ଼କଲେ
ଏପରି ଜଣେତ କେହି ଅସାଧ ନ ଥିଲେ
କେତେକେତେ ରାଜା ଅବା ପୃଥ୍ୱୀରେ ନଥିଲେ
ଦେବ ଦାନବ ମାନବ ଜିଣି ମହାରଣେ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ସମ ନାହିଁ ଜଣେ ।
ଏଡ଼େ ଶକତା ନ ଥିଲେ କେହି ରବିତଳେ
ମେରୁ ପ୍ରଦକ୍ଷିଣ କରି ନଥିଲେ କେ ବଳେ ।
କାଳନେମି ଦୈତ୍ୟ ଅଛି କଂସ ରୂପ ବହି
ତାର ତୁଲେ ସଂଗ୍ରାମ କେ କରିବାକୁ ରହି ।
ଅଟନ୍ତି ଯେବଣ ଅଷ୍ଟମଲ୍ଲେ ତାର ସଖା
କୋଟି ଇନ୍ଦ୍ର ହେଲେ ଜିଣି ପାରନ୍ତି ସେ ଏକା
ସକଳ ରାଜାଏ ଉଠେ ଅଙ୍ଗବଳ ଘେନ
ଖଟିଲେକ ପରସ୍ପର ପଛେ ଉଗ୍ରସେନ ।
ମହା ମହା ରାଜାମାନେ ଦନ୍ତଛନ୍ଦ ଧରି
ପ୍ରାଣଭୟେ ହୋଇଛନ୍ତି କଂସ ପଛୋଆରି ।
ମେରୁର ଉତ୍ତରେ ମାଳ ନିର୍ମଳ ଯେ ଦ୍ୱୀପ
ବେଣୁଦ୍ୱୀପେ ଲକ୍ଷରାଜା ଜ୍ଞାଣାଇଣ ଭୂପ ।
ସନ୍ମାନ ଦେଇ କଂସକୁ କଲେ ସର୍ବେ ପୂଜା
କେହି ଯେ ତାହାର ତୁଲେ ନ କଲେ ତରିଯା
ପ୍ଲକ୍ଷଦ୍ୱୀପ କୁଶଦ୍ୱୀପ ମେରୁର ପଶ୍ଚିମେ
ଇକ୍ଷୁ ମଧୁ ସମୁଦ୍ର ସେ ବେଢ଼ିଛି ଦୂଷମେ ।
ବେଣୁ ଦ୍ୱୀପେ ଅଠାଣୋଇ ଲକ୍ଷ ସହ୍ରରାଜା
ଅନେକ ସମ୍ପଦେ କଲେ କଂସକୁ ଯେ ପୂଜା
ଏ ବିଧି ଅନେକ ରାଜା ଘେନ ଚତୁରଙ୍ଗ
ପ୍ରାଣର ବିକଳେ ଆସି ଖଟନ୍ତି ତା ସଙ୍ଗ ।
ଉଦଣ୍ଡ ଲକ୍ଷେକ ପାଟ ଛତ୍ର ଯେ ବିମଳ
ବିଜୁଳୀକି ଜ୍ୟୋତି ଜାଣି ପତାକା ଚଞ୍ଚଳ ।
ହାତୀ ରଥୀ ପଦାତିକ ବଳ ସଙ୍ଗେ ଘେନ
ମେରୁ ପ୍ରଦକ୍ଷିଣ କରେ ରାଜା ଉଗ୍ରସେନ ।
ଢୋଲ ଦମା ବୀରତୂରୀ ଟମକ ବଜାଇ
ଶରଦ କାଳରେ ଯେସନ୍ତେ ମେଘ ଗରଜଇ ।
ପଶ୍ଚିମେ କଂସ ଆସେ ସଇନ୍ୟ ଚଳାଇ
ଦେଖା ଦରଶନ ଧନ କହନ୍ତା ନ ଯାଇ ।
ଭଇରବୀ ଭୃଙ୍ଗଭଦ୍ରା ବଜେ ବେଣ୍ଣବଳୀ
କପାଳୀ କାଳରାଜ ଯେ ଚକ୍ରକୂଟ ସ୍ଥଳୀ ।

ନର୍ମଦା ବିଜୟା ସରସ୍ୱତୀ କୃଷ୍ଣବେଣୀ
ସଇମା ଇନ୍ଦ୍ରଲେ ଯାଇଁ ଗୋଦାବରୀ ଜିଣି ।
ମଳୟଛା ମଣ୍ଡଳ ଯେ ତେଲଙ୍ଗ ସିଂହଳ
ମହେନ୍ଦ୍ର କାଞ୍ଚନଗରୀ ଶିରୀଶ ନେପାଳ ।
ମାଳ ଉଦଣ୍ଡ ଦୁର୍ଦ୍ଦଣ୍ଡ ନାମ ଯାର ଲଙ୍କା
ବଙ୍ଗାଳ କଳିଙ୍ଗ ମାଳ ପୁର ରାଷ୍ଟ୍ର ଶାଖା ।
ଗଉଡ଼ ଖଞ୍ଜନ ଜ୍ୟୋତି ପୁର ଯେ କାଉଁର
ଚମ୍ପାବତୀ ବ୍ୟଙ୍କୁଳାକ୍ଷୀ କାମାକ୍ଷା ନଗରୀ ।
ବିଜୟା ବରେଖା ଦଣ୍ଡରାଜ୍ୟ ଓଡ଼ରାଷ୍ଟ୍ର
କୁମୁଦ ଯେ କଉଣିକ କାଶୀପୁର ରାଷ୍ଟ୍ର ।
ପାହାଡ଼ ସୁବର୍ଣ୍ଣଗିରି ଭଦ୍ରସେନ ଯେନ
ରାଜାଙ୍କ ସଙ୍ଗେ ଅଛନ୍ତି ଅନେକ ସଇନ ।
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ହସ୍ତିନା ବାରୁଣା
ଏମାନଙ୍କୁ ଭେଦ କରି ଜୟନ୍ତ ପାଟଣା ।
ହିମାଳ ହେମକେଦାର ଅଯୋଧ୍ୟା ଯେ ଦେଶ
ନୈବାନ ପୁର ମାଟଳ ଅବନ୍ତ ବିଶେଷ ।
କନାଉଜ ଯୋଗସ୍ତମ୍ଭ ଖପର ଆଳମ୍ବ
ଅନାହତ ଅବନ୍ତୀ ଯେ ଲକ୍ଷଣା ଆରମ୍ଭ ।
ଏମନ୍ତେ ଦେଶ ଯେ ଗ୍ରାମ ପୁର ଯେ ପାଟଣା
ଛତ୍ତିରପାଖେ ବଢ଼ାଇ ପୁର ସୂତ୍ରମୂନା ।
କକୋଟକ କୂଟ ହାଟ ପାଟଣା ପ୍ରଜୟା
ବ୍ରହ୍ମସମ୍ଭୂତା କୋଟରୀ ଦେବୀ ମହାମାୟା ।
ଏ ଦେଶମାନଙ୍କର ଯେ ରାଜାମାନେ ଥିଲେ
ପ୍ରାଣଭୟକଲେ ସମସ୍ତେ ଆସି ସେବାକଲେ ।
ଅନ୍ତହର୍ଷେ କଂସ ଯମଦଣ୍ଡ ଚଳାଇଲା
ଗିରିକନ୍ଦର ପର୍ବତ ଜିଣି କରି ଭଲା ।
କୁନ୍ତଳା ନଦୀ ସୁରେଖା ନଦୀ ପାରହୋଇ
ଆପଣା ରାଜ୍ୟ ପ୍ରବେଶ ହେଲେ ସର୍ବେ ଯାଇଁ
ଶତେକ ଯୋଜନ ମାତ୍ର ଚଳାଇଛି ବଳ
ପାଦଭରେ ହେଉଅଛି ମହୀ ଟଳଟଳ ।
କଂସ ପାଦଭର ପୃଥ୍ୱୀ ନ ପାରଇ ସହି
ଦିନକୁ ଦିନ ସେ କ୍ଷୀଣ ବସୁମତୀ ହୋଇ ।
ବିକଳେ ଗୋହରି କରେ ଦେବୀ ଉଚସ୍ୱରେ
ମୁଖରୁ ରୁଧିର ତାର ବହେ ନିରନ୍ତରେ ।
ବେନି ନୟନରୁ ବହି ପଡ଼େ ଅଶ୍ରୁଜଳ
ଶିର କମଳ ପୋତିଣ ଦୁଅଇ ବିକଳ ।
ଅଚ୍ୟୁତାନନ୍ଦ ଦାସ ବୋଲେ ରଖ ନାରାୟଣ
ସେ ଦେବୀ ଚରଣ ତଳେ ପଶଇ ଶରଣ ।

—*—

## କଂସ ଅଷ୍ଟମଲ୍ଲଙ୍କ ପ୍ରବନ୍ଧନ ବୃତ୍ତାନ୍ତ

ବଦନ୍ତି ଯେ ଶୁକ ଶୁଣ ପରୀକ୍ଷ ନୃପବର
ନିଜରାଜ୍ୟେ ପ୍ରବେଶିଲା ଆସି କଂସବୀର ।
ଶାକତ ନାମେ ନଗର ଯମୁନାର ତଟେ
ପ୍ରବେଶ ହୋଇଲା ଯାଇଁ ମଥୁରା ନିକଟେ ।
ଗୋକ୍ଷୀର ନଦୀ ସୁବର୍ଣ୍ଣରେଖା ପାରହୋଇ
ବର୍ତ୍ତୁଳା ନାମ ନଗରୀ ଅଟେ ପୁଣ୍ୟମୟୀ ।
ସେହିଠାରୁ ମଥୁରା ଯେ ବିଶାଶତେ ଯୁଣ
ତହିଁରେ ଯେ ରାଜା ଥାଇ ବୀରକେଶୀ ନାମ ।
ସେ ଆସି କଂସ ରଜାର କଲା ପାଦପୂଜା
ମାନ୍ୟ ଧର୍ମ କରି ସନ୍ଧି ହେଲା ମହାରାଜା ।
ରାଜାର ସଇନ୍ୟମାନେ ଗଉରବ ପାଇ ।
ଯମଦଣ୍ଡ ଭେଦ କଂସ ରହିଲେକ ତହିଁ ।
ଏଥୁଅନନ୍ତରେ ଦେଶ ଜନେ ଯେ ଉଗାରେ
ଜଣାଇଲେ ଉଗ୍ରସେନ ଆସ୍ଥାନ ଗ୍ରାମରେ ।
ପାଦେ ପଡ଼ି ଶିରେ କରଦେଇ ଜଣେହୋଇ
ସାବଧାନ ହୋଇ ତୁମ୍ଭେ ଶୁଣ ନରସାଇଁ ।
କାହିଁ ବସି ରାଜା ତୁମ୍ଭେ କଲ କେଉଁ ତପ
କହିବାକୁ ଅଗୋଚର କଂସ ରାଜା ଦର୍ପ ।
ଏକା ମଥୁରାରେ ତୁମ୍ଭେ ସିନା ମହାରାଜ
ସପତ ଦ୍ୱୀପରେ ରାଜା ତୁମ୍ଭର ତନୁଜ ।
ଶୁଭବେଳେ ଏହିପୁତ୍ର ହୋଇଥିଲା ଜନ୍ମ
ଅକଳଙ୍କ ଲକ୍ଷ୍ମୀ ତୋତେ ମିଳିଲା ସ୍ୱଜନ ।
ଜଗତ ଯାକେ ବିଖ୍ୟାତ ହେଲା କଂସରାୟ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ସେ ସବୁ କଲା ଜୟ ।
ମେରୁ ପ୍ରଦକ୍ଷିଣ କରି ପତାକା ଉଡ଼ାଇ
ଦେବଦାନବ ମାନବ ଜିଣି ହେଲା ଜୟୀ
ଦେଖା ତରଣୀ ଧନ ଆଣୁଛନ୍ତି ଯେତେ
କନକା ନ ଯାଇ ତାହା କହିବୁ ବା କେତେ ।
ଶତେକ ଯୋଜନ ମାତ୍ର ରହିଅଛି ଥାଟ
ଯିବା ଆସିବାକୁ ତହିଁ ନ ମିଳଇ ବାଟ ।
ରଥଗଜ ପଦାତିକ ତୁରଙ୍ଗ ବଳ
ସମସ୍ତେ ଖଟିଅଛନ୍ତି କଂସ ପାଦତଳ ।

ଶୁଣିକର ଉଗ୍ରସେନ ହୋଇଲା ଆନନ୍ଦ
ମୁଖ ବିକାଶଇ ଯେହ୍ନେ ପୂର୍ଣ୍ଣମୀର ଚନ୍ଦ ।
ଇନ୍ଦ୍ରମଣ୍ଡ ଆଗେ ବସି କହେ ପୁତ୍ରଗୁଣ
ଦେବେ ଦୁର୍ଲ୍ଲଭ ମାନବେ ଅକଥନ ଜାଣ ।
ମେରୁ ପ୍ରଦକ୍ଷିଣ କରି ସମସ୍ତ ଜିଣିଲା
ଦାନବ ମାନବ ଆଦି ପାଦେ ଖଟାଇଲା ।
କଂସର ଶୌର୍ଯ୍ୟ ଗୋ ଏତେ କାଳରେ ବଢ଼ିଲା
ଜଗତ ଯାକ ସର୍ବସ୍ୱ ମୋ ପୁତ୍ର ଜିଣିଲା ।
ଜଣେ ଜଣେ ବଧାଇଣ ଦେଲା ମଣ୍ଡପାଳ
ଉପରେ ବାର୍ତ୍ତା କହନ୍ତି ଆସି ବେଳୁଁ ବେଳ
ତତକ୍ଷଣେ ରଜା ତାର ଭଣ୍ଡାରେ ପଶିଲା
ଧାଇ ପରିବାରଙ୍କି ସେ ବଧାଇଣ ଦେଲା ।
ଭଣ୍ଡାରକୁ ମେଲ କଲା ତହୁଁ ଉଗ୍ରସେନ
ଲେଖା ଲମ୍ୱିତା ଦେଲେ ବଧି ଯେ ବଧାନ
ରାଉତ ମାହୁନ୍ତ ଯେତେ ଥିଲେ ପାଇଦଳ
ଜଣ ଜଣକୁ ବଧାଇ ଦେଲା ମଣ୍ଡପାଳ ।
ଘୋଷଣା ଦେଇ ଉତ୍ସବ ନଗ୍ରେ କରାଇଲା
ସୁବର୍ଣ୍ଣବେଦୀ ବାନ୍ଧି ରମ୍ଭା ବୃକ୍ଷ ପୋତାଇଲା ।
ଅଷ୍ଟରତ୍ନର କଳଶ ନେତର ଚିରାଳ
ପଞ୍ଚପଲ୍ଲବ ଲମ୍ୱାଇଁ ତହିଁ ମାଳ ମାଳ ।
ଶଙ୍ଖ ମହୁରୀ ବାଜଇ ହୁଳହୁଳି ଦେଇ
ଅର୍ଘ୍ୟଘେନି ସୁଲକ୍ଷଣୀ ଦ୍ୱାରେ ଥାନ୍ତି ରହି ।
ଛତିଶା ନିୟୋଗମାନ ଖଟି ନିତ ପ୍ରତି
ମହା ରାଜଭୋଗ କରେ କଂସ ନରପତି ।
ଏଥୁଅନନ୍ତରେ କଂସ ଅଷ୍ଟମଲ୍ଲ ନେଇ
ନିର୍ଭୟ ହୋଇଣ ନଗ୍ର ଭିତରେ ପଶଇ ।
ଯେଣିକି ଯାଏ ସେ ସଙ୍ଗେ ସୈନ୍ୟ ଘେନିଥାଇ
ଦେଖିରଣ ଲୋକେ ଡରି ପଛେ ପଛେ ଯାଇ
ମଥୁରାପୁରର ଲୋକେ କଂସରୂପ ଦେଖି
ସର୍ବେ ପଳାଇଲେ ଗୃହ ସମ୍ପଦ ଉପେକ୍ଷି ।
ଦାନବର ସଙ୍ଗେ ତହିଁ ମାନବର ମେଳ
ସମଗ୍ରାଜ୍ୟ ଯାକ ତହିଁ ହେଲା ମହାଗୋଳ ।
ବନ୍ଦ କରାଇଲେ ଘାଟ ହାଟ ବାଟ ପେଣ୍ଠ
ସମସ୍ତ ଲୋକେ ହୋଇଲେ ଭୟରେ ଉଚ୍ଚାଟ ।
ଦାନବେ ଅନନ୍ତ କଲେ ରାଜ୍ୟେ ରାଜ୍ୟେ ପଶି
ମଥୁରାରେ ଯଦୁଙ୍କର ହୋଇଲେ ବିଧ୍ୱଂସୀ ।

କେହି କିଛି ତାଙ୍କୁ କହି ନ ପାରନ୍ତି ଡରେ
ପୃଥିବୀ କମ୍ପିଲା ଅସୁରଙ୍କ ପାଦଭରେ ।
ଯେଅବା ଯାଇଁ ରାଜାରେ କରନ୍ତି ଗୁହାରି
ପ୍ରାଣେ ମାରନ୍ତି ତାହାର ବଂଶ ଆଦିକରି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ କଲେ ସବୁ ଜୟ
ମଥୁରା ଲୋକମାନଙ୍କୁ ତାଙ୍କର କି ଭୟ ।
ରାଜା ବୋଇଲେ ସେ କିଛି ନ ବୋଲନ୍ତି କେହି
ଅନ୍ତୁବ୍ରତେ ମୂଢ଼କର୍ମ କରେ ଦୁଷ୍ଟଦେହୀ ।
ପରୀକ୍ଷିତ ଆଗରେ ଶୁକମୁନି ଯେ କହିଲେ
ଏହିରୂପେ ଅଷ୍ଟମଲ୍ଲେ ମଥୁରା ଅଇଲେ ।
ପୂର୍ବେ କାଳନେମି ଦୈତ୍ୟ ଏବେ କଂସ ହେଲା
ସେ ଜନ୍ମରେ ଅଷ୍ଟମଲ୍ଲ ଏ ଜନ୍ମେ ପାଇଲା ।
ଏକାତ୍ମା ସେ ଭିନ୍ନ ଭିନ୍ନ ନୁହନ୍ତି ନା କେହି
ଏକ କଥା କରନ୍ତି ସେ ଭିନ୍ନଭିନ୍ନ ଦେହୀ
ସକଳ ଯୁଗେ ଏମାନେ ଏକାତ୍ମା ଅଟନ୍ତି
ଏହାଶୁଣି ପରୀକ୍ଷିତ ଶୁକେ ପଚାରନ୍ତି ।
ହେମୁନି ଏ କଥା ମୋତେ ସଂଶୟ ଲାଗିଲା
ପୂର୍ବଜନ୍ମେ କଂସ କାଳନେମି ହୋଇଥିଲା ।
କେଉଁ ପ୍ରକାରେ ଏମାନେ କାହିଁ ଜନ୍ମ ହେଲେ
ମଲ୍ଲ ଉଚାଟିବା ମାନେ କିରୂପେ ଅଇଲେ ।
ନ ଜାଣି ନ ଶୁଣି ପୁଣି ହେଲେ ଏକମେଳ
ଅଭଦ୍ରା ଲୋକ ଅଟଇ କଂସ ମଣ୍ଡପାଳ ।
ପୂର୍ବଜନ୍ମରେ ଏମାନେ ହୋଇଥିଲେ କିସ
ଏହା ସଂକ୍ଷେପି କହିବା ମୋତେ ବ୍ୟାସଶିଷ୍ୟ
ରାଜା ବଚନେ କହନ୍ତି ଶୁକ ମହାମୁନି
ସାବଧାନେ ଶୁଣ ଗ୍ରନ୍ଥ ଏ ଅମୃତ ବାଣୀ ।
ସ୍ୱରୋଚିଷ ମନୁ ଏକସ୍ତରୀ ଯୁଗ ଅନ୍ତେ
ମନୁ ସ୍ୱୟମ୍ଭୂବ ପୁଣି ଅଧିକାର ପାନ୍ତେ ।
ନବମେଖଳ ବ୍ରହ୍ମକୁ ସହସ୍ରେ ବରଷ
ମଧୁମାସରେ ଅଗ୍ରର ଅନ୍ତେ ପାଞ୍ଚମାସ ।
ବ୍ରହ୍ମାଣ୍ଡ ପୁରାଣ ଅଷ୍ଟ ଅଧ୍ୟାୟେ ପ୍ରକାଶ
ବେଦବ୍ୟାସ ମୁଖୁଁ ଶୁଣିଅଛୁଁ ବାକ୍ୟରସ ।
ଏ ବାକ୍ୟ ସାତ ସନ୍ଦେଶ ଶୁଣ ମଣ୍ଡପତି
ଆସ୍ଥାନ କରି ବସିଲା ସ୍ୱର୍ଗେ ସୁରପତି ।
ଅତ ସମାରୋହେ ତହିଁ ବସି ସୁରସାଇଁ
ସମସ୍ତ ଦେବତାମାନେ ବସିଛନ୍ତି ତହିଁ ।

ବ୍ରହ୍ମଋଷି ରାଜଋଷି ଦେବର୍ଷି ସକଳ
ଚାରଣ ଗନ୍ଧର୍ବଗଣ ଦଶ ଦିଗପାଳ ।
ଯମ ନଇଋତ ଆଦି ବରୁଣ କୁବେର
ପବନ ଆବର ଚନ୍ଦ୍ର ସୂର୍ଯ୍ୟ ବୈଶ୍ୱାନର ।
ଚାରି ବାର କରଣଙ୍କି ପନ୍ଦର ଯେ ତିଥି
ବୁଧ ଶୁକ୍ର ଶନୈଶ୍ଚର ଭୈରବ ପ୍ରକୃତି ।
ବ୍ରହ୍ମା ବିଷ୍ଣୁ ବେତାଳ ଯେ ରୁଦ୍ରଗଣ ଘେନ
ସୁଧର୍ମା ସଭାରେ ବିଜେ କଲେ ସସ୍ତ୍ରଯୋନ ।
ଅମରସିଂହାସନେ ସେ ଦେବଗଣେ ବସି
ଗନ୍ଧର୍ବୀଙ୍କୁ ଆଜ୍ଞା ଦେଲେ ନୃତ୍ୟକର ଆସି ।
ଶୁଣିଣ ସେ ବିଦ୍ୟାଧରୀ ବେଶଭୂଷା ହୋଇ
ଇନ୍ଦ୍ରଦେବତା ସମ୍ମୁଖରେ ପ୍ରବେଶିଲେ ଯାଇଁ ।
ଚଉଷଠି କୋଟି ସେ ଯେ ଅପୂର୍ବ ସୁନ୍ଦରୀ
ସମସ୍ତେ ଜାତି ପଦ୍ମିନୀ ରତି ପଟାନ୍ତରୀ ।
ସ୍ୱର୍ଗନାୟିକା ସେମାନେ ମହାପୁଣ୍ୟଦେହୀ
ଜଣ ଜଣକେ ପାରନ୍ତି ହରିବ୍ରହ୍ମା ମୋହି ।
ଅଶୀକୋଟି ଗନ୍ଧର୍ବ ଯେ ସଦା ନବଯୁବା
କାମଦେବ ପଟାନ୍ତର କି ଅବା ମଘବା ।
ସମୁଦ୍ର ମନ୍ଥନ କାଳେ ହୋଇଛନ୍ତି ଜାତ
ଜନମ ମରଣ ବାଧା ନ ଲାଗେ ଏହାନ୍ତ ।
କୋଟିଏକ ଇନ୍ଦ୍ରଜାଣ ହେବେ ଯେବେ କ୍ଷୟେ
ମରଣ ବାଧା ତାଙ୍କର ନାହିଁ ଯେ ପ୍ରଳୟେ ।
ଅନେକ ଇନ୍ଦ୍ର ହୁଅନ୍ତି ସ୍ୱର୍ଗେ ଯେବେ ଲୀନ
ସବୁଦିନେ ରହିଥାନ୍ତି ଏ ଗନ୍ଧର୍ବୀଗଣ ।
ଯାହାକୁ ହୁଅନ୍ତି ଇନ୍ଦ୍ରପଦ ଦେବହରି
ବିଦ୍ୟାଧରୀ ଅପସରୀ ତାର ସେବାକରି ।
ସ୍ୱର୍ଗ ମଣ୍ଡଳରେ ସେହି କାରଣୀ ଅଟନ୍ତି
ଯେ ହୁଏ ସ୍ୱର୍ଗରେ ଇନ୍ଦ୍ର ତାହାକୁ ଖଟନ୍ତି ।
ବିଷ୍ଣୁର କୋଠଲେକ ସେ ଥାନ୍ତି ସ୍ୱର୍ଗପୁରୀ
ସେବା ସେ କରନ୍ତି ଆସି ହୋଇ ଅଧିକାରୀ ।
ସ୍ୱର୍ଗମଣ୍ଡଳେ ଅଟନ୍ତି ସଦା ଅଧିକାରୀ
ସେ ଗନ୍ଧର୍ବୀ ବିଦ୍ୟାଧରୀ ବେଶ ହୋଇକରି ।
ସୁରପତି ସମ୍ମୁଖରେ ସେ ଜଗି ହେଲେ ଯାଇ
ବିବିଧ ଯନ୍ତ୍ର ତାହାଙ୍କ କରେ ଶୋଭାପାଇ ।
ତାଳ କଂସାଳ ମୃଦଙ୍ଗ ବିପଞ୍ଚି ଯେ ବୀଣା
ତାନମାନରେ ସେ ଏକୁ ଏକ ଯନ୍ତ୍ର ଜଣା ।

କୁଣ୍ଡଳୀ ଜଗମ୍ପ ଭୃଙ୍ଗୁରା ଆଦି ବାଦ୍ୟ ଘେନ ।
ନୃତ୍ୟ ଗୀତରେ ଖଟନ୍ତି ସ୍ୱର୍ଗ ବିଳାସିଣୀ ।
ଚିତ୍ରସେନ ଗନ୍ଧର୍ବ ଯେ ତାଳ ଧରି ଗାଇ
ବିଶ୍ୱାବସୁ ଗନ୍ଧର୍ବ ଯେ ମୃଦଙ୍ଗ ବଜାଇ ।
ନାରଦମୁନି ଯେ ବୀଣା ବଜାନ୍ତି ସୁରଙ୍ଗେ
ଶୂରସେନର କଂସାଳ ବାଜେ ଅନ୍ତରଙ୍ଗେ ।
ସୁସ୍ୱର ଗନ୍ଧର୍ବ ତହିଁ କରେ ବେଣୁନାଦ
ଜୟସେନ ଗନ୍ଧର୍ବର ଅଳାବେଣୀ ଶବ୍ଦ ।
ବିଦ୍ୟାଧରୀମାନଙ୍କୁ ସେ ସଙ୍ଗତେ ଆବୋରି
ଗାନ୍ଧାର ସ୍ୱର ଶବଦେ ଗୀତକୁ ଉଙ୍କାରି ।
ସୁସ୍ୱର ମଧୁର ଧ୍ୱନି ଅଳାବେଣୀ ସଙ୍ଗେ
ତଣ୍ଡପୃଷ୍ଠ ଗୃଣ୍ଡପୃଷ୍ଠ ଉଦ୍‌ଗୀତ ତରଙ୍ଗେ ।
ଚୌଷଠି ବିଧାଣ ବସ୍ତ୍ରାଳଶ ଅଙ୍ଗହ୍ଳ
ବାଆସ୍ତରୀ ମୁଦ୍ରାମୂଳେ ଅଭ୍ୟାସିତା ବାଳୀ ।
ଛତିଶ କଳାଗୁଣରେ ମୂର୍ତ୍ତି ପଞ୍ଚଧାତୁ
ଏକେଇଶ ବର୍ଣ୍ଣମୂଳେ ବସ୍ତ୍ରାଳଶ ତନ୍ତୁ ।
ବାସ୍ତୁରି କାଳେଶୀ ତାଳ ବତିଶ ଯେ ବାଟ
ଚଉସ୍ତରୀ ବିଭ୍ରମ ଯେ ବାଆସ୍ତରି ନାଟ ।
ଏଥିରେ ବାହାରେ ଅଛି ଲକ୍ଷେ ଗ୍ରନ୍ଥବିଦ୍ୟା
ନବବିଂଶ ଭରି ହରି ଅଶୀଖଣ୍ଡ ସିଦ୍ଧା ।
ଅନ୍ତରଳେ ଭରି ହରି ନ ଜାଣନ୍ତି କେହି
ଦିଗପାଳ ଦେବତାଏ ନ ପାରନ୍ତି ବହି ।
ଏକ ଈଶ୍ୱର ଜାଣନ୍ତି ତାଣ୍ଡବ ଯେ କରି
ବ୍ରହ୍ମା ମର୍ଦ୍ଦଳ ବଜାନ୍ତି ବିଷ୍ଣୁ ତାଳ ଧରି ।
ଅନ୍ୟଲୋକ ସମର୍ଥ ଯେ ନୁହନ୍ତି ଏଥିକି
ଏଥିରୁ ଥୋକାଏ ବିଦ୍ୟା ଗନ୍ଧର୍ବ ଯେ ଶିଖି
ଏଥିଁ ଘେନ ଇନ୍ଦ୍ରଙ୍କୁ ସେ କରିଥାନ୍ତି ସେବା
ଯେଣୁକରି ଦୟା ତାଙ୍କୁ କରନ୍ତି ମଘବା ।
ଗୀତ ବାଦ୍ୟ ନାଟ ସେହି ନାନା ପରିବନ୍ଧ
ଗନ୍ଧର୍ବ ଧରି ଖଟନ୍ତି ନାନା ବିଦ୍ୟାଛନ୍ଦ ।
ଯୁବତେ ସୁନ୍ଦରୀ ସେହି ସୁଧର୍ମା ଯେ ସଭା
ବୃଦ୍ଧା ନୁହନ୍ତି ସେମାନେ ସର୍ବେ ନବ ଯୁବା ।
ଯେ ସୁଧର୍ମା ସଭାମଧ୍ୟେ ଉର୍ବଶୀର ନାଟ
ସ୍ଥାନମାନ ମୁଦ୍ରା ଯହିଁ ହୋଇ ଏକାଭେଟ ।
ଏହିପରି ନୃତ୍ୟମାନ ଦେଖି ସୁରପତି
ଆନନ୍ଦ ଉଲ୍ଲାସ ହୋଏ ବାସବର ମତି ।

ସବୁ ଦେବତା ଆସ୍ଥାନେ ଅଛନ୍ତି ଯେ ବସି
ନୃତ୍ୟ ଦେଖିଣ ସମସ୍ତେ ହେଉଛନ୍ତି ଖୁସି ।
ଯଉ ବ୍ରଜତଣ୍ଡ ପୁଟକଷ୍ଟ ହୋଇଥିବ
ସେ ସଭାନୃତ୍ୟ ଦେଖିଲେ ସବୁ ପାସୋରିବ ।
ବୃଦ୍ଧ ଅବସ୍ଥାକୁ ପାଇଥିବ ଯାର ଅଙ୍ଗ
ସେ ନୃତ୍ୟଦେଖିଲେ ହେବେ ତନୁରେ ଅନଙ୍ଗ
ନୃତ୍ୟ ଦେଖୁଛନ୍ତି ବସି ସକଳ ଦେବତା
ପାସୋରିଲେ କୃତ୍ୟକର୍ମ ଯାହାର ଯେ କଥା
ଯେତେ ଦେବତା ଆସ୍ଥାନେ ବସିଛନ୍ତି ଯାଇଁ
ଉଠି ଆସିବାକୁ ମନ କାହାର ଯେ ନାହିଁ ।
ନୟନ ନିଶ୍ଚଳ କରି ଦେଖନ୍ତି ସକଳ
ପଶିବାକୁ ବାଟ ନାହିଁ ଥୋକେ ଛନ୍ତି ଚଳ ।
ପାଦଛରେ ଉଠି କେହୁ ଦେଖେ ସ୍ଥଳଧରି
ଏକକୁ ଆରେକ ପେଲି ପଶେ ଆଗ କରି ।
ବ୍ରହ୍ମା ବିଷ୍ଣୁ ଆଦି କରି ଯେତେ ଛନ୍ତି ଜନ
ଦିଗପାଳମାନଙ୍କର ଚହିଁ ଏକ ମନ ।
ଏସନ ନୃତ୍ୟ କରନ୍ତେ ସଙ୍କଟରେ ବାସବ
ଆସନ ଚଳିଲ ମିଳିଲେ ଯାଇଁ କାମଦେବ ।
କରେ ଧରି ପଞ୍ଚବାଣ କାମଫୁଲ ଧନୁ
ରଖାଣିଲ ସୁନାପାସୁ ଦିଶଇ ତନୁ ।
ରୁପିଲ ମର୍କତ ପ୍ରାୟ କର୍ଣ୍ଣରେ କୁଣ୍ଡଳ
ନାନାପୁଷ୍ପେ ଗନ୍ଧ ସାହ୍ନେ ଶିରେ ଦିବ୍ୟଚୂଳ ।
ନବରତ୍ନ ହାର ଶୋହେ କଣ୍ଠେ କଣ୍ଠମାଳ
ଏମନ୍ତ ଦିଶଇ କାମଦେବ ଯେ ସୁଢ଼ଳ ।
ସରଳ ତେଉରି ହସ୍ତେ କଙ୍କଣ ଯେ ମୁଦ
ହେମଶ୍ରନୁ ଜ୍ୟୋତି ଯେସନ୍ତେ ଗଗନ ଆଚ୍ଛାଦ ।
ନିର୍ମଳ ଗଗନ ମଧ୍ୟେ ଯେସନ୍ତେ ଦିନକର
କାମଦେବ ରୂପକୁ କି ଅଛି ଏଠାନ୍ତର ।
ଯତନରେ ବିଶ୍ୱକର୍ମା ନିର୍ମାଣିଲ କି ଛୁ
ତାର ରୂପ ବର୍ଣ୍ଣିବାକୁ ସମର୍ଥ କେ ଅଛୁ ।
ବ୍ରହ୍ମା ଆଦି ଯେତେ ଛନ୍ତି ଉତ୍ତମ ପୁରୁଷ
ସର୍ବପରେ ସୁଲକ୍ଷଣ କାମ ଅଟେ ଈଶ ।
ଅଧର ତ ର ବଧୂଲିଫୁଲପ୍ରାୟ ଜ୍ୟୋତି
ସୁନ୍ଦରେ ମଣ୍ଡିଅଛି କି ଗଜ ମୁକ୍ତା ମୋତି ।
ସୁଲଳିତ ଭୁଜଦଣ୍ଡ କପୋଳ ସୁସଞ୍ଚ
ତିଳପୁଷ୍ପ ନାସା ନେତ୍ର କମଳ ବିକଚ ।

ମତ୍ତ ମାତଙ୍ଗ ପରାୟେ ଗମନ ବିଶେଷ
ଅଶୋକ କୁସୁମପ୍ରାୟେ ଦିଶେ କରପଦ ।
ତୁଳନା ଦେବାକୁ ତାକୁ ନାହିଁ ତ୍ରିଭୁବନ
ଘଟନ କେହୁ ନୋହିବେ କାମର ସମାନ ।
ଅଖିଳଜନ ମରମଭେଦୀ କାମସୃଷ୍ଟି
ବିଶ୍ୱକର୍ମା କଲା ତାକୁ ଅତି ଦରପାଣୀ ।
ହସ୍ତୀ ହସ୍ତପ୍ରାୟ ତାର କେନ ଭୁଜଦଣ୍ଡ
କି ସୁନ୍ଦର କଣ୍ଠ ଶିର କଳୀନ ସୁଖଣ୍ଡ ।
ଚମ୍ପାକଢ଼ୀ ପ୍ରାୟ ତାର ହସ୍ତର ଅଙ୍ଗୁଳି
ବ୍ରହ୍ମକାନ୍ତି ସ୍ଥିରପ୍ରାୟ ନଖମାନ ଝଳ ।
ସଂକୀର୍ଣ୍ଣ ମଧ୍ୟା ତାହାର ଡମରୁକୁ ଜିଣି
ଅନେକ ଯତନେ ଧାତା ନିର୍ମାଇଲା ଆଣି ।
କହନ୍ତେ ଯେ ନ ସରଇ କାମର ମହିମା
ଅନ୍ତଯନ୍ତ୍ରେ ଗଢ଼ିଅଛି ଯାହା ଦେବବ୍ରହ୍ମା ।
ଯୁବତେ ସୁନ୍ଦର ମୂର୍ତ୍ତି ଦିବ୍ୟ ବେଶ ହୋଇ
ସୁଧର୍ମା ସଭା ମଧ୍ୟରେ ପ୍ରବେଶିଲା ଯାଇଁ ।
ପୁଷ୍ପଧନୁ କରେ ଧରି ଚଢ଼ାଇଛି ଗୁଣ
ଭରତ ଯନ୍ତ୍ର ଯେ କେନ ଭଙ୍ଗେ ଭିଡ଼ ହୋଣ
ପାଦଛ ତଳେ ସେ ଯାଇଁ ହୋଇଲାକ ଉଭା
ତାରଗଣ ମଧ୍ୟେ ଯେସନ୍ତେ ଚନ୍ଦ୍ର ପାଏ ଶୋଭା
ଆସ୍ଥାନ ଉପରେ ଯେତେ ଦେବେ ଥିଲେବସି
ନୃତ୍ୟରଙ୍ଗ ଦେଖି ସର୍ବେ ହେଉଛନ୍ତି ଖୁସି ।
ଲେଉଟି ଯେ ଚାହିଁବାକୁ କାହା ଶକ୍ତି ନାହିଁ
ସର୍ବେ ସ୍ତମ୍ଭୀଭୂତ ହେଲେ ଉର୍ବଶୀକି ଚାହିଁ ।
ତଳେ ସ୍ଥଳ ନାହିଁ ସର୍ବେ ହେଇଛନ୍ତି ଉଭା
ଉଠିବାକୁ ବାଟନାହିଁ କାହୁଁ ଯିବେ ଅବା ।
ପାଦଛ ତଳେ ଯେ ଥିଲେ ଗଲେ ପେଲିଉଠି
ପଶି ନ ପାରିଲେ ଯହୁଁ ରହିଲେ ପାଛଟି ।
ତିନି ପ୍ରହର ଯେ ଆସି ହୋଇଲାକ ବେଳ
ଆଦିତ୍ୟର ତେଜ ଲାଗି ବହେ ଦେହୁ ଝାଳ
ଲାଜେ ବାହୁଡ଼ି ଯିବାକୁ ନ ବଳଇ ମତି
କେହି ଆସିବାକୁ ମନ ନ କରନ୍ତି ତଥି ।
କାମଦେବ ଆସି ଥିବେ ନ ଜାଣନ୍ତି କେହି
ଉର୍ବଶୀ ନୃତ୍ୟକୁ ସର୍ବେ ଛନ୍ତି ଦୃଷ୍ଟି ଦେଇ
ହିପଣ୍ଡ ହୋଇଣ ଝାଳ ଯାଉଅଛି ବହି
ଖର ତେଜେ ଅନ୍ତରାଳ ହୋଇ ତାର ଦେହୀ

ନଜ ଅଞ୍ଚଳେ ତାହାର ପୋଛେ ଶ୍ରମଝାଳ
କେଉଁ ବେଳ ସୂର୍ଯ୍ୟତାପେ ହେଲ ଅନ୍ତରାଳ ।
କେଉଁ ବେଳ ଉତ୍ତପତ୍ତ ଦେହେ ତାପ ପାଇ
ମହାରୋଷ ବହିଲ ସେ ଅନୁକୂଳି ବୃଷ୍ଟି ।
କାମଦେବ ବୋଇଲ ହେ ଜାଣିମା କେମନ୍ତେ
ବସ ବୋଲି ଜଣେ କେହି ନ ବୋଇଲେ ମୋତେ
ଇନ୍ଦ୍ର ଦେବତା ଅଟନ୍ତି ସ୍ୱର୍ଗ ର କାରେଣି
ତିନପୁର ଲୋକ ପରେ ଅଟନ୍ତି ଅଗ୍ରଣୀ ।
ସବୁ ପ୍ରାଣୀଙ୍କର ସେହି ମୂଳନଜଦାତା
ଏତେଜଳକମୋତେ ଦେଲ ସେ ଇନ୍ଦ୍ରଦେବତା ।
ଏମାନଙ୍କର ମୁଁ ଅବା କଲି କେଉଁ ଦୋଷ
ବରଣ କର ନ ଥାଇଁ କଲେ ମୋତେ ରୋଷ ।
ଏ ପର ଅଟଇ ପୁଣି ଜଗତର ପିତା
ଦେବତାଙ୍କ ଉପରେ ଏ ଇଷ୍ଟ ଯେ ଦେବତା
ଅମର ଲୋଗ ବଅନ୍ତ ଦେବ ଯାଙ୍କୁ ତୋଷି
ସେ କପାଁ ବସ ନ ବୋଲେ ଏ ସଞ୍ଚାରବସି
ବ୍ରହ୍ମାଙ୍କ ସନ୍ନିଧେ ବସିଅଛନ୍ତି ଈଶ୍ୱର
ପାବଶଙ୍କ ପତି ଏ ଯେ ସ୍ୱୟଂ ନଟବର ।
ଅଷ୍ଟାଙ୍ଗଯୋଗରେ ସଦା ଲପ୍ତ ଯାର ମତି
ଇନ୍ଦ୍ରଦେବତା ଅବଜ୍ଞା ନ କରେ ଯା ଉକ୍ତି ।
ଯାର ଆଜ୍ଞାବଶ ପୁଣି ସକଳ ଦେବତା
ସେ କପାଇଁ ମୋତେ ପଦେ ନ କହିଲେ କଥା ।
ଏ ଆସ ବୋଲି ବୋଲିବେ ମୋତେ ଅବା କାହିଁ
ଉର୍ବଶୀ ନୃତ୍ୟରେ ସର୍ବେ ହୋଇଛନ୍ତି ବାଇ
ଏହାଙ୍କ ପାରୁଶେ ଚନ୍ଦ୍ରସୂର୍ଯ୍ୟ ଛନ୍ତି ବସି
ସ୍ତବଦବା କରନ୍ତି ଏ ପୁରେ ପୁରେ ପଶି ।
ପରମବ୍ରହ୍ମ ଏ ପୁଣି ଠୂଳ ଶୂନ୍ୟରୂପୀ
ସଚରାଚର ପୃଥ୍ୱୀ ଦେହେ ଅଛନ୍ତି ବ୍ୟାପି ।
ଅକ୍ଷୟ ଅଜରାମର ଅଟନ୍ତି ଜଗତେ
ସେ କପାଇଁ ବସ ବୋଲି ବୋଲିବେକିଟିମୋତେ
ଦଶଦିଗପାଳ ଛନ୍ତି ଏହାଙ୍କର ସଙ୍ଗେ ।
ସକଳ ଦେବ କାରଣ ଥାଇ ଏହା ଅଙ୍ଗେ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଏ ଯେତେ
ବିଶ୍ୱକର୍ମା ସରଜନା କରେ ସୃଜନ ।
ଏହାଙ୍କର ଭୂଷଣ ତ ଏ ସୁଧର୍ମା ସଭା
ବସ ବୋଲି ବୋଲିବେ ସେ କପାଁ ମୋତେ ଅବା
ଆବର ଦେବତା ମାନେ ଛନ୍ତି ବିଜେକରି
ଏହାଙ୍କର ଗୁଣ କେବେ ନହିବ ବିସ୍ତାରି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଖ୍ୟାତ ଯାଙ୍କ କଥା
ଧନ ଜଣକେ ଅଟନ୍ତି ଏହି ସାମରଥା ।
ଅମର ମଣ୍ଡଳେ ଥାଇ ସବୁ ପୁଣ୍ୟମୟ
ଜନ୍ମ ମୃତ୍ୟୁ ନାହିଁ ଖାଇ ଅଛନ୍ତି ଉର୍ମୀୟ ।
ମହାପ୍ରଳୟେ ଯାଙ୍କର ନାହିଁ କିଛି ଭୟେ
ଅରିଷ୍ଟ ପ୍ରଳୟ ଯାଙ୍କୁ ଯୁଗେ ଯୁଗେ ନୋହେ
ଏମାନେ ବସ ବୋଲିବେ ଅବା ମୋତେ କାହିଁ
ଉର୍ବଶୀ ମୋହି ଅଛନ୍ତି ସମସ୍ତଙ୍କ ଦେହୀ ।
ଯଦ୍ୟପି ଏଥୁଁ ଲେଉଟି ଯିବ ମୁହିଁ ଆଜ
ଜନମୁଖେ ହୋଇବ ଯେ ମୋତେ ବଡ ଲାଜ
ତିନ ପ୍ରହରେ ଉଭାହେଲି ଏଥେ ଆସି
ବସ ବୋଲି ସଭାମଧ୍ୟେ କେହି ତ ନ ଭାଷି ।
ଏତେ ବୋଲି କାମଦେବ କୋପଭର ହେଲେ
ଦକ୍ଷିଣ ମୁଖରେ ଦୃଷ୍ଟି ବ୍ରହ୍ମାଙ୍କୁ କହିଲେ ।
ଏ ଦେବତାମାନେ ଧନେ ହେଲେ ମତ୍ତଟଙ୍କ
ଉର୍ବଶୀର ରୂପ ଦୃଷ୍ଟି ମୋହିତ ଏ ସର୍ବ ।
ଯୁବତେ ବୃଦ୍ଧ ଯାଙ୍କର କାମେ ଶ୍ରଦ୍ଧା ନାହିଁ
କପାଇଁ ମୋହେ ପଡ଼ିଲେ ଉର୍ବଶୀକ ଦୃଷ୍ଟି
ମଦନର ମିତ୍ର ମାୟା କାମ ଲୋଭ କୋପ
ଏ ପାଞ୍ଚଗୁଣ୍ଠି ବାହାର ଏହାଙ୍କର ରୂପ ।
ଏ କପାଁ ଆସ୍ଥାନେ ମୋତେ ନ ବୋଇଲେ ବସ
ନିଶ୍ଚେ ଜାଣିଲି ବ୍ରହ୍ମାର ଅଟେ ବଡ ଦୋଷ
ଏହି ମୋତେ ଗଉରବ ନ କଲେତ ଆଜ
ବୃଦ୍ଧାବନେ ଉର୍ବଶୀକ ସ୍ନେହେ ନାହିଁ ଲାଜ ।
ଏତେ ବୋଲି ଉଗ୍ରୋଧ ପୁଷ୍ପ ଉତ୍ତପତ
କରେ ପୁଷ୍ପ ଧନୁଶର ଧରି ଶୀଘ୍ର ଗତ ।
ଆକର୍ଷଣ ପଞ୍ଚବାଣ ପୁରଇଲ ଆଣି
ମନ୍ମଥପତି ଉପରକୁ ବିନ୍ଧିଲକ ଟାଣି ।
ବିଧାତା ଅଙ୍ଗେ ଭେଦିଲ ଯାଇଁ ପଞ୍ଚଶର
ତତକ୍ଷଣେ ଧାତା ହେଲେ କାମ ମତ୍ତଭର ।
ପୁଷ୍ପଲୋକ ଧାତା ବ୍ରହ୍ମ କର୍ମ ବିଦ୍ୟା ଲଜ୍ଜା
ମହାମନ୍ତ୍ର ସହିତରେ ସବୁ କଲେ ତ୍ୟାଜ୍ୟା ।
ସ୍ୱାହା ପ୍ରୋକ୍ଷଣୀ ଯେ ଦଣ୍ଡକମଣ୍ଡଳ ପୁଷ୍ପ
କୃଷ୍ଣାଜିନ ପୁଷ୍ପ ପୋତ ପାସି କୁଶ ବଡ଼ ।

ଆସ୍ଥାନ ଉପେକ୍ଷି ତହୁଁ ଉଠି ବେଦବର
କାମଭରେ ଅଙ୍ଗ ହେଉ ଝରେ ଝର ଝର ।
ବଳେ କୋଳେ ଉର୍ବଶୀକି ଧଇଲେ ସେ ଯାଇଁ
କାମଭରେ ଦେବପତି ଅଙ୍ଗେ ଜ୍ଞାନ ନାହିଁ ।
ସଙ୍ଗ ଭଙ୍ଗିଲ ସମସ୍ତେ ଲାଜେ ଗଲେ ଉଠି
ଦେବଗଣ ରୁଦ୍ରଗଣ କଲେ ତର୍ଜ୍ଜି ପିଠି ।
ଯେ ଯାହା ପୁରକୁ ଗଲେ କରି ଉପହାସ
ଚଉଦ ଯୁଗ ଉର୍ବଶୀ ବ୍ରହ୍ମା ସହବାସ ।
ପୁତ୍ରଏକ ତହୁଁ ଜାତ ହେଲା ମହାବଳୀ
ପୁତ୍ରକୁ ଦେଖିଣ ବ୍ରହ୍ମା ମନେ ମନେ ଭଳି ।
ଜଗତର ପିତା ହୋଇ ସଭାରେ ଯେ କଲି
ଜନମୁଖେ ଏତେବଡ଼ ଲଜ୍ଜାକୁ ପାଇଲି ।
ଈଶ୍ୱରଦେବ ଥୋକାଏ ଦୂରେ ଥିଲେ ରହି
ଏକଥା ଦେଖି ହସିଲେ କରତାଳି ଦେଇ ।
ଈଶ୍ୱରେ ବୋଇଲେ ବ୍ରହ୍ମା ତୁମ୍ଭଭଳି ଲୋକ
ଏତେବଡ଼ ସଭାମଧ୍ୟେ ହେଲ ଅବିବେକ ।
ଦେବଗଣ ମଧ୍ୟେ ତୁମ୍ଭେ ବୋଲାଅ ଅଗ୍ରଣୀ
ଏତେକ ଅକର୍ମ କଲ ତୁମ୍ଭେ କୃଶପାଣି ।
ମୋହର ଯେ ଧର୍ମଅଙ୍ଗ ଅଟେ ଦେଖ ଉମା
ତା ରମଣେ ଉପହାସ କର ମୋତେ ବ୍ରହ୍ମା ।
ଦେବସଭାରେ ଉର୍ବଶୀ ସଙ୍ଗେ କଲ ପ୍ରୀତି
ଏତେ ଅଲଜ୍ଜକ ତୁମ୍ଭେ ହେଲ ବେଦପତି ।
ଏତେକ କହି ହସିଲେ ଠହ ଠହ ହୋଇ
ଅତି ଉଚ୍ଚରେ ଯେ ପୁଣି କରତାଳି ଦେଇ ।
ଅଦୃଷ୍ଟି ଅଶ୍ରୁତି ଏ ଯେ ଅସମ୍ଭବ କଥା
ଏତେ ଲୋକ ହୋଇ ଧର୍ମ ଲଙ୍ଘେ ଚଉମଥା ।
ଲଜ୍ଜ ଥିଲା ପ୍ରାଣୀକି ଯେ ବାଧେ ଉପହାସ
ଲଜ୍ଜା ଛାଡ଼ିଲେ ପ୍ରାଣୀର ଧର୍ମ ଯାଏ ନାଶ ।
ଧର୍ମନାଶ ଗଲେ ପ୍ରାଣୀ ଦରିଦ୍ର ହୁଅନ୍ତି
ଦରିଦ୍ର ହେଲେ ପୁରାଣ ଧର୍ମ ନ ଶୁଣନ୍ତି ।
ଆପେ ହେଲେ ପାପାତ୍ମା ନୋହି ପୁଣ୍ୟସଙ୍ଗ
ପୁଣ ପୁଣ ନର୍କେ ଯାଇ ପଡ଼େ ତାର ଅଙ୍ଗ ।
ସକଳ ଦେବଙ୍କ ପରେ ଇନ୍ଦ୍ର ମହାରାଜା
ଉପହାସ କଲେ ତୋର ଛାଡ଼ ପାଦପୂଜା ।
ବିଧାତା ବୋଇଲେ ଆମ୍ଭେ କଲୁ ପାପକର୍ମ
ଏ ଦେବ ସଭାରେ କଲୁ ଏତେକ ଅଧର୍ମ ।

ଜାତି କୁଳ ମହତ୍ତ୍ୱହିଁ ବିଦ୍ୟାବନ୍ତ ଗୁଣ
ଏହାନ୍ତ ନାଶି ଛାଡ଼ିଲି ଏତେ ବଡ଼ପଣ ।
ଏହା କାମଦେବ ସିନା କଲା ଏତେ କଥା
ଯୁଗେ ଯୁଗେ ରହିଲା ସେ ନୋହିଲା ଅନ୍ୟଥା
ଆମ୍ଭ ବଡ଼ପଣ ଗୋଟା ହରାଇଲୁଁ ଆମ୍ଭେ
ଆମ୍ଭଙ୍କୁ ବାତୁଳ ଗଉରବ ଲୋକ ତୁମ୍ଭେ ।
ଏତେ ମହିମା ମୋ ଭଙ୍ଗି ଦେଲା କାମଦେବ
କି ଦୋଷ ଦେଲା ଆମ୍ଭଙ୍କୁ ଏତେ ପରାଭବ ।
ଏହା କହି ପିତାମହ ଗଲେ ପାଇ ତାପ
ବୋଇଲେ ରେ କାମଦେବ ଘେନମୋର ଶାପ
ଅକାରଣେ ଆମ୍ଭଙ୍କରେ କଲୁ ଗରୁ କୋହ
ସହସ୍ର ଯୁଗ ପର୍ଯ୍ୟନ୍ତ ଅସୁର ତୁ ହୁଅ ।
ପୁଷ୍ପ ଧନୁ ତୂଣ ତୋର ପଞ୍ଚଗୋଟି ବାଣ
ଏହା ଘେନ ଆମ୍ଭଙ୍କୁ ତୁ ଦେଲୁ ଏ କଷଣ ।
ଏମାନ କେତନ ପଞ୍ଚଶର ଆଦି କରି
ସମସ୍ତ ଘେନ ଜନମ ତୁ ଅସୁରପୁରୀ ।
ଏସନକ ଶାପ ଯହୁଁ ଦେଲେ ବେଦପତି
ସେହି ଶାପକୁ ଜାଣିଲେ ଧ୍ୟାନେ ଦେବୀ ରତି
କେଶବାସ ଅସମ୍ଭାଳେ ବାହାରି ସେ ହୋଇ
ପିତାମହର ଛାମୁରେ ପ୍ରବେଶିଲେ ଯାଇଁ ।
ଝରନ୍ତର ନୟନରୁ ଗଲେ ଅଶ୍ରୁଜଳ
ପ୍ରଣମିତ ହେଲେ ପିତାମହ ପାଦତଳ ।
ଶୋକଭରେ କାନ୍ଦ ସଖି କରୁଛନ୍ତି ସ୍ତୁତି
ନମସ୍ତେ ତୁ ପିତାମହ ଆଦ୍ୟ ଯୁଗପତି ।
ଅଲେଖ ଅଗାଧ ଧୃତି ଅଶ୍ରୁତି ଯା ଅଙ୍ଗ
ଜୟ ସୃଷ୍ଟି କରତା ତୁ ପରମାତ୍ମା ରଙ୍ଗ ।
ଦେବଙ୍କ ଉପରେ ତୁହି ଦେବଶିରୋମଣି
ଜୟ ତୁ ଦେବ ସଂସାର ଜନର କାରେଣି ।
ସକଳ ବେଦ ପୁରାଣେ ଶ୍ରୁତି ଯାର ଶ୍ରୁତି
ଜୟ ଜୟ ବେଦନାଥ ଆଦି ଯୁଗପତି ।
ଅଷ୍ଟାଙ୍ଗ ଯୋଗର ମୂଳେ ତତ୍ତ୍ୱଦର୍ଶୀ ଜ୍ଞାନ
ଆଦିଅନ୍ତ ପୁରୁଷ ତୁ ପରଂବ୍ରହ୍ମେ ଲୀନ ।
ସତ୍ତ୍ୱ ରଜ ତମ ତିନି ଗୁଣେ ନାହୁଁ ମିଶି
ପଞ୍ଚଭୂତ ଆତ୍ମା ତୁହି ଅଟୁ ଶୂନ୍ୟବାସୀ ।
ଋକ ଯଜୁ ଅଥର୍ବ ଯେ ସାମବେଦ ସ୍ୱର
ଏହାଙ୍କୁ ଘେନିଣ ତୁହି ହେଲୁ ବେଦଧାରୀ ।

ଜନମ ମରଣ ବାଧା ନ ଲଗେ ତୋ ଅଙ୍ଗେ
ପ୍ରାନ୍ତକାଳେ ନ ଥାଇ ସେ କେହ୍ନ କାହା ସଙ୍ଗେ
ତୋହର ମହିମା ବେଦ ତୁହି ସେ ଜାଣନ୍ତା
ତୁହି ସିନା ଅଟୁ ଦେବ ସର୍ବଲୋକପିତା ।
ବେଦର ତୁ ଶାଖା ଅଟୁ ବେଦ ତୋର ଆତ୍ମା
ସଂସାର ଭିତରେ ତୋତେ ନାହିଁନା ଉପମା
ଜଗ୍ତ ତୁହି ସୃଷ୍ଟିକର୍ତ୍ତା ଅନାଦି ମହାତ୍ମା
ସୃଷ୍ଟିର ମହିମା ତୁହି ଜାଣୁ ହଂପ୍ରାତ୍ତମା ।
ସପତଦ୍ୱୀପା ପୃଥିବୀ ଅଛୁ ତୁହି ବ୍ୟାପି
ତୋର ସଞ୍ଜିଲା ଜଗତ ଗୋଟା ଅଛୁ ଥାପି ।
ବେଦ ଶାସ୍ତ୍ର ଆଦିକରି ସର୍ବଧର୍ମ ସାଧି
ତ୍ରୈଲୋକ୍ୟ ମଧ୍ୟରେ ଦେବ ନାଗ ମନୁଷ୍ୟାଦି
ତୋର ମନ୍ତ୍ରରେ ପାଷାଣ ଜୀବ ହୋଇଯାଇ
ତେଣୁ ସକଳ ଦେବତା ସିନା ଦେହଧାରୀ ।
ପୃଥ୍ୱୀ ଆପ ତେଜ ବାୟୁ ଆକାଶ ସଞ୍ଜିଲୁ
ମନ୍ତ୍ର ଯନ୍ତ୍ର ତନ୍ତ୍ର ବିଦ୍ୟା ତୁହିଁ ଜାତକଲୁ ।
ଅଜଣା ଅଣଅକ୍ଷର ଭୂତ ଅଷ୍ଟନିଧି
ତୁହି ଅଟୁ ସମସ୍ତଙ୍କ ପୂଜାମନ୍ତ୍ର ବିଧି ।
କେତେ'ତ ତେହୁ ଯେଉଁ ମନ୍ତ୍ରେ ପୂଜାହୋଇ
ସେହିକଥା ନ ଜାଣନ୍ତି ଜଗପାଳେ କେହି ।
ତେଣୁକରି ତୁମ୍ଭଙ୍କୁ ଯେ କେହି ନ ପୂଜନ୍ତି
ଅପୂଜା ବ୍ରହ୍ମା ତୁମ୍ଭଙ୍କୁ ଜଗତେ ବୋଲନ୍ତି ।
କାହୁଁ ସେ ପୂଜିବେ ତୁମ୍ଭେ ନୁହ ଦେହଧାରୀ
ତୁମ୍ଭେ ସକଳ ଜୀବର ଅଟ ଅଧିକାରୀ ।
କଳପଣାରୁ ସଂସାର କର ଉତପତ୍ତି
ତୁମ୍ଭର ସଞ୍ଜିତ ହେବେ ହୋଇଛନ୍ତି ସ୍ଥିତି ।
ଅଜ୍ଞାନଜନ ତୁମ୍ଭଙ୍କୁ ନ ଜାଣନ୍ତି ତେତେ
ଅପୂଜା ବ୍ରହ୍ମା ବୋଲିଣ ବୋଲନ୍ତି ଜଗତେ ।
କେ ତୁମ୍ଭଙ୍କୁ କସ ଧେନ ପୂଜିବ ବା କାହିଁ
ସୃଷ୍ଟି ପୂଜା ହୁଅଇଲ ତୁମ୍ଭପୂଜା ନାହିଁ ।
ଚଉଖାଣ ଚଉଦ୍ଦଶୀ ଜୀବ ଜଳ ଜନ୍ତୁ
ତୁମ୍ଭଙ୍କୁ ପୂଜିବାକୁ କେ ନୋହିଲେ ସ୍ୱଜନ ।
ଅପାର ମହିମା କେହୁ ପାରେ ଅନ୍ତକରି
ତୁମ୍ଭେ ଏ ସକଳ ଘଟେ ସିନା ଅଛ ପୂରି ।
ଅଦେହ ଅଣାକ୍ଷର ତୁ ଅବଣା ତୋ ମୂର୍ତ୍ତି
ତୁମ୍ଭେ ସଞ୍ଜିଲ ତୁମ୍ଭଙ୍କୁ କେହି ନ ଜାଣନ୍ତି ।

ତୁମ୍ଭର ମହିମା କହିବାକୁ ଶକ୍ୟ ନାହିଁ
ମୁଁ କସ କହିବି ଅବା ନରଦେହ ବହି ।
ମାୟାମୋହ ସଂସାରେ ଏ ଆଶ୍ଚର୍ଯ୍ୟ ସର୍ବଥା
ଏହା ମନେ ବିଚାରି ମୁଁ ପାଉଅଛି ବ୍ୟଥା ।
ଦିବ୍ୟଦେହରୁ ପାପସାଞ୍ଚିଲ କର୍ମ ଜଞ୍ଜ ଲାଗି
ପୂର୍ବ ଦେହରୁ ଆଉ ମୁକ୍ତି ନ ପାଇଲି ଜାଗି ।
ଅପାର ଭୟ ହେ ସ୍ୱାମୀ ଲାଗିଲାକ ମୋତେ
ମୁକତି ମାର୍ଗକୁ ମୋତେ ଦେବ ଦେବନାଥେ ।
ତୁମ୍ଭ ପଦ୍ମପାଦେ ପ୍ରଭୁ କରୁଛି ପ୍ରଣାମି
ଜନମ ଭୂମି ପ୍ରାପତ ନ କର ହେ ସ୍ୱାମୀ ।
ପ୍ରତ୍ୟକ୍ଷ ଦାସ ଭକତି କରେ ଚତୁର୍ମୁଖେ
ଏ ଭବସାଗରୁ ସ୍ୱାମୀ ପାରିକର ସୁଖେ ।
ଏସନକ ସ୍ତୁତି ଯହୁଁ କଲେ ଦେବୀ ରତି
ପ୍ରସନ୍ନ ତାହାଙ୍କୁ ଆଜ୍ଞା ଦେଲେ ବେଦପତି ।
ବରମାଗ ମାଗୋ ଦେବି ଯେ ତୋହର ଇଚ୍ଛା
ସତ୍ୟକଲି ପୂରାଇବି ତୋର ମନୋବାଞ୍ଛା ।
ସୁଲକ୍ଷଣୀ ଯୁବତୀ ହୁଅ ପତିଭକ୍ତା
ସଉଭାଗ୍ୟବତୀ ହୋଇ ଥାଅ ତୁ ସର୍ବଥା ।
ପ୍ରସନ୍ନ ହୋଇ ତୋତେ ଗୋ ଦେଲୁ ଅବଧାନ
ଯାହା ଇଚ୍ଛା ତାହା ମାଗ ଯେମନ୍ତ ବିଧାନ ।
ଏହା ଶୁଣି ରତିଦେବୀ ସନ୍ତୋଷ ହୋଇଲେ
ହେ ପିତା ଏ ବୃତ୍ତିକଥା କହିଲ ବୋଇଲେ ।
ପତିବ୍ରତା ହୁଅ ବୋଲି ମୋତେ ଆଜ୍ଞାଦେଲ
କେମନ୍ତେ ହେବ ମୋର ପତିନାଶ କଲ ।
କନ୍ଦର୍ପ ବିନୁ ଆନେ ନ ବଳେ ମୋର ମତି
କେମନ୍ତେ ମୁଁ ପତିବ୍ରତା ହେବି ମହାସତୀ ।
ଏତେବଡ଼ ବର ଦେଲ ମୋର ଅକାରଣ
ତୁମ୍ଭଙ୍କୁ କ ବୋଲିବି ମୋ ପୂର୍ବର କଷଣ ।
ତୁମ୍ଭର ପ୍ରସାଦେ ପିତ ମୁଁ ପାଇବିଁ ଅବା
ଜାତକରି ଲକ୍ଷଣେ ହୋଇଲି ବିଧବା ।
ବ୍ରହ୍ମା ପରି ପିତା ଯାର ସାବିତ୍ରୀ ଯା ମାତା
କୁଳକୁ କଳଙ୍କ ହେଲି କି କରିବ ପିତା ।
କଷ୍ଟେ ଯେବେ ଅନୁଗ୍ରହ କଲ ବେଦବର
କାମକୁ ଦେଇ କରିବା ମୋତେ ପ୍ରତିକାର ।
ବ୍ରହ୍ମା ବୋଇଲେ ଗୋ ଆମ୍ଭେ ଦେଲୁ ତାକୁ ଶାପ
କେବେ ଅନ୍ୟଥା ନୋହିବ ନ କର ବିଳାପ ।

ଯାବତ ଚନ୍ଦ୍ର ସୂର୍ଯ୍ୟ ଗୋ ପଶ୍ଚିମେ ଉଦୟେ
ସମୁଦ୍ର ଯେ ଶୁଖିଯାଇ ହେବ ଅଗ୍ନିମୟେ ।
ସ୍ୱର୍ଗପାତାଳ ଯେବେ ଗୋ ହେବ ଏକସ୍ଥାନ
ତଥାପି ଆନ ନୋହିବ ମୋହର ବଚନ ।
ଏହା ଶୁଣି ରତିଦେବୀ ହୋଇଲେ ବିନମ୍ରୀ
ମୋ ପିତା ଅସାର ହେଲ ଦୁହିତା ମୁଁ ହୋଇ
ଲୋକ ଅପଖ୍ୟାତି ଜନ ମୁଖରେ ଦୂଷଣ
ଆହେ ଦେବବର ଲାଜ ପାଇବ ଆପଣ ।
ନିର୍ମଳ ଯେ ନିର୍ବିକଳ୍ପ ଅଟେ ଯାର ଅଙ୍ଗ
ସର୍ବଭୂତ ଆତ୍ମା ତୁ ଯେ ପରମ ତୋ ସଙ୍ଗ ।
ତୁମ୍ଭେ କୋପକଲେ ଆନ କେ ପାରଇ ରଖି
ବହନ୍ତା ପୁରୁଷ ତୁମ୍ଭେ ଯମ ଧର୍ମ ସାକ୍ଷୀ ।
ତୁମ୍ଭକଲ କର୍ମ ଆନ କେ କରି ପାରିବ
ଜୀବ ଆତ୍ମା ଜ୍ୟୋତି ପରମାତ୍ମା ସଙ୍ଗେ ଜୀବ
ଅନେକ ବିନୟେ ଯହୁଁ କହିଲେକ ରତି
ସାନନ୍ଦେ ପ୍ରସନ୍ନ ହେଲେ ଶୁଣି ବେଦପତି ।
କାମଦେବ ଶରୀରକୁ ନିର୍ମାଣ କଲେ
ଅଙ୍ଗ ଜାତ କରି ନାମ ଅନଙ୍ଗ ଯେ ଦେଲେ ।
ଏକ ଦେହ ଧାତୁକାରେ କଲେ ନିଜକାୟା
ମୃତ ସଞ୍ଜୀବନୀମନ୍ତ୍ରେ ଜୀଆଇଲେ ତାହା ।
ଆନ ଅଙ୍ଗ ରଚି ଆଣି ରତି ଆଗେ ଦେଲେ
ଦେଖି ତାକୁ ରତିଦେବୀ ଆନନ୍ଦ ହୋଇଲେ ।
ଅଙ୍ଗର ରଚନୁ ଯହୁଁ କାଢ଼ିଲେ ଅନଙ୍ଗ
ଅନଙ୍ଗ ତା ନାମ ଦେଲେ ନ ଥିବାରୁ ଅଙ୍ଗ ।
ତେଣୁ ସେ ଅନଙ୍ଗ ନାମ ଜଗତେ ବିଖ୍ୟାତ
ଅନଙ୍ଗ ନିର୍ମାଣ ଯହୁଁ କଲେ ବେଦନାଥ ।
ଦୋଷ ଅନୁରୂପେ ଯାହା ଶାପ ଦେଇଥିଲେ
ଦୁହିତା ବଚନ ଦେଖି ପ୍ରସନ୍ନ ହୋଇଲେ ।
ବେଣୁକୂଳକୁ ସଙ୍କଟ ଗୋଟା ପଡ଼ିଥିଲା
ଏକ ଅଙ୍ଗ ଦୁଇରୂପ ପୁନରପି ହେଲା ।
ଆଉରି ଗଢ଼ିଲେ ଅର୍ଦ୍ଧ ଅଙ୍ଗ ବେଦବର
ଶାପ ଅନୁକ୍ରମେ ତାକୁ କଲେକ ଅସୁର ।
ପ୍ରଥମେ ଯେ କାମରୂପ ଦଗ୍ଧ ହୋଇଥିଲା
ଦ୍ୱିତୀୟ ଜନମେ କାଳନେମି ସେ ହୋଇଲା ।
ଏକ କରେ ଧନୁ ଏକ କରେ ପଞ୍ଚଶର
ଏହି କଂସାସୁର ନାମେ ହୋଇଲା ଅସୁର ।

କାମର ପୁଷ୍ପଧନୁ ସେ ବାମେଣ କହିଲା
ବସନ୍ତ ନାମେ ଯେ ତାର ସଖା ହୋଇଥିଲା
ପୂର୍ବେ କାମଦେବର ଯେ ଥିଲେ ପଞ୍ଚଶର
କାମଦେବର ଶରୀରୁ ହେଲେ ଅବତାର ।
ଧାତାର ଶାପେ ଏମାନେ ହୋଇଲେ ଅସୁର
ତୃଣାବର୍ତ୍ତ ଖରନାମ ହୋଇଲା ତାଙ୍କର ।
ପୂର୍ବେ ସେ କାମଦେବର ଥିଲା ଯେଉଁ ରଥ
ଶକଟାସୁର ରୂପେ ସେ ହୋଇଲା ସମ୍ଭୂତ ।
ସେହି ରଥବରେ ଥିଲେ ଯେଉଁ ଅଶ୍ୱବର
ଏମାନେ ଅସୁର ଦେହ ଧରି ଅବତରି ।
ଚାଣୂର ମୁଷ୍ଟିକ ବ୍ୟୋମା ବତ୍ସା ବୃଷନାମ
ମହାବଳୀ ଅସୁରେ ଏ ପ୍ରତ୍ୟକ୍ଷରେ ଯମ ।
ତେଣୁ ସେ ଅସୁର ଯୋଦ୍ଧା ମହାତେଜୋମୟ
କେତି କୋଟି ଇନ୍ଦ୍ରକୁ ସେ ନ କରନ୍ତି ଭୟ
ଏ ଯେ ସେହି କାମଦେବ ଅଂଶୀ କଂସବୀର
ପୂର୍ବେ ଥିଲା କାଳନେମି ନାମରେ ଅସୁର ।
ସବୁଦିନେ କାଳନେମି ଏହାଙ୍କର ସଖା
ଅଭେଦ ସଖା ଅଟନ୍ତି ଏହି ଉଭରଙ୍କା ।
ରଥୀ ଯେ ସାରଥି ଧନୁ ସଖା ପଞ୍ଚବାଣ
କାମଦେବର ଶରୀରୁ ଏମାନେ ନିର୍ମାଣ ।
ଶକଟ ଯେ ତୃଣା ବତ୍ସା ବକାସୁର ମେଳ
ଅଶ୍ୱାଧେନୁକାଯେବ୍ୟୋମକେଶୀ ଦୈତ୍ୟମୂଳେ
ଏ ଯେ ଅଷ୍ଟମଲ୍ଲ ଜାଣ ଅଟନ୍ତି ଯୁକତେ
ଚାଣୂର ମୁଷ୍ଟିକ ଆଦି ପୂତନା ସହିତେ ।
କୁବଳୟା ଗଜ ଆଦ ଆଉରି ଯେ ମଲ୍ଲ
ଧାତାର ଶାପେ ହୋଇଲେ ଏ ଅସୁର ଦଳ
ଶୁକମୁନି କହନ୍ତି ଯେ ପରୀକ୍ଷ ଅଗ୍ରତେ
ଅସୁରଙ୍କ ପୂର୍ବଜନ୍ମ କହିଲି ମୁଁ ତୋତେ ।
ଜୟ ଜୟ ଜଗନ୍ନାଥ ଜଗତ କରତା
ଚତୁର୍ଦ୍ଧା ମୂରତି ତୋର ଚତୁର୍ବର୍ଗ ଦାତା ।
ନୀଳଗିରି ଜଗନ୍ନାଥ ଚରଣେ ଶରଣ
କବି ଅଚ୍ୟୁତର ଭବଭୟ ନିବାରଣ ।



## ରକ୍ଷ ଭକ୍ଷ ଯୁଦ୍ଧ

ଏଥୁଅନ୍ତେ ପରୀକ୍ଷିତ ନାମେ ମହାରାଜା
ଶୁକମୁନିର ଚରଣେ କଲେ ଦିବ୍ୟପୂଜା ।

ହେ ମୁନି କହିବା ଏଥୁ ଅନ୍ତେ ଯେଉଁ କଥା
ତବ ମୁଖୁଁ ଶୁଣି ତୁଟିଯିବ ମନବ୍ୟଥା ।
ହେ ମୁନି ଧାତାର ସାର୍ଥ୍ୟ ରହିଲା ଯେ ଗର୍ଭେ
କେମନ୍ତ ହେଲା ତା କହ ହେ ମୁନି ପୁଙ୍ଗବ ।
ସେ ପୁତ୍ରଗୋଟି କେମନ୍ତେ କଲା ପୁରୁଷାର୍ଥ
ସେ କଥା ବିଶେଷି ମୋତେ କହ ତପୋବନ୍ତ
ଇଦଂ ରାଜା ପ୍ରଶ୍ନବାକ୍ୟ କହନ୍ତ ଯେ ଯତି
ସାବଧାନେ ଶୁଣ ତୁହେ, ଅର୍ଜୁନର ନାତି ।
ଧାତାର ସାର୍ଥ୍ୟ ଯେବଣ ପୁତ୍ର ଅତି ଦକ୍ଷ
ପ୍ରଚଣ୍ଡ ମହାବଳୀ ସେ ନାମ ତାର ଉକ୍ଷ ।
ଯେତେବେଳେ ଜାତହୋଇପଡ଼େ ମହୀତଳେ
ସେହିକ୍ଷଣି ସେ ମଞ୍ଚପୁରେ କମ୍ପେଆଖଣ୍ଡଳେ ।
ସେ ପୁତ୍ରଗୋଟି ଧଇଲେ ଧାତା ଶ୍ରଦ୍ଧେକୋଳେ
ଆକର୍ଷି ଧରନ୍ତେ ପଡ଼ିଗଲେ ମହୀତଳେ ।
ସେ ପୁତ୍ର ବୋଇଲା ତୁହେ ଶୁଣିମା ପିତୃର
କ୍ଷୁଧା ଲଗୁଅଛି ମୋତେ ବଡ଼ ତୁ ଅଧାର ।
ଯଦ୍ୟପି ଆହାର ପିତା ନ ଦେଉଛି ମୋତେ
ନ ଦେଲେ ତୁ ଏହିକ୍ଷଣି ଗିଳିବି ମୁଁ ତୋତେ
ଏତେ ବୋଲି ଆକର୍ଷିଣ ଧରେ ପିତା ମୁଣ୍ଡ
ବେକଧରି ମୋଡ଼େ ବଂସ ଦୁର୍ଦ୍ଦଣ୍ଡ ପ୍ରଚଣ୍ଡ ।
ଦେଖିଣ ଧାଇଲେ ପିତାମହ ମହାଭୟ
ବୋଇଲେ କେମନ୍ତେ ଆଜ ରଖିବ ମୋ କାୟ
କ୍ଷଣିକେ ସୃଷ୍ଟିକୁ ଆମ୍ଭେ ବର୍ଜିଏଡ଼େ କଥା
ଆପଣା ଦେହକୁ ଆମ୍ଭେ କରିଲୁ ବ୍ୟଥା ।
ଦାନବର ମହାକୋପ ଦେବଗଣ ଦେଖି
ସେ ଯାହାର ପଳାଇଲେ ଭୁବନ ଉପେକ୍ଷି ।
ବାରସ୍ତମ୍ଭ ଭୁବନକୁ ଗ୍ରାସେ ସୁରପନ୍ତି
ଅନ୍ତରୀକ୍ଷେ ଲୁଚିଲେ ସେ ପ୍ରାଣେ କରି ଯତ୍ନି ।
ଗନ୍ଧର୍ବ ଶୂନ୍ୟମାର୍ଗେ ସ୍ଥଳ ଇ ଗନ୍ଧର୍ବେ
ଭୂତେ ଆରୋହି ଏକାନ୍ତ ମହାଦେବେ ।
ବିଧାତା ବୋଇଲେ ଅରେ ଶୁଣ ପୁତ୍ରଗୋଟି
ଈଶ୍ୱରଙ୍କୁ ଭକ୍ଷିଣ ତୁ ଆମ୍ଭାକୁ ଉଚ୍ଛିଷ୍ଟି ।
ଧାତାକୁ କଷ୍ଟରେ ଉପହାସ କରୁଥିଲେ
ତେଣୁକୋପେ ଈଶ୍ୱରଙ୍କୁ ଧାତାଦେଖାଇଲେ ।
ଧାତାର ବଚନେ ପୁତ୍ର ଉଠେ ଗଳଗାଜି
ମନ୍ଦର ପର୍ବତ ଯଦା ପଡ଼ଇ ଭାଜି ।

ଈଶ୍ୱରଙ୍କ ସମ୍ମୁଖରେ ସେ ପ୍ରବେଶିଲା ଯାଇ
ଧରୁ ଧରୁ ପଳାଇଲେ ପାର୍ବତୀଙ୍କ ସାଇଁ ।
ବୃଷଭେ ଚଢ଼ି ପଳାଇ ଯାନ୍ତି ପଶୁପତି
କଣ୍ଠାଳ ଗୋଡ଼ାଇ ଉକ୍ଷ ଲଗେ ପଛକତି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ସେ ତିନପୁରେ ଘୂର୍ଣ୍ଣି
ଦୈତ୍ୟର ଡରେ ପଳାଇ ଯାନ୍ତି କାଶୀବାସୀ
ପଛରେ ଦାନବ କୋପେ ଅଛଇ ଗୋଡ଼ାଇ
ଧରନ୍ତେ ସ୍ୱାମୀ ଛଡ଼ାଇ ଯାଆନ୍ତି ପଳାଇ ।
ଗୁପତେ ସଦାଶିବ ଲୁଚି ଯାନ୍ତି ତହିଁ
ଦଣ୍ଡାୟତେ ବେଗେ ଧାଇଁ ଯାଇ ସେ ଭେଟଇ
ଏମନ୍ତ ଈଶ୍ୱର ବହୁଦୂର ପଳାଇଲେ
ପାତାଳ ବୈକୁଣ୍ଠପୁରେ ବିଷ୍ଣୁଙ୍କୁ ଭେଟିଲେ
ଝଟକେ ସେ ବିଶ୍ୱନାଥ ଉଚ୍ଚ ଡାକଦେଲେ
ନାରାୟଣ ମୋତେ ରାଖ କହିସି ବୋଇଲେ
ବିଷ୍ଣୁ କହିଲେ କାହାକୁ ଭୟ ତୋର ଶିବ
ରୁଦ୍ର ବୋଇଲେ ଗୋଡ଼ାଇ ଅଛଇ ଦାନବ
ଶରଣ ପଶିଲି ମୋତେ ରଖ ବନମାଳି
ଶୁଣି ନାରାୟଣ ଭୁଜ ତୋଳି ଦେଲେ ଟେକି
ରଖିଲ ରଖିଲ ରୁଦ୍ର ନ କରନ୍ତୁ ଭୟ
କଢ଼ାଇ ଦେଲେ ଅସୁରପାଏ ବାହୁଦ୍ୱୟ ।
ଅସୁରକୁ ଧଇଲେ ସେ ନ ପାରିଲା ଚଳି
ବିଶ୍ରାମ କଲେ କର୍ପୂର ସେ ଚନ୍ଦ୍ରମଉଳି ।
ନ ଚଳି ପାରି ଅସୁର କୋପେ ଗୁରୁତର
ନଖ ବଢାଇ ଚିରିଲା ଶ୍ରୀ ବିଷ୍ଣୁର କର ।
ବିଷ୍ଣୁ ହସ୍ତୁ ବାହାରିଲା ଯେବଣ ରୁଧିର
କମଣ୍ଡଳୁ ଦେଖାଇଲେ ରୁଦ୍ର ଧାଡିକାର ।
ଆପଣା ଅଙ୍ଗୁ ବିଭୂତି ତକ୍ଷଣେ କାଢିଲେ
ଅନ୍ତପେତନରେ ମେଦ ପିଣ୍ଡୁଳା ଗଢିଲେ ।
ମୃତ ସଞ୍ଜିବନୀ ମନ୍ତ୍ର ପଢ଼ି ଦେବରାଜ
ଜୀବନ୍ତ ଦେଲେ ତାହା ଉଗ୍ରକଲା ତେଜ ।
ମହାବଳବନ୍ତ ପୁତ୍ର ହେ ଇନ୍ଦ୍ରକ ହେଲା
ବ୍ରହ୍ମପୁତ୍ରହୁଁ ଦ୍ୱିଗୁଣ ତେଜ ଅଛି ବଳ ।
ଶ୍ରୀହରିର ମୁଖଚାହିଁ ମାଗିଲା ଆହାର
ଶ୍ରୀହରି ବୋଇଲେ ଭକ୍ଷ ଉକ୍ଷ ଭକ୍ଷ କର ।
ଚଳିଲା ସେ ଭକ୍ଷ ନାରାୟଣ ଆଜ୍ଞା ପାଇ
ଉକ୍ଷ ରାକ୍ଷସ ଯହିଁରେ ମିଳିଲେ ଯାଇଁ ।

ରେରେକାର କରି ବାଟ ଭଗାଇଲା ଆଗେ
ତାକୁ ଦେଖି ରକ୍ଷସାର ଧାଇଁଲେ ବେଗେ ।
ବେନି ମହାସାର ଚଳି ହୋଇଲେକ ଭେଟ
ଅଇରାବତ ଯେସନେ ମେରୁର ନିକଟ ।
ଆକର୍ଷି ଧରନ୍ତେ ଭକ୍ଷ ପେଲି ପକାଇଲା
ଦଶସହସ୍ର ଯୋଜନ ସେ ଭକ୍ଷ ପଡ଼ିଲା ।
ପୁଷ୍ପମୂର୍ଣ୍ଣା ପ୍ରାପ୍ତ ସେହୁ ତାଳ ନ ପଡ଼ିଲା
ଚୂର୍ଣ୍ଣ ନ ହୋଇ ଆକାଶମାର୍ଗେ ଉଡ଼ିଗଲା ।
ପୁଣି ସେ ବେନି ପର୍ବତ ଘେନି ବେନିହସ୍ତେ
ବୁଲାଇ କୋପେ ପିଟିଲା ଭକ୍ଷସାର ଗାତ୍ରେ ।
ଦେଖିଣ ସେ ଭକ୍ଷସାର ପାତିଲାକ ମୁଣ୍ଡ
ପର୍ବତ ପଡ଼ି ତା ମୁଣ୍ଡେ ହୋଇଲା ଖଣ୍ଡ ଖଣ୍ଡ ।
ପୁଣିହିଁ ବେନି ପର୍ବତ ମାଇଲା ସେ ଆଣି
ପର୍ବତ ଆସନ୍ତେ ଭକ୍ଷ ପାତି ଶିର ପୁଣି ।
ନିର୍ଘାତ ଶବଦ କରି ପଡ଼ି ହୁଡ଼ଘଡ଼େ
ଧୂଳି ହୋଇ ଉଡ଼ିଗଲା ବେଗଁ ଚଉଦିଗେ ।
ମହାବଳବନ୍ତ ଦୁଇସାର ଭକ୍ଷ ଭକ୍ଷ
ଏକକୁ ଆରେକ କେହୁ ନୁହନ୍ତି ମାରେଖ ।
ମହାବଳୀ ଅସୁରି ସେ କରି ନାନା ମାୟା
ମେରୁ ମନ୍ଦର ପ୍ରାୟେ ବଢ଼ଶେ ତାଙ୍କ କାୟା ।
ଆକାଶରେ ଲାଗେ ଯାଇଁ ତାଙ୍କ ଶିର ବେନି
ଦେଖି ଡରେ ଦେବଗଣେ ଯାନ୍ତି ପ୍ରାଣଘେନି
ରେରେକାର ଶବଦ ସେ ଭଡ଼ ଘୋରଧ୍ୱନି
ପାଦଭରେ କମ୍ପମାନ ହୁଅଇ ମେଦିନୀ ।
ବହାଣ ଗତ କରିଣ ମାଲ ବନ୍ଧା ସନ୍ଧ
ଭୁଜେଭୁଜ ଛନ୍ଦ ପାଦେ ପାଦ ନେଇ ବାନ୍ଧ ।
ମୁଣ୍ଡକୁ ମୁଣ୍ଡ ହୁଅନ୍ତି କୋପେ କୋଡ଼ାକୋଡ଼ି
ବଧାଘାତରେ ପର୍ବତ ଶୃଙ୍ଗ ପଡ଼େ ଝଡ଼ି ।
ଗଡ଼ାଗଡ଼ି ପଡ଼ାପଡ଼ି ମାରି ବଜ୍ରମୁଷ୍ଟି
ପାଦଭରେ କମ୍ପମାନ ହୁଏ ନବସୃଷ୍ଟି ।
ପଡ଼ନ୍ତି ଉଠନ୍ତି ବେଗେ ବସନ୍ତି ସେ ମାଡ଼ି
ହଅନ୍ତି ସେ ମହାକୋପେ ଭୟଙ୍କର ରଡ଼ି ।
ରୁଧିରରେ ବଳେପନ ଦୁହିଁଙ୍କର ଅଙ୍ଗ
କ୍ଷଣେହେଁ ସେ ନ ଗୁଡ଼ନ୍ତି ବେନି ରଙ୍ଗ ଭଙ୍ଗ
ଗଡ଼ାଗଡ଼ି ଘାତେ ବେନି ଦୈତ୍ୟ ବେହଲାଗି
ଶିଳାମାନ ଚୂର୍ଣ୍ଣ ହୁଏ ଗିରି ପଡ଼େ ଭାଙ୍ଗି ।
କ୍ଷଣକେ ବସନ୍ତି କ୍ଷଣେ ଲେଟନ୍ତି ଧରଣୀ
କେହୁ ଯେ କାହାକୁ ଯୁଦ୍ଧେ ନ ପାରନ୍ତି ଜିଣି
ସକଳ ଦେବତା ସ୍ୱର୍ଗ ଭୁବନରେ ଥାଇ
ଏକଦୃଷ୍ଟିରେ ଦୁହିଙ୍କି ଅଛନ୍ତି ଅନାଇଁ ।
ବ୍ରହ୍ମା ବିଷ୍ଣୁ ରୁଦ୍ର ଅଙ୍ଗୁ ଜାତ ବେନି ଅଙ୍ଗ
କ୍ଷଣେ ନ ଗୁଡ଼ି କରନ୍ତି ଦୁହେଁ ରଣରଙ୍ଗ ।
ଛୟାଣୋଇ ସହସ୍ରେକ ବରଷ ଯୁଝିଲେ
କେହୁ ଯେ କାହାକୁ ପୁଣି ଜିଣି ନ ପାରିଲେ
ହସ୍ତ ପ୍ରସାରିଣ ଚଳି ସକଳ ଦେବତା
ସେ ଦୁଇସାରଙ୍କୁ ଡରେ କହିଲେ ଏ କଥା ।
ଏତେ ବଡ଼ ସଂଗ୍ରାମତ ଆରମ୍ଭିଲ ଆଣି
ଏ ଯୁଦ୍ଧେ କେହୁ କାହାକୁ ନ ପାରିଲ ଜିଣି ।
ଅକାରଣେ ଗର୍ଜି ନୁହଁ ଦୁହେଁ ଥାଅ ରହି
କଛି କାର୍ଯ୍ୟ ନୋହିବ ନ ମର ଦୁଃଖପାଇ ।
ସଂଗ୍ରାମରେ ବେନି ସାର ଅଟ ସମସର
ଏକରେ ଆରେକ କେହୁ ନୋହିବ ସଂହାର
ଅନିମିତ୍ତେ ଶରୀରେ ନ ପାଅ ତୁମ୍ଭେ ବ୍ୟଥା
ପୁରାଣର ବାଣୀ ଏ ଯେ ଅଟେ ପୂର୍ବକଥା ।
ଆରଣ୍ୟକ ନାମେ ଯେଉଁ ସତ୍ୟଯୁଗ ହେବ
ଗ୍ରହରୂପେ ତୁମ୍ଭେ କେତୁ ମଙ୍ଗଳ ହୋଇବ ।
ଘୋର ସଂଗ୍ରାମ କରିବ କୃଶଦ୍ୱୀପେ ରହି
ଦେବଲୋକଠାରୁ ତୁମ୍ଭେ ବ୍ରହ୍ମଲୋକ ଯାଇ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ପୂରିଥିବ କାୟେ
ଦେବ ବରଷେ ଯୁଝିବ ସସ୍ରବର୍ଷ ଯାଏ ।
ଫୁଟି ଯେ ରହିବ ତୁମ୍ଭେ ନୋହିବ ବିନାଶ
ପୁଣି ତୁମ୍ଭେ ତ୍ରେତାଯୁଗେ ପାଇବ ପ୍ରକାଶ ।
ସେ ଯୁଗରେ ଅବତାର ହେବ ତୁମ୍ଭେ ପୁଣି
ଗଉତମ ପିତା ହେବେ ଅହଲ୍ୟା ଜନନୀ ।
ପରପୁରୁଷ ସଙ୍ଗମେ ଅଞ୍ଜନାର କୋପେ
ମର୍କଟ ହେବ ଗୌତମ ଋଷିଙ୍କର ଶାପେ ।
ତାହାଙ୍କର ପତ୍ନୀ ନାମ ଅହଲ୍ୟା ସୁନ୍ଦରୀ
ଅପୂର୍ବ ରୂପବନ୍ତୀ ସେ ସୁରମନୋହାରୀ ।
ଇନ୍ଦ୍ର ସୂର୍ଯ୍ୟ ଦୁହେଁ ତାକୁ କପଟେ ହରିବେ
ସେ ଦୁହିଁଙ୍କ ବୀର୍ଯ୍ୟେ ଜାତ ହେବ ବେନିତୁମ୍ଭେ
ବାଳି ସୁଗ୍ରୀବ ହୋଇବ ଜାଣ ତୁମ୍ଭ ନାମ
ସେ ଯୁଗେ କରିବ ତୁମ୍ଭେ ପୃଥିବୀ ସଂଗ୍ରାମ ।

ବାନରରୂପ ତୁମ୍ଭର ହେବ ବେଣଅଙ୍ଗ
ଅପ୍ରମିତ ଶସ୍ତ୍ରଭେଦ ମୁଦ୍ଗାରଣରଙ୍ଗ ।
ତୁମ୍ଭ ରୁଧିରେ କର୍ଦ୍ଦମ ହୋଇବ ଧରଣୀ
ପାଦଧୂଳିରେ ଅଦୃଶ୍ୟ ହେବେ ଦିନମଣି ।
ତଦନ୍ତେ ଦ୍ୱାପର ଯୁଗ ହୋଇବ ପ୍ରବେଶ
ଭାରତ ଯୁଦ୍ଧେ ସମର କରିବ ବଂଶଷ ।
ପ୍ରଥମରେ ଭୀଷ୍ମ ଦେବ ସଂଗ୍ରାମ କରିବେ
ଦଶଦିନେ ଭୀଷ୍ମ ଶରଶଯ୍ୟାରେ ରହିବେ ।
ତଦନ୍ତେ ଦ୍ରୋଣ ଗୁରୁ ଯେ ସେନାପତିହେବେ
ପାଞ୍ଚଦିନଯାଏ ଦ୍ରୋଣ ସମର କରିବେ ।
ଅଢ଼ାଇଦିନ କର୍ଣ୍ଣ ଯେ ସେନାପତି ହେବ
ଆଉ ଓଳକେ ଅଶ୍ୱସ୍ଥି ସବ ନାଶଯିବ ।
ଏମନ୍ତେ ଭାରତ ଯୁଦ୍ଧେ ହେବେ ରଣଜଣ
ପାଣ୍ଡବ ଆଉ ରହିବେ ସର୍ବେ ତେରଜଣ ।
ସେ ଯୁଗେ କର୍ଣ୍ଣ ଅର୍ଜୁନ ରୂପରେ ସମର
ଏ ଯୁଗ ଯୁଦ୍ଧେ ତୁମ୍ଭର ନାହିଁ ଅପହାର ।
ଦ୍ୱାପରଯୁଗେ ହୋଇବ ତୁମ୍ଭେ ମହାରଥୀ
ସ୍ୱୟଂ ବାସୁଦେବ ହେବେ ଅର୍ଜୁନ ସାରଥି ।
କର୍ଣ୍ଣ ରଥର ସାରଥି ଶଲ୍ୟରାଜ ହେବ
ମହାଘୋର ସଂଗ୍ରାମ ସେ ଯୁଗରେ କରିବ ।
ଏକଥା ଗୋଟି ଅନ୍ୟଥା ନୋହିବହୋ ଜାଣ
ପୁରାଣର ବାଣୀ ନିରଧାର ଏ ବଚନ ।
ଅକାରଣେ ଦୁଃଖ ତୁମ୍ଭେ ପାଇ ହୋ ନ ମର
ଯୁଗେ ଯୁଗେ ରହି ତୁମ୍ଭେ କର ହୋ ସମର
ଏତେବୋଲି ଅନ୍ତର୍ଦ୍ଧାନେ ଗଲେ ଦେବଗଣ
ବ୍ରହ୍ମା ସହିତେ ସକଳ ଦେବ ସୁରଗଣ ।
ଶୁଣି ଭକ୍ଷ ଭକ୍ଷ ବେଗେ ସଂଗ୍ରାମକୁ ତେଜି
ଦୁହେଁ ଜଳହେଲେ ତହିଁ ଶାନ୍ତମୂର୍ତ୍ତି ଭଜି ।
ବିଚାରିଲେ ଅକାରଣେ କାହିଁକି ମରିବା
ଦେବତାଙ୍କ କଥା କିମ୍ପା ଅନ୍ୟଥା କରିବା ।
ସମସ୍ତେକ ପରେ ପୁଣି ଯୁଝିବା ବିସ୍ତର
ଏତେବୋଲି ଦୁହେଁ ଗଲେ ରଣତେଜ୍ୟାକରି
ମନ ଶାନ୍ତ କରି ବେନି ରହିଲେ ନିଶ୍ଚିନ୍ତେ
ହରିବଂଶର ସମସ୍ୟା ଅଟଇ ଏମନ୍ତେ ।
ଶୁକମୁନି ଭୋଇଲେ ଭୁ ଶୁଣ ହୋ ପରୀକ୍ଷ
ଏମନ୍ତେ ସଂଗ୍ରାମ ତେଜି ଗଲେ ରକ୍ଷଭକ୍ଷ ।
ପ୍ରଥମ ଅବତାରେ ସେ ରକ୍ଷଭକ୍ଷ ହେଲେ
ଦ୍ୱିତୀୟ କେତୁ ମଙ୍ଗଳ ପୁଣି ବୋଲାଇଲେ ।
ତୃତୀୟ ଅବତାରେ ସେ ବାଳି ସୁଗ୍ରୀବର
ଚତୁର୍ଥେ କର୍ଣ୍ଣ ଅର୍ଜୁନ ନାମ ତାହାଙ୍କର ।
ଗୋବିନ୍ଦ ଭିଆଇ ମହାଭାରତ ଯେ ଯୁଦ୍ଧ
ତାହା କହିବାକୁ ରାଜା କାହାର ବା ସାଧ ।
ଅସଂଖ୍ୟ ଅଗୋଚର ସେ ଭାରତ ମହିମା
ତଦନ୍ତ କରି ନ ପାରେ ଯାହା ବେଦ ବ୍ରହ୍ମା
କହିବ ମାନବମାତ୍ର କେବା ଦେହଧରି
ସୂଚୀର ମୁନେ ପର୍ବତ କେହି ଟାଳିପାରି ।
ନ ପଢ଼ିଲି କାବ୍ୟ ଗ୍ରନ୍ଥ ପୁରାଣର ବାଟ
କେବଳ ମୋ ପୂର୍ବଭାଗ୍ୟେ ହେଲା ଜ୍ଞାନଭେଟ
ଚଞ୍ଚଳ ଚିତ୍ତ ମୋହର ବାଳଭାବ ବୁଦ୍ଧି
ପଣ୍ଡିତ ସଙ୍ଗେ ବସିବା ପାଇଁ ନାହିଁ ସିଦ୍ଧି ।
ଶତଜନ୍ମ ବାସନାରୁ କରିଛି ଭରସା
ହରିବଂଶ କହିବାକୁ ବଳିଲା ମନୀଷା ।
ନୁହଇ ମୁଁ ସାମରଥ ଜାଣିବାକୁ ଏହା
ବେଦବର ନନ୍ଦନ ଯେ ହେଲେ ମୋତେସାହା
ସେ ଯାହା ପ୍ରସନ୍ନେ ମୋତେ କହିବେ ତା ସିଦ୍ଧି
ଶାରଦା ଦେବୀ ପ୍ରସନ୍ନେ ସ୍ଫୁରେ ମୋର ବୁଦ୍ଧି
ଜ୍ଞାନୀପଣ୍ଡିତଙ୍କୁ ମୋର ବହୁତ ବିନୟ
ତାଙ୍କ ପ୍ରସନ୍ନେ ଉଦିତ ସିନା ପୁଣ୍ୟଚୟ ।
ବାଳକ ବୁଦ୍ଧି ମୋହର ନ ଘେନିବା ଦୋଷ
ଶୁଣି ନରଙ୍କ ପାତକ ମାନ ହେବ ଧ୍ୱଂସ ।
ଶ୍ରୀ ଜଗନ୍ନାଥଙ୍କ ରଙ୍ଗା ଶ୍ରୀ ଚରଣ ଭାବ
ଭାଗବତ ପାଦ ସେବେ ଅଚ୍ୟୁତ ଯେ କବି



## କଂସର ରାଜ୍ୟାଭିଷେକ

ଏ କଥା ଶୁଣଣ ପୁଣି ବୋଇଲେ ପରୀକ୍ଷ
କଂସ ପୂର୍ବଜନ୍ମ ଶୁଣି ହୋଇଲି ମୁଁ ମୋକ୍ଷ ।
ଏଥିଉତ୍ତରେ ଯେ ପୁଣି ହୋଇଲାକ କସ
ସେ କଥା କହି ମୋ ଆଗେ ଫେଡ଼ିବାସନ୍ଦେଶ
ରାଜା ବଚନେ ବୋଲନ୍ତି ଶୁକ ମହାଯତି
ଶୁଣ ଆହେ ମହାରାଜା କଂସର ଅମାତ ।
ଅଷ୍ଟମଲ୍ଲ ଆଦି ଯେତେ ଅସୁର ଥିଲେ
ପରପଞ୍ଚ କରି ନାନା ବୁଦ୍ଧି ଶିଖାଇଲେ ।

ଏକଦିନେ କଂସ ଅଷ୍ଟମଲ୍ଲଙ୍କୁ ଯେ ଘେନି
ନଗ୍ରଭିତରେ ପଶିଲା ରାଜା ଉଗ୍ରସେନ ।
ରାତ୍ର ପାହିଲେ ସମସ୍ତେ ଏକସ୍ଥାନ ହୋଇ
ଅନ୍ତର ଲୋକମାନଙ୍କୁ କଡ଼ିରୁ ଛଡ଼ାଇ ।
ଏକାନ୍ତ ଘରେଣି ବସି ଭାଳେ କଂସରାର
ଏକମାତ୍ର ଅଷ୍ଟମଲ୍ଲ ଅଛନ୍ତି ସଙ୍ଗର ।
ଷଣ୍ଢ ଶକଟା ଚାଣୂର ବତ୍ସା ବକା କେଶୀ
ମୁଷ୍ଟିକ ଧେନୁକା ମୂଳେ ଅଷ୍ଟବୀର ବସି ।
ଏହାଙ୍କୁ ବସାଇ କଂସ କହିଲା ବାରତା
କାମଦେବ କାଳନେମି ହେବା ଯେତେକଥା
କହିଲା ସଂକ୍ଷେପି ସବୁ ପୂର୍ବ ଜନ୍ମ ବାଣୀ
ଅଷ୍ଟମଲ୍ଲେ ଯେ ସନ୍ତୋଷ ହେଲେ ତାହାଶୁଣି
ଆପଣାର ପୂର୍ବକର୍ମ ବଳବନ୍ତ ପଣ
କାଳନେମି ଅବତାରେ ଯେତେ କଲା କର୍ମ
ନାରଦ ମୁନିଙ୍କ ଆଜ୍ଞା ଜାଣି ମନଯୋଗେ
ସକଳ ବସି କହିଲା ସଖାଙ୍କର ଆଗେ ।
ଶୁଣି ଅଷ୍ଟମଲ୍ଲେ ଭଜ ପରମ ଯେ ଶାନ୍ତ
ବୋଇଲେ ତୁ ଖେଚରର ସାଧିଲୁଟ ପୃଥ୍ୱୀ
ତୁମ୍ଭ ଅମ୍ଭ ପଞ୍ଚଭୂତ ଆତ୍ମାର କାରେଣୀ
ଏତେକାଳେ ବିଧାତା ଯେ ଭେଟାଇଲା ଆଣି
କେଶୀ ବୋଇଲା ଶ୍ୱେବେଦ କହିଲ ଯେକଥା
ବଳଶାର୍ଯ୍ୟ ଥାଉଁ କପାଁ ଯାଇବ ବ୍ୟବସ୍ଥା ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ ଜିଣି ଭୁଜବଳେ
ଯେ ଅମାନ୍ୟ ହେବ ତାଙ୍କୁ ନାଶି ଅବହେଳେ
ଯମଦଣ୍ଡ ଚଳାଇବା ବିଜୟୀ ହୋଇବା
ସମସ୍ତ ରାଜାଗଣଙ୍କୁ ସମରେ ଜିଣିବା ।
ପ୍ରଥମେ ସ୍ୱର୍ଗକୁ ଚାଲ ଯିବା ବେଗେ କରି
ଦୁର୍ଦ୍ଦଣ୍ଡ ଦେବଗଣଙ୍କୁ ପକାଇବା ମାରି ।
ସଚରାଚର ପୃଥ୍ୱୀରେ ଅଛନ୍ତି ଯେ ରାଜା
ସମ୍ମାନ ଦେଇ ଆମ୍ଭଙ୍କୁ କରିବେକ ପୂଜା ।
ଯାଦବବଂଶ ଘେନିବା ମଥୁରା ଯେ ପୁରୀ
ଏମାନେ ମନ୍ତ୍ରୀ ଅଛନ୍ତି ସମଧାସ୍ତୁ କରି ।
ଆମ୍ଭର ଯେ ବଳଶାର୍ଯ୍ୟ ନ ଜାଣନ୍ତି କେହି
ନିଲକ୍ଷଣୀ ଅଟନ୍ତି ଏ ସ୍ଥାନ ନରଦେହି ।
ଉଗ୍ରସେନ ହୋଇଅଛି ମଥୁରାରେ ରାଜା
ଏହାଙ୍କୁ କପାଁ କରିବା ଆମ୍ଭେ ପାଦ ପୂଜା ।

ବଳେ ଚାଲ ରାଜ୍ୟଯାକ ବସିବାକ ମାଡ଼ି
ପ୍ରାଣେ ନ ମାରି ରାଜ୍ୟରୁ ଦେବାକ ଘଉଡ଼ି ।
ଯଦ୍ୟପି ଯାବତ ଘେନି କରିବେଟି ମେଳ
ଉଗ୍ରସେନ ଦୁଇ ଆଖି ପକାଇବା ଖୋଳି ।
ତୁମ୍ଭର ଥାଆନ୍ତେ କପାଁ ତାର ରାଜାପଣ
ରଖି ନ ପାରିବେ ତାକୁ ଆସି ଦେବଗଣ ।
ସୁବୁଦ୍ଧି ବତ୍ସର ଯେବେ ଶାନ୍ତମୂର୍ତ୍ତି ହେବ
ପୁତ୍ର ରାଜା ହେଲେ ରାଜପିତା ବୋଲାଇବ ।
ଏବେ ତୁମ୍ଭେ ମଥୁରାରେ ହୋଇଛ କାରେଣି
ଆପଣା ହୁଅ ମଥୁରା ରାଜଶିରୋମଣି ।
ଇନ୍ଦ୍ରକୁ ଘଉଡ଼ ଦେବା ଆହେ କଂସରାଜା
ନିରନ୍ତର ଆମ୍ଭେ ତୋତେ କରୁଥିବୁ ପୂଜା ।
ତେବେ ବଡ଼ପଣ ତୋର ହେବ ଭୋଜରାଜା
ପିତାସ୍ନେହ କଲେ ପଛେ ପାଇବୁ ତୁ ଲଜ୍ଜା
କେଶୀର ବଚନ ଶୁଣି କଂସ ଯେ ବୋଇଲା
ତୁମ୍ଭେଯାହାବୋଇଲତା ମୋତେ ଯୋଗାଇଲା
ଏବେ ଯେ ସେ କଥା ଗୋଟିବୁଝ ତୁମ୍ଭେସର୍ବେ
ପିତାର ଥାଆନ୍ତେ ରାଜା ହୋଇଛି କେ ପୂର୍ବେ
ଏ ବଚନ ଶୁଣି କେଶୀ ବାଣୀ ପ୍ରକାଶିଲା
ପୂର୍ବେ ଦଶରଥ ରାଜା ସୂର୍ଯ୍ୟବଂଶେ ଥିଲା ।
ଆପେ ପ୍ରାଣେଥାନ୍ତେ ଭଣି ପୁତ୍ରେ ରାଜ୍ୟଦେଲା
ତାଠାରୁ କି ଉଗ୍ରସେନ ଜାଣିବାର ହେଲା ।
ସ୍ୱର୍ଗମର୍ତ୍ତ୍ୟପୁରେ ନାହିଁ ଏହାଙ୍କର ବୃତ୍ତି
ପରବୃତ୍ତି ହରିବାର ଏହାଙ୍କ ପ୍ରକୃତି ।
ପର ରାଜ୍ୟରେ ଧରାଏ ଯେ ଧବଳ ଛତ୍ର
ମୂଷାକୁ ଭକ୍ଷଣ ସର୍ପ ଆଶ୍ରାକରେ ଗର୍ତ୍ତ ।
ଯେବଣ ବୃକ୍ଷ ଉପରେ ଘୋଟଇ ତମାଳ
ଫଳପୁଷ୍ପ ସହିତରେ ନାଶ ଯାଇ ଡାଳ ।
ଏକଥା ନ ବିଚାରି ଯେ ଧର୍ମ କରେ ନାଶ
କନ୍ଧ ତାର ଲକ୍ଷ୍ମୀ ଗୁଡ଼ ଶିରେ କରେ ବାସ
ନୃପତି ହୋଇଣ ଯେବେ ସନ୍ତୋଷ ହୁଅଇ
ବିପ୍ର ଅସନ୍ତୋଷ ହୋଇ ସର୍ବଦା ମାଗଇ ।
ନାରୀ ବେଶ୍ୟା ହୋଇ ଯେବେ ହେଲା ଲଜ୍ଜାବନ୍ତୀ
କୁଳସ୍ତ୍ରୀ ସେ ହୋଇ ଲଜ୍ଜା ଛାଡ଼ି ପରେ ରତି ।
ଧନବନ୍ତ ହୋଇ ଯେବେ ବିପଦକୁ ଆଶ
ନଷ୍ଟପ୍ରାୟ ଜାଣିବ ଏହି ଯାକେ ଯାନ୍ତି ନାଶ ।

ଯୁବତେ ରାଜକୁମର ଅଟୁ ବଳବନ୍ତ
ପ୍ରାପତ ହେଲ ଲକ୍ଷ୍ମୀକ ପାଦେ ପେଲୁଛୁ ତ ।
କଂସ ବୋଇଲ ଦେଖିବା ରାଜାଙ୍କ ବିସ୍ତର
ସତେକ ମୋର ବିପକ୍ଷ ହେବେ ନୃପବର ।
କେଶୀ ବୋଇଲ ଶୁ କଂସ ହୋଇଲୁକ ବାଇ
ଆପଣାର ଭକ୍ଷ କି କେ ପରେ ଯାଚିଦେଇ ।
ଏଡ଼େ ଅବିଶ୍ବାସ ଏହି ସଂସାରେ କେ ନାହିଁ
ଆପଣାର ଧନ ନେଇ ପରେ ଯାଚିଦେଇ ।
ହେବ କି ନ ହେବ ଏବେ ହେଲେକ ଦେଖିବା
ନାସ୍ତି କଲେ ପଛେ ଆମ୍ଭେ ଆନ ବିଚାରିବା
ଏମନ୍ତ କହି ସେ କଂସ ବୋଧ ଦେଲ ଯହୁଁ
ଭିନ ହୋଇ ଅଷ୍ଟମଲ୍ଲେ ରହିଲେକ ତହୁଁ ।
ଏଥୁଅନନ୍ତରେ ପୁଣି କେତେଦିନ ଅନ୍ତେ
ଉଦ୍ଧବକୁ ଅଷ୍ଟମଲ୍ଲେ ବୋଇଲେ ଏକାନ୍ତେ ।
ଆହେ ଉଦ୍ଧବ ତ ତୁମ୍ଭେ ମଥୁରା କାରେଣୀ
ଋଷିଙ୍କ ଉପରେ ତୁହ୍ମ ଋଷି ଶିରୋମଣି ।
ଧାର୍ମିକ ବିବେକବନ୍ତ ଅଟ ଗୁଣବନ୍ତ
ଏ ସମରାଜ୍ୟରେ ତୁହୋ ରାଜାଙ୍କର ପାତ୍ର ।
ତୁମ୍ଭ ବୁଦ୍ଧିବଳେ ସିନା ଉଗ୍ରସେନ ରାଜା
ଏ ସମରାଜ୍ୟରେ ତୁମ୍ଭେ ପାଅ ପାଦପୂଜା ।
ଉଗ୍ରସେନ ରାଜାଠାକୁ ଏହିକ୍ଷଣି ଯିବ
ଆସୁର କହିଲ ବୋଲି ରାଜାକୁ କହିବ ।
ଜଗତେ ବିଖ୍ୟାତ ହେଲ ତୁମ୍ଭ ପୁତ୍ର ଯେବା
ମଥୁରାରେ ତାକୁ ରାଜା କର ତୁମ୍ଭେ କିନା ।
ଅନିତ୍ୟସଂସାର ଏଥେ ଦେଖୁଁ ଦେଖୁଁ ମରି
ରାଜ୍ୟ ଶିରୀ ସମ୍ପତ୍ତି ଏ ନୁହଇ କାହାରି ।
ତାଙ୍କ ଥାନ୍ତେ ଯେବେ ପୁତ୍ର କରିପାରି ରାଜା
ଦିଗପାଳେ ଯେ କରିବେ ତାଙ୍କ ପାଦପୂଜା ।
ଯଦ୍ୟପି ନାସ୍ତି କରିବେ ଏକଥା ଗୋଟାକୁ
ଆମ୍ଭେ ବଳେ ନେଇ ରାଜା କରିବୁ କଂସକୁ ।
ଏକଥା ତୁ କହ ଯାଇଁ ଉଗ୍ରସେନ ଆଗେ
ଆସ୍ତି ନାସ୍ତି ବାରତାକୁ ଆଣିଦେବୁ ବେଗେ
ଚଳିଲ ଉଦ୍ଧବ ଅଷ୍ଟମଲ୍ଲ ବୋଲି ଶୁଣି
ଉଗ୍ରସେନର ଗୃହରେ ମିଳି ମନ୍ତ୍ରୀମଣି ।
ନମସ୍କାର କରି ହେଲ ଗୃହରେ ସେ ଉଭା
ରାଜା ପୁଚ୍ଛେ ଶୁଖିଅଛୁ କପାଁ ମୁଖ ଆଭା ।
ଉଦ୍ଧବ ବୋଇଲ ତୁମ୍ଭେ ଶୁଣ ଭୋଜରାଏ
କସ କହିବ ମୋ ଦେବ ଲାଗେ ବଡ଼ଭୟେ ।
ଉଗ୍ରସେନ ବୋଇଲ ତୁ ମୋର ପ୍ରାଣସଖା
ମନ୍ତ୍ରୀଚୂଡ଼ାମଣି କରୁ କାହାକୁ ତୁ ଶଙ୍କା ।
ବି କଥା କହିବୁ ତୁରେ କହ ମୋର ଆଗ
ତୋ ବଚନ ଶୁଣିବାକୁ ମୋ ବଡ଼ ସରାଗ ।
ଉଦ୍ଧବ ବୋଇଲ ତୁମ୍ଭେ ଶୁଣ ନରନାହା
କର୍ମ ଅବଳକୁ ଆସି ହୋଇଲାଟି ଏହା ।
ଏ ତୁମ୍ଭ ପୁତ୍ର ଯେ ଅଟେ କଂସାସୁର ଯେନା
ଦୁଆର ଯେ ଅଷ୍ଟମଲ୍ଲ ହୋଇଲେ ତା ସେନା
ଅସୁର ସ୍ବଭାବେ ସଦା ଅହନ୍ତା ସେ ବହି
ଅହର୍ନିଶି ଅକାର୍ଯ୍ୟ ତା ଠାରେ ବଯ୍ୟାନାହିଁ ।
ପରନାରୀ ପରଧନେ ନିରନ୍ତରେ ଆଶ
ଧର୍ମ ଆଶ୍ରିତ ପ୍ରାଣୀଙ୍କ କରଇ ବିନାଶ ।
ମଥୁରାଦେଶକୁ ଛାଡ଼ି ପଳାଇଲେ ଲୋକେ
ଏ ଚୋର ବସ୍ତାରେ ଏଥେ ରହିଛନ୍ତି ଥୋକେ
କାହାକୁ ଦେଖ ତୁ ରାଜ୍ୟ କରିବୁ ହେ ସ୍ବାମୀ
ଅନେକ ଯାଦବେ ଡରେ ହେଲେ ବନଗାମୀ
କାହୁଁ ଆସି ଅଷ୍ଟମଲ୍ଲେ ମିଳିଲେ ତା ପାଶ
ଏ ମଥୁରା ଚୋର ପୁତ୍ର ଯୋଗୁଁ ଗଲା ନାଶ ।
ଅର୍ଜିଲ୍ ଏଡ଼େ ଅଧର୍ମ ପୁତ୍ର ନୃପନିଧି
କୁଲୋକ ସଙ୍ଗେ ବସି ସେ ପାଇଲ କୁବୁଦ୍ଧି ।
ଆଦ୍ଭୁତ କଥା ଏ ଦେବ କହିଲେକ ରାଇ
ଶ୍ରୀମୁଖରେ ଜଣାଇଲେ କୋପିବ ଗୋସାଇଁ ।
ଉଗ୍ରସେନ ବୋଇଲେ ହେ ତୋରକସ ଦୋଷ
ଉଦ୍ଧବ ବୋଇଲ ତୁମ୍ଭେ ଶୁଣ ନୃପଈଶ ।
ଅଷ୍ଟମଲ୍ଲେ ଯାହା ଯାହା କହିଲେ ଗୋସାଇଁ
ବିଶ୍ବାସ କରି କହିଲେ ପାଖରେ ବସାଇ ।
ଠାକୁର ଗୃହରେ ତୁହୋ କହ ବେଗେ ଯାଇଁ
ଯେମନ୍ତେ ଏ ସଦଭାବ କଥାଟା ରହଇ ।
ଜଗତେ ବିଖ୍ୟାତ ହେଲ ପୁତ୍ର କଂସଯେନା
ଏ ମଥୁରା ରାଜ୍ୟେ ତାକୁ ରାଜା କର ସିନା ।
ଏକଥାରେ ନାସ୍ତି ଯେବେକରିବେ ସେବେଳେ
କଂସକୁ ରାଜା କରିବୁଁ ଆମ୍ଭେ ବାହୁବଳେ ।
ଉଦ୍ଧବ ବୋଲଇ ତୁହୋ ଶୁଣ ଭୋଜସାଇଁ
ରାଜ୍ୟେ ଆଶା କଲେ ପ୍ରାଣ ପାଇବା ଯେ ନାହିଁ

ପ୍ରାଣ ଥିଲେ ସିନା ରାଜ୍ୟ ଧନ ଅର୍ଜି ପାରି
ଆପେ ନାଶଗଲେ କେହ୍ନ କୃତକୃତ୍ୟ କାହାର ।
ଆପଦ ପଡ଼ିଲେ ପ୍ରାଣ ଆପଦୁଁ ରଖିବା,
ଆଉ ଯା ଆପଦେ ଗ୍ରହ ଶାନ୍ତି କରାଇବା ।
ଆପଣା ଆତ୍ମାକୁ ଯେବେ ପ୍ରମାଦ ପଡ଼ିବ
ରାଜ୍ୟଧନକ୍ଷି ସମ୍ପଦ ସବୁ ଉପେକ୍ଷିବ ।
ଉଦ୍ଧବ କହିଲା ଯହୁଁ ଏମନକ ବାଣୀ
ଉଗ୍ରସେନ ସନ୍ତୋଷ ହୋଇଲା ତାହା ଶୁଣି ।
ଉଦ୍ଧବକୁ ଉଗ୍ରସେନ ପାଖରେ ବସାଇ
ବୋଇଲା କଂସ ଆଗରେ କହ ତୁମ୍ଭେ ଯାଇଁ
ସେ ମୋହର ଜ୍ୟେଷ୍ଠପୁତ୍ର ଅଟେ କୁଳଚନ୍ଦ୍ର
ସେହ୍ନି ରାଜା ହେଲେ ମୋତେ ବୋଲିବେକ ମନ୍ଦ
ଜ୍ୟେଷ୍ଠପୁତ୍ରର ସମ୍ପଦ ନୟନେ ଦେଖିବ
ମୃତ୍ୟୁ ଉତ୍ତାରେ ପଦ୍ମପ୍ରାପ୍ତେକ ହୋଇବ ।
ପିତାଠାରୁଁ ୨ ଯେବେ ପୁତ୍ର ବଳୀ ହୁଏ
ଶିଷ୍ୟ ହୋଇକରି ଯେବେ ଯେବେ ଗୁରୁପ୍ରାପ୍ତେ
ମନ୍ତ୍ରୀ ହୋଇଣ ରାଜାର ହୋଇ ହିତକାରୀ
ଶସ୍ୟବନ୍ତୀ ହୁଅଇ ଯେ ସଦା ବସୁନ୍ଧରୀ ।
ପତିବ୍ରତା ସ୍ତ୍ରୀ ଯେବେ ହୋଏ ପୁତ୍ରବନ୍ତୀ
ପୁଣ୍ୟର ଉପରେ ପୁଣ୍ୟ ସେହ୍ନିଲେ ଅଛନ୍ତି ।
ଏହି ପରକାରେ କଥା କହିବୁ କଂସକୁ
ଅନୁଗ୍ରହ କରିଥିବ ଏ ଯଦୁ ବୀରଙ୍କୁ ।
ଅନ୍ତକାଳରେ ସେ ଚିନ୍ତା ନ ପାଇବେ କେହ୍ନ
ଏଥିରେ ଦୁଃଖ ନଦେଲେ ବୋଲି ପୁଣ୍ୟଦେଖ
ଗୁରୁ ପିତାମହ ବିପ୍ର ପାଦ କରୁ ପୂଜା
ସମସ୍ତଙ୍କ ବରରେ କଂସ ହେଉ ରାଜା ।
ଯାଅ ତୁ ଉଦ୍ଧବ ବେଗେ କହ କଂସ ଆଗେ
ଶୁଭଲଗ୍ନ ବୁଝି ରାଜା କରି ଶୁଭଯୋଗେ ।
ଏମନକ ଆଜ୍ଞା ଯହୁଁ ଦେଲେ ଉଗ୍ରସେନ
ଧାଇଁକାରେ ସେ ଉଦ୍ଧବ କରିଲା ଗମନ ।
କଂସର ମୂଳେ ସେ ଅଷ୍ଟମଲ୍ଲଙ୍କୁ ବସାଇ
ଉଗ୍ରସେନ କଥାଯାକ କହିଲା ମଣାଇ ।
ଶୁଣିଣ ସେ ଅଷ୍ଟମଲ୍ଲ ହୋଇଲେ ସନ୍ତୋଷ
କଂସକୁ ବୋଇଲେ ଆଉ ବିଳମ୍ବ ତୁ କସ ।
ମଙ୍ଗଳକୁ ରୁଚିବା କଥା କହେ ବୈଦ୍ୟରାଜ
ହୋଇବ ଦେଖଣି ଯେବେ ସୁଖେ କରି ରାଜ୍ୟ
ବିଳମ୍ବ ନ କରି ଏବେ ଶୁଭଲଗ୍ନ ଘେନ
କ୍ଷଣକ କଥା କ୍ଷଣକେ ହୋଇଯାଇ ଆନ ।
ତାମ୍ବୁଳ ଚନ୍ଦନ ଗନ୍ଧପୁଷ୍ପ ରାଜବିଧି
ବେଦଶାସ୍ତ୍ର ପୁରାଣରେ ଅଛି ଯେଉଁ ବିଧି ।
ଯୁକତେ ପିତାର କୃତ୍ୟ ଅଟେ ଜ୍ୟେଷ୍ଠପୁତ୍ର
ସନ୍ତୋଷେ ସେ ରାଜ୍ୟ ଦେଲେ ଧର ଦଣ୍ଡଛତ୍ର
କଂସ ଯେ ବୋଇଲା କେଣୀ ତୋର ବୁଦ୍ଧି ଭଲେ
ଫଳିଲା ମୋହର ପୁଣ୍ୟଫଳ ଏତେକାଳେ ।
ଶୁଭଲଗ୍ନ ଦେଖି ଅନୁକୂଳ କରି ଦିବା
ରାଜାଙ୍କୁ ନମନ୍ତି ସିଂହାସନରେ ବସିବା ।
ଗ୍ରହ ପୂଜଙ୍କୁ ହକାରି ଖୋଜ ଅନୁକୂଳ
ପରବର ଲଗ୍ନ ବେଳାକୁ କରିବା ନା ମୂଳ ।
ବୈଶାଖ ଶୁକ୍ଳ ଦ୍ୱିତୀୟାତିଥି ଚନ୍ଦ୍ରବାର
ରୋହିଣୀ ନକ୍ଷତ୍ର ହୋଇଥିବ ସେ ଦିନର ।
ବୃଷନାମେ ଲଗ୍ନ କ୍ଷେମଙ୍କରନାମେ ଯୋଗ
ତୈତିଳ କରଣ ଦଣ୍ଡ ଅଠାଇଶ ଭୋଗ ।
ମେଷ ସଂକ୍ରାନ୍ତି ପଚିଶ ଦିନ ଭୋଗ ଦିବ
ସେଦିନ ଜାଣ ମୂର୍ଦ୍ଧାଭିଷେକ ହୋଇବ ।
ବେଦଶାସ୍ତ୍ରପ୍ରମାଣରେ ଯେତେ ଯେତେ ଦ୍ରବ୍ୟ
ଖୋଜି ଆଣିଣ ଭିଆଣ କରି ତାହା ସର୍ବ ।
ଶୁଦ୍ଧ ସୁବର୍ଣ୍ଣର ମାଳା ଛତିଶ ପ୍ରକାର
ସମସ୍ତ ଯୋଗାଡ଼ ବୋଲେ ଗ୍ରହ ବିପ୍ରବର ।
ଯହୁଁ ଅଷ୍ଟମଲ୍ଲ ସହ ମିଳି ଯଦୁଗଣ
ଅଭିଷେକର ସାମଗ୍ରୀ କରିଲେ ଭିଆଣ ।
ବ୍ରହ୍ମଜାତି ସ୍ୱର୍ଗ ଚର୍ଷି ସ୍ଫଟିକ ଲଗାଇ
ମଣ୍ଡପ କଲେ ଆକାଶ ମଣ୍ଡଳ ବ୍ୟାପଇ ।
ଦଶସହସ୍ର ବଖର ଗ୍ରମୁଣ୍ଡିଆ କଲେ
ଅମ୍ଳାନ ବସ୍ତ୍ର ତହିଁ ଉପରଣ ଦେଲେ
ନବରତ୍ନରେ ମଣ୍ଡିଲେ ପୂର୍ବଘର ସ୍ତମ୍ଭ
ଉପରେ ଉଭାରିଲେ ଯେ ସ୍କନ୍ଦୁଆ ଆଲମ୍ବ ।
ନେତର ପାଟ ପତାକା ସିନ୍ଦୂର ମଣ୍ଡିତ
ଉପର ହୋଣା ମଣ୍ଡିଷି କଲେ ଉଚ୍ଚ ଶ୍ୱେତ ।
ଚଉପାଶରେ ଘୋଡ଼ିଲେ ରମ୍ଭା ବୃକ୍ଷମାନ
କଂସ ରାଜା ବସିବ ସେ ରାଜସିଂହାସନ ।
ବେଦବାକ୍ୟର ପ୍ରମାଣେ ସକୁନର୍ଘ କରି
ଅନେକ ଯତ୍ନେ ମଣ୍ଡିଲେ ଗଢ଼ିରୀ ପଚାରି

ମଲ୍ଲୀ ଚମ୍ପା କୁରୁବେଲ୍ଲି ସେବତୀ ବକୁଳ
ସୁଗନ୍ଧବନ୍ତ କୁସୁମଖଣ୍ଡ ମନ ମାଳ ।
ଅଷ୍ଟାଙ୍ଗେ ଅଷ୍ଟଦେଶୀ ମଧ୍ୟେ ରତ୍ନବେଦୀ
ଅମର ବାରସ୍ତୀକ ଗଙ୍ଗା ନଦୀ ଭେଦ ।
ଦ୍ୱାଦଶ ବଳର ନବଗ୍ରହ ଯେ ଲକ୍ଷିତ
ମଧ୍ୟରେ ସ୍ଥାପିଲେ ନେଇ ଦେବୀ ଦୁର୍ଗାମାତ
ସ୍ଥାପିଲେ ମଧ୍ୟପୀଢ଼ରେ ବସିଲେ ପାଳଟି
ଏହିରୂପେ କଂସରାଜା ସିଂହାସନ ଗୋଟି ।
ବେଦୀ ମଧ୍ୟେ ଥାପି ଅଷ୍ଟକୁଳନାଗ କରି
ବେଦକୋଟି ଯେ ବ୍ରାହ୍ମଣ ବେଦଧ୍ୱନି କରି ।
ଗଙ୍ଗା ଯମୁନା ନର୍ମଦା ନଦୀ ଗୋଦାବରୀ
ସରସ୍ୱତୀ ହନୁମତୀ ସରଯୂ ଶୌଭର ।
ମଣିକର୍ଣ୍ଣିକା ପୁଷ୍କର ଚନ୍ଦ୍ରଭାଗା ରେବା
ଏ ଦ୍ୱାଦଶ ତୀର୍ଥଜଳ ସମ୍ଭାର ଭୂଦେବା ।
ଶାସ୍ତ୍ର ପ୍ରମାଣେ ଯେତେକ ଅଭିଷେକ ବିଧି
ବ୍ରାହ୍ମଣମାନେ ଯେ କରି ସକଳ ସମ୍ଭାର ।
ଉତ୍ତମରୂପରେ ସାରବେଶ କଂସ ହୋଇ
ବଜେଜଳ ସିଂହାସନେ ଯାଇଁ ନ ବସାଇଁ ।
ପାଟଗଜ ପାଟଅଶ୍ୱ ପାଟ ମହାଦେଈ
ପାଟ ଜଉତଶ ପାଟ ଲମ୍ବହଚା ହୋଇ ।
ଏ ବିଧିରେ ପାଟଦଣ୍ଡ ବହୁତ ଆଣିଲେ
ରଜାଙ୍କ ଉପରେ ଶ୍ୱେତ ଚାମର ଢାଳିଲେ ।
ବିଧି ପ୍ରମାଣେ ବସିଲ ଅଷ୍ଟପାଟ କଂସ
ଆସ୍ଥାନରେ ବସାଇଲ ଯଦୁ ଭୋଜବଂଶ ।
ଦେଶକାଳ ମହାବାକ୍ୟ ଉଚ୍ଚାରି ବ୍ରାହ୍ମଣେ
ପ୍ରଥମ ମନ୍ତ୍ରପଢ଼ିଲେ ପ୍ରଥମ ସ୍ନାନେ ।
ଦ୍ୱିତୀୟରେ ପଞ୍ଚାମୃତ କଳସଭଲେ ନେଇ
କୋଟିତୀର୍ଥ ଜଳ ପୂର୍ଣ୍ଣ ଘଟୀରେ ପୁରାଇ ।
ସହସ୍ର ଧାର ପାତ୍ରରେ ଅଭିଷେକ କଲେ
ମୂର୍ଦ୍ଧା ଅଭିଷେକ ଦଣ୍ଡଛତ୍ର ଧରାଇଲେ ।
ସୁବର୍ଣ୍ଣର ସିଂହାସନେ ବିଜେ କଲ କଂସ
ଧନରତ୍ନ ପାଇ ଦୁଃଖିଜନ ହେଲେ ତୋଷ ।
ମଙ୍ଗଳା ରୋପଣ କଲେ ଅହିୟସ୍ତ କାମିନୀ
ଗୁମ୍ଫରେ ଯେ ବନ୍ଧାଇଲେ ଯେତେ ସୁଲକ୍ଷଣୀ
ସାରଢୋଲ କାହାଳୀ ଯେ ବାଜଇ ମୃଦଙ୍ଗ
ଶଙ୍ଖ ବମ ମହୁରୀ ଯେ ଦୋଷରୀ ଭୁଜଙ୍ଗ ।

ଟମକ ନିଶାଣ ଦମା ଢୋଲ ବଜଘୋଷ
ସାରତୂରରେ ଶବଦ ଶୁଭେ ଚଉପାଶ ।
ଅଭିଷେକ ବିଧିମାନ ସାଙ୍ଗ କଂସରାୟେ
ବଡ଼ ଅବକାଶେ ଯାଇଁ କଲକ ବିଜୟେ ।
ଅଷ୍ଟମଲ୍ଲ ଚଳନ୍ତି ବାମ ତାହାଙ୍କ ଆରୋହି
ଖିର କମାଣ ଯେ ବାଡି ଛୁରୀ ଖଣ୍ଡା ଧରି ।
ପାଞ୍ଚ ଅମାତ୍ୟ ଖଣ୍ଡିଆ ସେନା ଚଉହାରି
ରଜତ ମାହୁନ୍ତ ଉଦାଭିକ ଆଦି କରି ।
ଦରଶନ କରନ୍ତି ସେ ଆସି ଯେ ବାହାରେ
ଅନୁକ୍ଷଣେ ଦେଉଛନ୍ତି ଶାଢ଼ୀ ନୃପବରେ
ଦାସୀ ପରିବାରୀଙ୍କି ଯେ ଗଉରବ କରି
ଜଣ ଜଣକତେ ଶାଢ଼ୀ ବଅ ବାଛୁ କରି ।
ଅନେକ ସମାରୋହେ ସେ କଂସାସୁରରାୟେ
ମଥୁରା କଟକ ମଧ୍ୟେ ଉତ୍ସବ କରାଏ ।
ବିଳାସିଣୀଏ କରନ୍ତି ଆଗେ ନୃତ୍ୟ ଗୀତ
ଅତି ଆନନ୍ଦେ ହରନ୍ତି କଂସରାଜା ଚିତ୍ତ ।
ଅଦୃଷ୍ଟି ଅଶ୍ରୁତ ସେହି କଂସର ହର୍ମଦ
ଆକାଶ ପୂରି ଉଠୁଲେ ସାରତୂର ନାଦ ।
ଢୋଲ ଦମା ବଜଘୋଷ ଟମକ ନିଶାଣ
ଶବଦ ଯେ ଲସୁଙ୍କର ଶୁଭେ ଘନଘନ ।
ଏକତେ ସେ ସାରବାଦ୍ୟ ଉଠେ ଅନ୍ତରାଳ
ନନ୍ଦଖଣ୍ଡ ମହୀରୋଟା ହେଲ ଟଳମଳ ।
ସୁରଲୋକ ପର୍ଯ୍ୟନ୍ତେ ଉଠିଲ ସେ ଧ୍ୱନି
ଅଭ୍ରତେ ସ୍ୱର୍ଗେ କମ୍ପିଲେ ସୁର ସୁରମୁନି ।
ସଭା କରି ବସିଥିଲେ ଇନ୍ଦ୍ର ଦେବରାୟ
ଶବଦ ଶୁଣି ଲାଗିଲ ତାଙ୍କ ବଡ଼ ଭୟ ।
ବେଳୁଁ ବେଳ ଯେହ୍ନେ ତାଙ୍କୁ ଲାଗିଲ ଉଚାଟ
ପୁଚ୍ଛିଲେ ବୃହସ୍ପତିଙ୍କି ସୃଷ୍ଟି ସୁରଶ୍ରେଷ୍ଠ ।
ବୋଇଲେ ଗୁରୁ ହେ ଏତ ବିପରୀତ କଥା
ଅକାରଣେ ଲାଗିଲତ ମନେ ବଡ଼ ବ୍ୟଥା ।
ଏସନ ଉଚାଟ କେବେ ନ ଥିଲତ ହୋଇ
ଅମର ଭୁବନ ଆଜ କମ୍ପେ କାହିଁପାଇଁ ।
କେବଣ ଦାନବ ଅବା ସ୍ୱର୍ଗକୁ ବାହିଲା
କିବା ନାରାୟଣ ଇନ୍ଦ୍ର ପଦ ମୋ ଫେଡ଼ିଲା ।
କିବା ମୋର ଦାସଦାସୀ ହୋଇଲେ ନିହତ
କ ଅବା କେଉଁ କନ୍ଦଳ ଏଥେ ହେବ ଜାତ ।

ଏ କଥା ଗୁରୁ ହେ ମୋତେ ସଂକ୍ଷେପିଣ କହ
ଛେଦେ ମୋ ମନରୁ ଆଜ ଫିଟିବ ସନ୍ଦେହ ।
ବୋଲନ୍ତି ସେ ବୃହସ୍ପତି ଇନ୍ଦ୍ରମୁଖ ଚାହିଁ
କାଳନେମି ଜାତ ହେଲା କଂସରୂପ ହୋଇ ।
ମଥୁରାରେ ଅଭିଷେକ ହେଲା ରାଜ୍ୟେ କଂସ
ଆଜି ସପ୍ତଦ୍ୱୀପା ପୃଥ୍ୱୀ ଗଲା ଜାଣ ନାଶ ।
କଂସର ଭାର କେମନ୍ତେ ସହିବ ଏ ପୃଥ୍ୱୀ
ଦୁଷ୍ଟପଣେ ସାଧିବ ସେ ସକଳ ନୃପତି ।
ସକଳ ଦେବତା ତୁମ୍ଭେ ହେବ ବଡ଼ ଦୁଃଖୀ
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ କେ ନ ପାରିବେ ରଖି ।
ଦୁର୍ବାର ଦାନବ ସେହି ସମସ୍ତ ଗଞ୍ଜିବ
ଅମର ଦାରସ୍ତ୍ରୀଙ୍କି ସେ ଭୋଗ କରିବ ।
ସପତଦ୍ୱୀପା ପୃଥ୍ୱୀରେ ହେବ ଦଣ୍ଡଧାରୀ
ପାଦତଳେ ଖଟାଇବ ସବୁ ସାଧ କରି ।
ଅସାଧ ସାଧ କରିବ ସେହି କଂସାସୁର
ଚରଣେ ତାର ଖଟିବେ ସବୁ ଦଣ୍ଡଧର ।
ସକଳ ଦେବଗଣଙ୍କୁ ଜିଣିବ ସେ ରଣେ
ଚରାଚର ପୃଥ୍ୱୀ ନାଶ କରିବ ସେ ତେଣେ ।
ଶୁଣ ହୋ ଇନ୍ଦ୍ର କହିଲୁ ତୋତେ ସିଦ୍ଧି କଥା
ତେଣୁ ତୁମର ମନକୁ ଲଗିଲା ଏ ବ୍ୟଥା ।
ବୃହସ୍ପତିର ବଚନେ କହିଲେ ଯେ ଶୁଣ
ହେ ଗୁରୁ ବିଷ୍ଣୁ ପ୍ରସାଦେ ମୁହିଁ ହେବ କହ ।
ଅଟନ୍ତି ସେ ଅନୁଗ୍ରହ ନାଥ ଦେବସ୍ୱାମୀ
ବେଳେ ୨ ରଖନ୍ତି ସେ ଏ ଅମରଭୂମି ।
ସବୁକାଳେ ଅସୁରେତ ଏ ପୃଥ୍ୱୀରେ ଜାତ
ବେଳେ ୨ ନାରାୟଣ କରୁଥାନ୍ତି ହତ ।
ପ୍ରଳୟ କାଳରେ ବ୍ରହ୍ମା ବେଦପୋଥି ଶ୍ଳେଷୀ
କପଟରେ ଶଙ୍ଖାସୁର ନେଲା ତାହା ହରି ।
ନାରାୟଣ ଆଗେ ବ୍ରହ୍ମା ଜଣାଇଲେ ଯାଇଁ
ଶୁଣିଣ ପ୍ରତିଜ୍ଞା କଲେ କମଳାର ସାଇଁ ।
ତକ୍ଷଣେ ମତ୍ସ୍ୟରୂପକୁ ଧରି ଦେବହରି
ବ୍ରହ୍ମାଙ୍କର ବେଦପୋଥି ଆଣିଲେ ଉଦ୍ଧାରି ।
କଶ୍ୟପଋଷି ନନ୍ଦନ ହିରଣ୍ୟାକ୍ଷ ହେଲା
ଶଙ୍ଖାସୁର ଛଳେ ସୃଷ୍ଟି କରେଣ ଧଇଲା ।
ସପତଦ୍ୱୀପ ସାଗର ଚରାଚର ସୃଷ୍ଟି
ବାମହସ୍ତରେ ଦାନବ ଧରି କଲା ମୁଷ୍ଟି ।
ତହିଁକି ପୁଣି ଇଚ୍ଛିଲେ ନାରାୟଣ ମାୟା
ବରାହରୂପରେ ସ୍ୱାମୀ ବିସ୍ତାରିଲେ କାୟା ।
ଦାନବକୁ ଦେବ କୋପେ ମାଇଲେକ ମୁଥେ
ଦୈତ୍ୟକୁ ମାରି ପୃଥିବୀ ଧଇଲେକ ଦନ୍ତେ ।
ହିରଣ୍ୟକଶିପୁର ସେ ଜ୍ୟେଷ୍ଠ ଭ୍ରାତ ଥିଲା
ଦୁର୍ବାର ଦାନବ ତାର ତେଜ ଅନର୍ଗଳା ।
ଭ୍ରାତୃ ବଇରୀ ବୋଲି ସେ ବିଷ୍ଣୁ ସଙ୍ଗେ ବାଦୀ
ଚଉଦଭୁବନ ଯାକ ସଂଗ୍ରାମରେ ସାଧି ।
ଲକ୍ଷେ ଚଉଷଠି ଯୁଣ ହସ୍ତାର ତା ଅଙ୍ଗ
ବଜ୍ର ଶକତି ତହିଁରେ ପଡ଼ିଯାଏ ଭଙ୍ଗ ।
ପ୍ରହଲ୍ଲାଦ ବୋଲି ତାର ପୁତ୍ରକେ ଜନ୍ମିଲା
ପୂର୍ବଜନ୍ମ ହେତୁରୁ ସେ ହରିଙ୍କି ଭଜିଲା ।
ବିଷ୍ଣୁଙ୍କୁ ସେବା କରଇ ସେହି ଯହିଁ ତହିଁ
ହରିଙ୍କ ବିନୁ ତାହାର ଅନ୍ୟଗତି ନାହିଁ ।
ତାହା ଦେଖି ପିତା ତାର ଧଇଲା ବିଖଣ୍ଡି
ଅନେକ ଶାସ୍ତି ଦେଲା ସେ କରି ଖଣ୍ଡ ଖଣ୍ଡି ।
ଶିରଚ୍ଛେଦ ମାଂସ ତାର ତୁଳାପ୍ରାୟ କରି
ଘୃଆହୁତଭରି ଅଗ୍ନି ମଧ୍ୟରେ ସଂହରି ।
ମନ୍ତ୍ରୀ ସଙ୍ଗତେ ନେଇ ବାଟିଲା ତା ମାଂସ
କେବେହେଁ ପ୍ରହଲାଦର ନୋହିଲା ବିନାଶ ।
ପୁଣିହିଁ ଶଂତଙ୍କାର ମୁଣ୍ଡ ତାର କାଟି
ହାଡ଼ ଗୋଡ଼ ମୁଣ୍ଡ ସବୁ ପକାଇଲା କୁଟି ।
କୁଟିଲା ବାଟିଲା ଘାଟମୁଗୁରର ଶିଳେ
ହାଣ୍ଡିରେ ଭରିଣ ମେଲିଦେଲା ସ୍ରୋତଜଳେ ।
ତଥାପି ସେ ପ୍ରହଲାଦ ବିନାଶ ନୋହିଲା
ହରି ହରି ବୋଲି ପିତା ସନ୍ନିଧେ ମିଳିଲା ।
ଦେଖିଣ ତାକୁ ଦାନବ ସ୍ତମ୍ଭୀଭୂତ ହେଲା
ଆଶ୍ୱାସନା କରି ପୁତ୍ର କୋଳେ ବସାଇଲା ।
ହରି ହରି ବୋଲି ପୁତ୍ର କହୁଁ କିସପାଇଁ
ହରି ନ ବୋଲି ପୁତ୍ର ତୁ କହୁଅଛୁ ମୁହିଁ ।
ମୁଖରେ ଚୁମ୍ବନଦେଇ ବୋଲେ ମହାବୀର
ବିଷ୍ଣୁଙ୍କୁ ଛାଡ଼ ଈଶ୍ୱର ଦେବ ସେବାକର ।
ପ୍ରହ୍ଲାଦ ବୋଲେ ପୃଥ୍ୱୀରେ କର୍ତ୍ତା ହରି ଏକା
ଚରାଚର ବ୍ରହ୍ମାଣ୍ଡରେ ବିଷ୍ଣୁ ଏକା ଶାଖା ।
ଶୁଣିଣ ଦାନବ ଘୋର କୋପଭର ହୋଇ
କ୍ରୋଧେ ଅନଳ ଅଗ୍ନିରେ ମେଲିଦେଲା ନେଇ

ସେହି କାଳାନଳ ଅଗ୍ନି ଜଳଇ ପ୍ରଚଣ୍ଡ
ଚନ୍ଦନୁ ଶୀତଳ ଲାଗେ ତାର ଦେହ ଖଣ୍ଡ ।
ବାରବଦନଯାଏ କୁଣ୍ଡେ ଭରିଥିଲା ନେଇ
ତେରବଦନ କୁଣ୍ଡ ଜଳେ ଶୀତଳ ଯେ ହୋଇ
ତହିଁରେ ରହି ଭକତ ହରି ସୁମରଇ
ମୁଖେ ହରି ହରି ବୋଲି ବାହାର ହୁଅଇ ।
ଏପରି ଅନେକ ଦଣ୍ଡ ଦଣ୍ଡିଲାକ ରାୟେ
କେବେହେଁ ନାଶ ନୋହିଲା ପ୍ରହ୍ଲାଦର କାୟେ
କୋପକରି ବୋଲେ ଦୈତ୍ୟ ପ୍ରହ୍ଲାଦକୁ ରୁଷି
କହ ପ୍ରହଲାଦ ତୋର ବିଷ୍ଣୁ ଅଛି କାହିଁ ।
ପ୍ରହ୍ଲାଦ ବୋଲେ ହେପିତା ବିଷ୍ଣୁ ସର୍ବବ୍ୟାପୀ
କୀଟ ବ୍ରହ୍ମ ପରିଯନ୍ତେ ଧାତା ଅଛି ଥାପି ।
ଜୀବ ନ ଅଜୀବ ହରି ସବୁ ଦେହେ ଅଛି
ଶୁଣରେ ପାପଦେହୀ ଏ ସ୍ତମ୍ଭରେ ପୂରିଛି ।
ଶୁଣି ପ୍ରଚଣ୍ଡ ଦାନବ ହୋଇ କୋପଚିତ୍ତ
ଅଧର କମ୍ପାଇ ସ୍ତମ୍ଭେ ମାରେ ପଦ ଘାତ ।
ତକ୍ଷଣେ ସ୍ତମ୍ଭରୁ ହରି କ୍ରୋଧେ ଅବତରି
ବୁଲୁ ବଦାଇଲେ ନରସିଂହ ରୂପ ଧରି ।
ସେ ପ୍ରହଲାଦର ପୁତ୍ର ବୈରୋଚନ ହେଲେ
ସ୍ତ୍ରିୟାରୂପ ଧରି ହରି ତାକୁ ବିନାଶିଲେ ।
ବିରୋଚନର ପୁତ୍ର ହେଲା ରାଜା ବଳୀ
ପୃଥ୍ୱୀ ନ ସହିଲା ଜାଣ ତାହାର ଆର୍ଦୋଳ ।
କପଟେ ତାହାକୁ ଦାନ ମାଗି ଜଗନ୍ନାଥ
ତିନପାଦ ଭୂମି ମାଗି ଚାପିଲେ ଅନନ୍ତ ।
ପର୍ଶୁରାମ ରୂପ ହରି ଧରି ସନ୍ଥ ହିତେ
ରେଣୁକା ଗର୍ଭରେ ଜାତ ଦୁଷ୍ଟଙ୍କ ନିମନ୍ତେ ।
ଜମଦଗ୍ନି ମୁନି କୁଳେ ହେଲେ ଅବତାର
ପୃଥ୍ୱୀକି ନିକ୍ଷେତ୍ର କଲେ ଏକୋଇଶ ବାର ।
ରାମ ଅବତାରେ ମାରି ରାବଣର ବଂଶ
ସ୍ୱର୍ଣ୍ଣଲଙ୍କାପୁରି କଲେ କପି ସୈନ୍ୟ ଧ୍ୱଂସ ।
ହେଲେ ବେଳେ ଲାଗଇତ ଦାନବଙ୍କ ଭୟ
ଉପାୟ କରିଣ ହରି କରେ ତାଙ୍କ କ୍ଷୟ ।
ତାଙ୍କ ପ୍ରସାଦେ କାହାକୁ ଦେବେ ନ ଡରନ୍ତି
ଶୁକ ବୃହସ୍ପତି ବସି ଏମନ୍ତ କହନ୍ତି ।
ଏଥିଅନ୍ତେ ଶୁଣିମାନ କଥା ଦିବ୍ୟବାଣୀ
ସାବଧାନେ ଶୁଣ ତୁହେ ନୃପ ଚୂଡ଼ାମଣି ।

ମୂର୍ଦ୍ଧା ଅଭିଷେକୋ ଯଜ୍ଞ ହେଲା କଂସରାୟେ
ସାତବଂଶ ଯାଦବ ଯେ କଂସକୁ ବିନୟେ ।
ନିଜ ରାଷ୍ଟ୍ର ପରରାଷ୍ଟ୍ର ଯହିଁ ଯଥା ବିଧି
ଆସ୍ଥାନରେ ବସି କଂସ କରେ ସର୍ବ ସିଦ୍ଧି ।
ଛପନ କୋଟି ଯାଦବ ପରିବାର ପଣେ
କଂସ ରାଜା ସନ୍ନିଧାନେ ଥାନ୍ତି ଅନୁକ୍ଷଣେ ।
ରାଜ୍ୟ ସିଂହାସନ ସବୁ କଂସ ହାତେ ଦେଇ
ରହିଲା ସେ ଉଗ୍ରସେନ ଭୟେ ଭିନ ହୋଇ
କଂସର ସାନ ସୁନାସ ନାମେ ମହାବୀର
ଅନୁବ୍ରତେ ଖଟିଥାଇ କଂସର ଛାମୁର ।
ପାତ୍ର ଅମାତ୍ୟ ଯେ ଅଷ୍ଟମଲ୍ଲଙ୍କର ମୂଳେ
ମଣ୍ଡଳିକ ଭୋଗ କରଇ କଂସ ମନ୍ତ୍ର ଭୋଳେ ।
ଗୁପ୍ତେ ଚରଗଣ ରାତ୍ର ଦିବସ ବୁଲନ୍ତି
ସୁନ୍ଦର ଯୁବତୀ ଦେଖି ବଳେଣ ହରନ୍ତି ।
କଂସ ଛାମୁରେ ଆଣନ୍ତି ନେଇ ଚରଗଣ
ଗଜରଥ ସ୍ତ୍ରିୟାଙ୍କି ସେ କରଇ ରମଣ ।
ଅତି ସୁନ୍ଦରୀ ଦେଖିଲେ ପୁରେ ରଖେ ଧରି
ପର ସ୍ତ୍ରୀ ପାଇ ଆପଣା ସ୍ତ୍ରିୟା ପ୍ରାପ୍ତ କରି ।
ପରଧନ ପରସ୍ତ୍ରିୟା ବଳାତ୍କାରେ ହରି
ଗାଣ୍ଠି ଶୃଙ୍ଗାର କରଇ ବଳେ ଧରି କରି ।
ରାଜାଧିରାଜ ପଣେ ସେ ଅଇଛି ତଞ୍ଜଇ
ଭୂଜବଳ ପରାକ୍ରମେ ପାଦରେ ଖଟାଇ ।
ନିର୍ଦ୍ଦୋଷୀ ଲୋକଙ୍କୁ ଦୋଷ ଦେଇଣ ମାରଇ
ବିଚାର ନ କରି ବିନା ଦୋଷରେ ଦଣ୍ଡଇ ।
ଅନେକ ସମ୍ପଦ କଂସ ଭୁଞ୍ଜେ ରାଜପଦ
ସଂଗ୍ରାମେ କେ ସରି ନାହିଁ ତିନପୁର ମଧ୍ୟ ।
ଦୁଷ୍ଟଜନ ନିବାରଣ କର ଦେବ ହରି
ଅଚ୍ୟୁତାନନ୍ଦ ଦାସ ଯେ ଶରଣ ତୋହରି ।

—O—

## ଧୁମ୍ନିଳା ରାକ୍ଷସ ବଧ

ଏଥୁ ଅନନ୍ତରେ ପୁଣି କେତେଦିନ ଗଲା
କରପତ୍ର ଯୋଡ଼ି ଶ୍ରେଣୀ ଛାମୁରେ କହିଲା ।
ଯଦୁ ଭୋଜବଂଶେ ଜନ୍ମେ ଅଷ୍ଟ ମହାମଲ୍ଲ
ରାଜାଧିରାଜ ଈଶ୍ୱର ଅରିଜର ସଲ ।
ବଳସାମର୍ଥ୍ୟ ଲୁଚିଇକ ଏ ପୁରେ ରହିବା
କରି ଡରଭୟେ ରାଜାମାନଙ୍କୁ ଜଣିବା ।

ଆମ୍ଭ ମାନଅପମାନଙ୍କୁ ରକ୍ଷି ରହୁଥିଲେ
ଅପମାନଅଙ୍କୁ ଯେ ବାନ୍ଧି ଆଣି ଭୁଞ୍ଜିବଲେ ।
ରାଜାଙ୍କର ରାଜ୍ୟଧନ ଉଜାଡ଼ି ଆଣିମା
ସନ୍ଧାନ ଦେଲେ ଗୁଣ୍ଡିବା ଧନ ଦ୍ରବ୍ୟ ସୀମା ।
ସତମାର୍ଗେ ଯେ ଆମ୍ଭଙ୍କୁ କରିବାକୁ ସେବା
ତାହା ଆପ୍ତ ଅମ୍ଭେ ତାଙ୍କୁ ପଛେ ସମର୍ପିବା
ଯେ ରାଜା ଆମ୍ଭଙ୍କୁ ଜାଣି ନ ମାନିବ ତାଲେ
ତା ରାଜ୍ୟ ଧନ ନଡ଼ାଇ ଆଣିବାକ ବଲେ ।
ସଂଗ୍ରାମେ ଜିଣି କରିବା ଆମ୍ଭେ ମହାଭୋଗ
ଷଡ଼ି ବୃତ୍ତି କରିବାକୁ ଦୁଷ୍ଟ ଉଦବେଗ ।
ଯେ ଆମ୍ଭର ସତବିଦ୍ୟା କୁଶଳକୁ ଗୁଡ଼
ବଳବୀର୍ଯ୍ୟ ଥାଇଁ ଆମ୍ଭେ ଏଥେଁ କପାଁ ପଡ଼ ।
ଏଥିକୁ ଖ୍ୟାତି ତୁମ୍ଭେ ନ କର ଦେବସ୍ୱସ୍ତେ
ବିଗହକେ କରିଯିବା ମେରୁ ପାଖଯାଏ ।
ଯୁକତେ ହେଉଛୁ ଦେଖ ଗ୍ରୀଷ୍ମଋତୁ ଶେଷ
ବରଷା ହେଲାଣି ଆସି ପ୍ରଥମ ଯେ ମାସ ।
ଠାବେ ୨ ଦେତେବ ଲୋକେ ଭୋଜୀ ତୃଣ ପାଣି
ସ୍ଥଳଜଳ ପରିବା କରି ବଳଦେ ଚଲଣି ।
କେବଣ ରାଜାର ସୀମା ବସିବାକ ମାଡ଼ି
ଧନଭଣ୍ଡାର ସବୁଟେ ଆଣିମା ଉଜାଡ଼ି ।
ସଙ୍ଗେ ଚଳଇ ସମାନ ଖଟ ଆଦିକରି ।
ବାଣ ବଣିଜାର ସଙ୍ଗେ ଥିବାକ ଭୂମ୍ଭର ।
ଏହ୍ମତେ ବିଗହକେ କହି ଦେବରାସ୍ତେ
ପ୍ରଭୁ ତେଜ ବଳଶିବା ବ୍ରହ୍ମଲୋକ ଯାଏ ।
କେଶୀ ବଚନ ଶୁଣିଣ କଂସ ବସ୍ତ୍ରରଲା
ଯିବା ଭଲ କେଶୀ ବୋଲି ରାଜା ଆଜ୍ଞାଦେଲା
ସାଜ ସାଜ କେଶୀ ଦଣ୍ଡ ସାଜ ହୋ ବୋଇଲା
ରାଜାର ଆଜ୍ଞାରେ ସମଦଣ୍ଡ ସେ ସାଜିଲା ।
ସାରତୂର ଶବଦରେ କମ୍ପିଲା ବ୍ରହ୍ମାଣ୍ଡ
ଦଲ ଦଲ ହେଉଅଛି ପୃଥ୍ୱୀ ନବଖଣ୍ଡ ।
ଭେରୀ ତୁରୀ ଶଙ୍ଖ ଦମା ମଙ୍ଗଳ ମହୁରୀ
ଟମକ ନଶାଣ ଢୋଲ ମର୍ଦ୍ଦଳ କାହାଳୀ ।
ବଳଘୋଷ ଦାଉଣ୍ଡି ଯେ ଅଳା କଡ଼ାବେଣୀ
ବଇଁଶୀ ସାର କାହାଳୀ ବାଜେ ପୁଣି ପୁଣି ।
ଅଶ୍ୱଙ୍କର ହେଷାରବ ହସ୍ତି କଣ୍ଠ ନାଦ
ସ୍ଥବଳ ଚଡ଼ ଚଡ଼ ଯେ ଅପ୍ରମିତ ଶବ୍ଦ ।

ପାତାଳେ ବଲେ ବାସୁକି ଅନ୍ତ ସସ ଫେଣ
ପାଦଭରେ ଟଳ ମଳ ହୋଇଲା ଧରଣୀ ।
ଯଦୁ ଭୋଜ ବଳ ସେହ୍ନ ଅକଳିତ ଥାଟ
ଅନ୍ଧକ ଚନ୍ଦ୍ରାଣ ବୃଷ୍ଣି ଲୋକ ଯେ ମୁରାଟ ।
ଏମନ୍ତ ଯେ ସାତବଂଶ ଜାଣ ବିଦ୍ୟମାନ
ଭୋଜବଂଶର ଯେ କଂସ ଅଟଇ ରାଜନ ।
ଅତି ବଡ଼ ଯୋଦ୍ଧା ଯଦୁବଳ ଯେ ଅଟନ୍ତି ।
ସଂଗ୍ରାମେ ପ୍ରାଣେ ପଛକୁ କେହ୍ନ ନ ଘୁଞ୍ଚନ୍ତି ।
ବଡ଼ ପ୍ରତାପୀ ଛପନକୋଟି ଯଦୁବଳ
କାହାକୁହିଁ ଶଙ୍କା ନାହିଁ ଅତି ଅନର୍ଗଳ ।
ନବକୋଟି ହସ୍ତି ତେର କୋଟି ଯେ ପଦାତି
ପାଞ୍ଚଲକ୍ଷ ତୁରଙ୍ଗମ ଅର୍ବୁଦେକ ରଥୀ ।
ଏତେକ କଂସରାଜାର ଅଙ୍ଗବଳ ସୈନ୍ୟ
ସାର ମର୍ଦ୍ଦନ ସେ ତାକୁ ନୁହନ୍ତି କେ ସମ ।
ଅଷ୍ଟ ରତନ ନିର୍ମାଣ ରଥ ଦିବ୍ୟ ଶୋଭା
ମଧ୍ୟାହ୍ନ ଆଦିତ୍ୟ ପ୍ରାୟ ବାଉବାଉ ପ୍ରଭା ।
ସୁବର୍ଣ୍ଣ କଳଶ ତହିଁ ରଙ୍ଗବର୍ଣ୍ଣ ଧ୍ୱଜ
ମାଳମେଘେ ବରସ୍ତେ କି ବିଜୁଳୀର ତେଜ ।
ସୁବର୍ଣ୍ଣର ଗ୍ରଏଣି ଯେ ପିନ୍ଧିଲା ବିଶାଳ
ଉଡ଼ନ୍ତି ତହିଁ ମୁକୁତା ଝୋଣା ମାଳ ମାଳ ।
ଅପୂର୍ବ ଦେବାଙ୍ଗବାସ ଝୀନ ଦିବ୍ୟ ଜ୍ୟୋତି
ସ୍ଥାରର କାଠି ଦର୍ପଣ ଦିଶେ ପନ୍ତି ପନ୍ତି ।
ଚମ୍ପା ଯେ ବକୁଳ ଜୁଇ ଯାଈ ନାଗେଶ୍ୱର
ରଙ୍ଗ ପାଟଙ୍କ ନୂଆ ହାର ଲମ୍ବେ ମାଳ ମାଳ ।
ମୁକୁତା ପବାସ୍ତ ପୁଷ୍ପ ସୁବର୍ଣ୍ଣର ଘଣ୍ଟି
ମାଳସଙ୍ଗେ ଲୋହଳା କି ମୁକ୍ତା ସଙ୍ଗେ କଣ୍ଠୀ
ମାଣରର ଖମ୍ବ ସବୁ ସ୍ଫଟିକର କାଣ୍ଡ ।
ଗଦା ମୁଦ୍‌ଗର ପରଶୁ ଖପର କୋଦଣ୍ଡ ।
ଅସିପତ୍ର କମାଣ ଯେ ଛୁରୀ ଆଦି କରି
ସେହ୍ମା ଯମଦାଢ଼ ଜାତି କନକର ଛୁରୀ ।
ନାନାବିଧ ଶସ୍ତ୍ର ଧରିଣ ସାରବେଶ ହୋଇ
ରଥର ଉପରେ କଂସ ବଜେ କଲା ଯାଇଁ ।
ବାହେ ବୀରନେତ୍ର ଶିରେ ମୁକୁଟ ତ୍ରିଶାଖା
ବଦ ମୁଦ୍ରି କଙ୍କଣରେ ଦିବ୍ୟ ସ୍ୱରୁରେଖା ।
ଅପୂର୍ବ ଅଶ୍ୱ ବାଛିଣ ଯୋଚିଲା ସାରଥି
ପବନ ଗତି ପ୍ରମାଣ ଅଶ୍ୱଙ୍କର ଗତି ।

ହସ୍ତୀଙ୍କ ପୃଷ୍ଠ ଉପରେ ଯୋଡ଼ ବଜ୍ରସେଣ୍ଡା
ଚମ୍ପୁ ସାଜରେ ସାଜେଣି ଫରହର ବାନା ।
କର୍ଣ୍ଣରେ ବଳସ୍ତ ସେ ଯେ ଅଷ୍ଟରତ୍ନ ଜମ
ବଜ୍ରାଙ୍ଗର ଜ୍ୟୋତି ଜିଣି ଝଟକଇ ହେମ ।
ସିକଳ ଦଉଡ଼ି ପାଟସୂତ ରେ ବାନ୍ଧେଣି
ସ୍ୱର୍ଣ୍ଣ କୁସୁମ କପାଳେ ଝଟକଇ ପୁଣି ।
ଆରେଣି ଅଙ୍କୁଶ ଶ୍ୱେତ ଚାମର ସୁବାସ
ବୀର ଘଣ୍ଟି ଘାଗୁଡ଼ିରେ ମଣ୍ଡି ଚଉପାଶ ।
ଆଷାଢ଼େ ଯେହ୍ନେ ଦିଶନ୍ତ ପଉଦଳ ମାଳ
ଆକାଶମାର୍ଗେ ଧାମନ୍ତ ଯେହ୍ନେ ଘନମାଳ ।
ହସ୍ତି ଆରୋହୀ ମାହୁନ୍ତ ତେମନ୍ତ ଦିଶନ୍ତ
ରଥେ ଚଢ଼ି ରଥୀ ଘନ ଘର୍ଘରେ ଗମନ୍ତ ।
ଉପମା ଦେବାକୁ ବଳେ ଅବଶ୍ୟ ମୋ ମତ
ବଡ଼ ପ୍ରତାପି ଅଟଇ ସେ କଂସ ନୃପତ ।
ରାଉତ ମାହୁନ୍ତମାନେ ଅଶ୍ୱ ଗଜ ଚଢ଼ି
ଯିବାର ଚଉଡ଼ବଡ଼କ ମେଘ ଘଡ଼ଘଡ଼ ।
ରଙ୍ଗ ଚୋପର ଆଉଡ଼େଣି ବାଘରର ମୂଳେ
ସମୁଦ୍ର ଲହରୀ ଯେହ୍ନେ ଅତି ଅନୁକୂଳେ ।
ପାଇକଙ୍କ ହାତେ ଧନୁ ଆଉଡ଼େଣି ଯେ ଭଗ
କୁନ୍ତ କାଣ୍ଡ ଖଣ୍ଡା ଦଣ୍ଡ ସାବେଳ ଆଦର ।
କଠୀର ଯେ ବୀର ଘଣ୍ଟା କୋଳାହଳ ବାଜେ
ବସନ୍ତ ପାଟପତଣୀ ଶିରପାଗ ସାଜେ ।
ଚିତ୍ରିତ କାଇମାଟିକ ଚକଟିଣ ସାଛ
ନେତ ପତଣୀ ପିନ୍ଧିଣ ପାଟ କରେ ବାନ୍ଧ ।
ରଥୀ ହସ୍ତି ପଦାତିକ ମୁଖଗ୍ୟକ କରି
ଖଣ୍ଡା ମୂଳେ ରହିଲେ ଯେ ରାଉତ ଆବୋରି
ସୁନାସ ନାମେ ଯେବଣ କଂସର ଅନୁଜ
ସୁଭର ନମନ୍ତ ଶାଳୁ ହେଲା ସଜବାଜ ।
କରେଣ କୋଦଣ୍ଡ କାଣ୍ଡ ଉଦ୍ୟବେଶ ହୋଇ
କଂସ ସମ୍ମୁଖରେ ଦର୍ଶନ କଲା ବୀର ଯାଇଁ ।
ଉଗ୍ରବ ଅକ୍ରୂର ଅନାଧୃଷ୍ଟ ଶତଧନୁ
ସତ୍ରାଜିତ ଯେ ପ୍ରସେନାଜିତ ବୀର ଭାନୁ ।
ବୀରବାହୁ ଯେ ଅଜିତ କଣ୍ଠ ବେଲଜଳ
ବସୁଦେବ ସୁଦେବ ଯେ ବୀର କ୍ଷେତ୍ରପାଳ ।
କୁମୁଦ ଯେ କଉଶିକ ବଂଶ ଆଦି କରି
ଆପେ ବଳେ କଂସରାଜା ବୀରବେଶ ଧରି ।

ମଉଡ଼ମଣି ମୁକୁଟ ମଥାରେ ବାନ୍ଧଇ
ନବରତ୍ନ କର୍ଣ୍ଣ ଫୁଲ ସୀମନ୍ତେ ଖଞ୍ଜଇ ।
କଣ୍ଠେ ସାରସଲ୍ଲି କଣ୍ଠେ ମୁକ୍ତାହାର ମାଳେ
ଆବର ମୁକୁତା ଝରା ଲମ୍ବାଇଲା ଗଳେ ।
ଜଗବଳା ସାଉକର ଚୋଡ଼ର ବାହୁଟି
ଭୁଜରେ ଶୋଭିତ ହାର ଲୁହାଧନୁ ଗୋଟି ।
ଦେଖି କମ୍ପିଲେ ବିବୁଧେ ପଳାଇ ଗଗନୁ
ତେଜ ପ୍ରକାଶେ ଯେସନେ ସହସ୍ରେକ ଭାନୁ ।
ଗଦା ମୁଦ୍ଗର ବେନି ପାରୁଶରେ ଥୋଇ
ମଙ୍ଗଳ ବେଳେ ବସିଲା ବୀର ରଥେ ଯାଇ ।
ଅଷ୍ଟମଲ୍ଲେ ଯେ ଆବୋରି ଛନ୍ତି ବେନି ପାଶ
ଜିଣି ନ ପାରିବେ ଇନ୍ଦ୍ର ହେଲେହେଁ ସହସ୍ର ।
ଷଣ୍ଢା ବକା ଅଘାକେଶୀ ତୃଣୁର ମୁଷ୍ଟିକ
ଶକଟା ଧେନୁକା ମୂଳେ ଅଷ୍ଟମଲ୍ଲ ଯାକ ।
ଏ ଆଠବୀର ଅଟନ୍ତି ଉଣେ ଇଣରଙ୍କା
ଦେବଦାନବଙ୍କୁ ଯେଣ୍ଟେ ନ କରନ୍ତି ଶଙ୍କା ।
ଏ ବଧିରେ ହେଲେ ପୁଣି ସମସ୍ତେ ଯେ ସଜ
ରଥ ପାରୁଶେ ଭଜିଲେ ମଦମତ୍ତ ଗଜ ।
ଗଜ ପାରୁଶେ ରାଉତେ ମହା ମହା ଯୋଧୀ
ରାଉତଙ୍କୁ ଆବୋରିଲେ ସର୍ବେ ଏହି ବିଧି ।
ଏ ବିଧି ସଇନ ଅଷ୍ଟାଦଶ ଅବ୍ଦ ଲେଖା
ସାତବଂଶ ଯାଦବେ ଯେ ଉଣେ ଇଣରଙ୍କା ।
ଜବଣ୍ଡି ଆଲମ୍ବ ଲକ୍ଷ ଲକ୍ଷ ପାଟଛତି
ନେତ ପାଟର ବଉଳ ଉଡ଼େ ପନ୍ତ ପନ୍ତ ।
ସିନ୍ଧୁଘୋଷ ଜାଣି ଶୁଭୁଅଛି ମୁଖନାଦ
ନବଖଣ୍ଡ ମେଦିନୀ ଯେ ହୋଇଲା ଛବବ ।
ସୈନ୍ୟଙ୍କ ଉତ୍ସୁକେ ଆପେ କଂସାସୁର ରାୟେ
ପୁଲକିତ ରୋମାବଳୀ ହରଷିତ କାୟେ ।
ଉଗ୍ରସେନକୁ ସମ୍ମୁଖେ ବୋଲି ଦେଇ ଶିକ୍ଷା
ହେ ପିତା ଆସିବା ଯାଏ ରାଜ୍ୟ କର ରକ୍ଷା
ତୁମ୍ଭ ପ୍ରସାଦେ ପିତା ମୁଁ ଦିଗ୍ବିଜେ କରିବ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ମୁଁ ସକଳ ସାଧିବ ।
ଆଜ୍ଞା ପାଇ ଉଗ୍ରସେନ ରାଜ୍ୟରେ ରହିଲା
ଶୁଭଯୋଗ ଦେଖି କଂସ ଦଣ୍ଡ ଚଳାଇଲା ।
ଆଷାଢ଼ ଶୁକ୍ଳ ଦ୍ୱିତୀୟା ବୃହସ୍ପତି ବାର
ବାଣିଜ୍ୟ କରଣ ସବୁ ଭୋଗ ସେ ଦିନର ।

ପୁଷ୍ୟାନକ୍ଷତ୍ର କର୍କଟାଚନ୍ଦ୍ର ଭୋଗ ହୋଏ
ବୃହସ୍ପତିବାର ଚନ୍ଦ୍ର ବଶ କୁମ୍ଭ ଯୋଗ ।
ଉଷାବେଳ ଜାଣି ଗଡ଼ୁ ବାହାରିଲା କଂସ
ଅପ୍ରମିତ ସୈନ୍ୟସଙ୍ଗେ ଛନ୍ତି ସାତବଂଶ ।
ପାତ୍ର ମନ୍ତ୍ରୀ ଅଷ୍ଟମଲ୍ଲେ ବେଢ଼ିଛନ୍ତି ସଙ୍ଗେ
ଆଧି ଉପାଧି ବାରତା ଜଣାନ୍ତି ସେ ବେଗେ ।
ସର୍ଧୀରେ କଂସରାଜନ ସମଦଣ୍ଡ ବାନ୍ଧି
ଉତ୍ତରମୁଖେ ଯମୁନା ନଦୀ ପାର ହୋଇ ।
ମାର ମାର ଧର ଧର ଶୁଭେ ଶଙ୍ଖ ଧ୍ୱନି
ପାଦଭରେ ଦଲଦଲ ହୁଅଇ ମେଦନୀ ।
ପାତାଳେ ବାସୁକି ଟେକି ନ ପାରଇ ଫେଣୀ
ଧୂଳି ଉଡ଼ନ୍ତେ ଅଦୃଶ୍ୟ ହେଲେ ଦିନମଣି ।
ଯମୁନାକୂଳୁଁ ଯୋଜାଏ ଦୂର କଂସ ଗଲା
ଗୋମନ୍ତ ନଗରେ ଯାଇଁ ପ୍ରବେଶ ହୋଇଲା ।
ଚତୁରଙ୍ଗ ବଳ ଚାଲି ଯାନ୍ତି ଅତି ବେଗେ
ଶୂରବନ୍ତ ଶକଟା ଯେ ନ ମିଳନ୍ତି ଆଗେ ।
ଏଥିଅନନ୍ତରେ ଶୁଣ ଅପୂର୍ବ ରହସ୍ୟ
ଦୁମିଳ ଦୈତ୍ୟ ସେ ବନେ ଅଟଇ ନରେଶ
ଗୋମନ୍ତ ପର୍ବତ ଶିଖେ ବସି ଦୈତ୍ୟମଣି
ମନେ ଉଚାଟ ପାଇଲା ମୁଖରବ ଶୁଣି ।
ତଳକୁ ଚାହିଁଲା ଦୈତ୍ୟ ନେତ୍ର ସ୍ଥିର କରି ।
ଦେଖିଲା ଯେ ସମଦଣ୍ଡ ଆସୁଛନ୍ତି ପୂରି ।
ପ୍ରଚଣ୍ଡ ଘୋର ଶବଦ ମୁଖ ପ୍ରତିଧ୍ୱନି
ପାଦଘାତେ କମ୍ପମାନ ସକଳ ମେଦିନୀ ।
ବେଳକୁ ବେଳ ସୈନ୍ୟବେଗେ ଆସୁଛନ୍ତି ମାଡ଼ି
ମହାମେଘରେ ଯେସନେ ଶୁଭେ ଘଡ଼ଘଡ଼ି ।
ତାହା ଦେଖି ଦାନବର କମ୍ପିଲା ସର୍ବାଙ୍ଗ
କୋପାନଳେ ଯିବାକୁ ସେ ହେଲା ଉଦବେଗ
ଗଦାବର ବୁଲାଇ ସେ ଧାଏଁ କୋପାନଳେ
ଧାଇଁକାରେ ମିଳିଲା ସେ ପର୍ବତର ତଳେ ।
ଅସଂଖ୍ୟ ସୈନ୍ୟ ଆସନ୍ତି ଦେଖଇ ସେ ଆଗେ
ରହ ରହ ବୋଲି ବାର ଓଗାଳିଲା ବେଗେ ।
ବହୁତ ସୈନ୍ୟ ଦେଖିଣ ସେ ଅସୁର ମଣି
ସୈନ୍ୟଙ୍କୁ ଗର୍ଜି ପଷ୍ଟେର ବାର ପୁଣ ପୁଣି ।
କାଳକଳେବର ଭୁଜର ଜାତରେ ମାନବା
ବାଟ ନ ଜାଣି ଏବାଟେ ଅଇଲକି ବାବା ।
ମୋର ବନସ୍ତକୁ କମ୍ପା ପକାଉଛୁ ଭାଞ୍ଜି
ନଷ୍ଟପ୍ରୁ ଯମ ପୋଛୁଲା ଜାଣ ତୋର ପାଞ୍ଜି ।
ନ ଜାଣି ଶଠ ଭୂମ୍ୟେରେ ହେଲ କି ଆରମ୍ଭେ
ଭଲେକି ଗୁଡ଼ଦେବୁରେ ତୁମ୍ଭଙ୍କୁ କି ଆମ୍ଭେ
କାଳାନଳ ମୂର୍ତ୍ତି ଆଜ ତୁମ୍ଭଙ୍କୁ ଭେଟିଲ
ଏତେ ବୋଲି ଦୈତ୍ୟମଣି କୋପରେ ଧାଇଁଲା
ଆରେ ମୂଢ଼ା ମୋ ପ୍ରତିଜ୍ଞା ଶୁଣିଲ କି ନାହିଁ
ଅକଣ୍ଟକ ବନ ମୋର ଗର୍ଜିଲ କମ୍ପାଇଁ ।
ଏତିକ୍ଷଣି ସମସ୍ତେରେ ଯିବ ପ୍ରାଣେ ନାଶ
ଏହା କହିଣ ଦାନବ ବଢ଼ିଲାକ ରୋଷ ।
ଗଦାବର ବୁଲାଇଣ ଧାଇଁଗଲା ବେଗେ
ଯେ ଯାଙ୍କ ଉପରେ ଗଦା ପିଟିଲାକ ବେଗେ ।
ହୁଂକାର ନାଦ କରିଣ ଗୁଡ଼େ ସିଂହରଡ଼ି
ମେରୁମନ୍ଦର ଗିରି କି ପଡ଼ୁଅଛୁ ଝଡ଼ି ।
ଦନ୍ତେ ଦନ୍ତ ଚାପି ବାର ମାରେ ବଜ୍ର ମୁଷ୍ଟି
ପଡ଼େ ହସ୍ତିର ଲଲାଟ ଫାଟି ଯାଏ ଫାଟି ।
ରଥକୁ ଧରି କଚାଡ଼େ ରଥର ଉପରେ
ଗର୍ଜିଣ ଦାନବ ମଣି କମ୍ପେ କୋପଭରେ ।
ବୃକ୍ଷପାଖ ଖେଦ ମାରେ ବାର ବଜ୍ର ନାଦ
ଘୋଡ଼ା ରଥୀ ପଦାତିକ ପଡ଼ିଲେ ବହୁତ ।
ଅଶ୍ୱଙ୍କ ଉପରେ ନେଇ ଅଶ୍ୱକୁ କଚାଡ଼ି
ହାହାନାଦ କରିଣ ସେ ଗୁଡ଼େ ସିଂହ ରଡ଼ି ।
ବାମକରେ ହସ୍ତୀଙ୍କର ଯୋର ହସ୍ତ ଧରି
ଆରେକ କରେ ମାରଇ ଗଦା ପିଟିକରି ।
ଅଶ୍ୱ ପଦାତିକ ବଳ ପାଦେ ମରଦଇ
ବିଦ୍ୟୁତ ଜ୍ୟୋତି ପରାୟେ ଗଗନେ କ୍ଷେପଇ ।
ବେଳକୁ ବେଳ କୋପରେ ବଢ଼ଇ ଉଜ୍ଜ୍ୱଳ
ଅଧରେ ଦନ୍ତକୁ ଚାପି ଧାଏଁ ମହାବଳ ।
କାମରୂପୀ ଅଇତ ସେ ଜାଣେ ନାନା ମାୟା
ମହଇ ଗିରି ସମାନେ ବଢ଼ାଇଛୁ କାୟା ।
ଆକାଶ ମାର୍ଗରେ ତାର ମଥା ଲଗେ ଯାଇ
ଦେଖି ଦେବେ ସ୍ୱର୍ଗ ଦୁଆରେ ଗଲେଆଉଜାଇ
ମହାଶାଳ ତରୁ ପ୍ରାୟେ ଦିଶଇ ତା ଭୁଜ
ପର୍ବେରେ ସେ ଗୁହପୁଣ ଆଙ୍ଗୁଳିକ ଗୋଜ ।
ଉତ୍ତୁଙ୍ଗ ପର୍ବତ ପ୍ରାୟେ ଦିଶେ ପଦ ବେକ
ଚକ୍ଷୁ ଦୁଇ ରଙ୍ଗବର୍ଣ୍ଣ ଜଳଇ କି କଣ୍ଢି ।

ଉଠ ମଠ ବେନ ପାଟି ଉପୁଙ୍କର ଝଣି
ଯାଦବ ବଳ ପଳାଇଗଲେ ରଣେ ଖସି ।
ଲହ ଲହ ଜିହ୍ୱା ଅତି ଉପୁଙ୍କର ମୂର୍ତ୍ତି
ନିର୍ଧୂମ ଅନଳ ପ୍ରାୟ ବଗଜଇ କ୍ରୋଧ ।
ନିଃଶ୍ୱାସର ବାତେ ରଥଗଜେ ଯେ ଉଡ଼ନ୍ତ
ଅନେକ ଦୂରରେ ଯାଇଁ ଭୂମିରେ ପଡ଼ନ୍ତ ।
ଅନେକ ସୈନ୍ୟ ମାଇଲା ସେହି କୋପଭରେ
ହାତୀ ରଥୀ ପଦାତିକ ମର୍ଦ୍ଦିଲ ହସ୍ତରେ ।
ପାଦଘାତରେ କାହାକୁ କରେ ମସିଗୁଣ୍ଡା
ରନ୍ଧ୍ରେଧନୋଳା କରଣ କମ୍ପଇ ପ୍ରଚଣ୍ଡା ।
ଭୈରବ ମୂରତି ଧରି ଧାଏଁ ମହାରୋଷେ
ଉପୁରେ ଯାଦବବଳ ନ ରହନ୍ତି ପାଶେ ।
ରକତେ କର୍ଦ୍ଦମ ହେଲା ଛେଣ୍ଡେ ମସ୍ତସ୍ଥଳୀ
ନିରନ୍ତରେ ମଣ୍ଡାପରେ ମଣ୍ଡା ପଡେ ଢଳି ।
ନିର୍ଦ୍ଦୟ ନିରପେକ୍ଷ ସେ ଅସୁରର ଅଙ୍ଗ
ମାରଇ ପାଦଘାତରେ କରି ରଣରଙ୍ଗ ।
ପଳାନ୍ତି ପଛକୁ ଫେରେ ନ ଚାହାନ୍ତି କେହି
ଅସମ୍ଭାଳ ହୋଇଲେକ ସବୁଙ୍କର ଦେହି ।
ସୁନାମ ନାମେ ଯେ ବୀର କଂସ ସାନଭାଇ
ଡାକିଲା ସୈନ୍ୟ ମୁଖକୁ ଦୃଷ୍ଟି ଶବଦାଇ ।
ରହ ରହ ବୀର ବୋଲି ଓଗାଳିଲା ଯାଇଁ
ଦୈତ୍ୟର ସମ୍ମୁଖରେ ରଥ ଟେକିଲେକ ନେଇ ।
ଅନର୍ଗଳ ଧନୁଶର ଧରି ଉଗ୍ରସେନ
ଧାଡିକାରେ ମାଇଲା ସେ ଶକ୍ତି କରେ ଯେନ
ବେନଶତ ବାଣ ପୁଣି ବର୍ଷାଇଲା ଗୁଣେ
ଦାନବର ଉପରକୁ ବନ୍ଧେ ଅତି ଟାଣେ ।
ହାତର ଛଟକେ ବୀର ପାଞ୍ଚସତ ବାଣ
ଭେରେକାର କରି ଡାକହାକ ବନ୍ଧେ ପୁଣ
ଅର୍ଦ୍ଧନିଃଶ୍ୱାସକେ ବାଣ ସନ୍ଧି ବନ୍ଧେ ଲକ୍ଷେ
ବନ୍ଧନ୍ତେ ବାଣ ଚାହାର ଗଲେ ଅନ୍ତରୀକ୍ଷେ ।
ଅପ୍ରମିତେ ବାଣ କୋପେ ପେଷି ମହାବଳୀ
ଆକାଶେ ଅଦୃଶ୍ୟହେଲେ ଦେବ ଅଂଶୁମାଳୀ
ଦେଖିଣ ଦ୍ରୁମିଳାସୁର ମୁଦ୍ଗର ବୁଲାଇ
ବାଣ ଆସନ୍ତେ ସେ ବୁଲୁ ପାଡିଲେକ ନେଇ ।
ସୁନାସର ବାଣମାନ ଦୈତ୍ୟ ଅଙ୍ଗେ ପଡ଼ି
ଭଇରବ ରୂପ ଧରି ଗୁଡେ ସିଂହରଡ଼ି ।

ଥୋକାଏ ବାଣ ନିଃଶ୍ୱାସ ବାତେ ଗଲା ଉଡ଼ି
ଥୋକାଏ ଦଇତ ଦେହେ ବାଜ ପଡ଼େ ଝଡ଼ି
ସୁନାସ ସମ୍ମୁଖରେ ଦୈତ୍ୟ ମିଳିଲାକ ଆସି
ଗହ୍ବରଗହ ଗ୍ରାସିଲା କି ଆସି ରବି ଶଶୀ ।
ଗଦାବର ବୁଲାଇଲା ପିଟିଲା ପ୍ରଚଣ୍ଡା
ସୁନାସର ରଥଖଣ୍ଡି ହେଲା ମସିଗୁଣ୍ଡା ।
ସାରଥି ଚାହାର ମଲା ଚାରି ଅଶ୍ୱ ମଲେ
ସୁନାସ ରଥରୁ ଡେଇଁ ଉଭା ଭୂମିତଳେ ।
ବିରଥ ହୋଇଲା ସେହି ଉଗ୍ରସେନ ବାଳ
ଧାଡିକାରେ ଧଇଲା ସେ ଖଡ୍ଗର ଫଳ ।
ଅସିପତ୍ରକୁ ବୁଲାଇ ଧାଇଁ ଯାଇଁ ବେଗେ
ଦାନବ ଶରୀରେ ବୀର ମାରେ ଅତିରାଗେ ।
ଦେଖି ଦ୍ରୁମିଳା ପାତିଲା ନେଇ ତାର ମୁଣ୍ଡ
ଶିରେ ବାଜ ଅସିପତ୍ର ହେଲା ଶତଖଣ୍ଡ ।
ନିଶତ ହୋଇଲା କଂସ ଅସୁର ଅନୁଜ
ବାଳ ଧରି କାଖେ ଚାପି ଡାକିଲା ଦନୁଜ ।
ବକକୁ ଯେସନ ଯେସନେ ଧରଇ ଶାମଳ
ଚଞ୍ଚକତି କ୍ଷେପଇ ସେ ଦୈତ୍ୟ ଅନର୍ଗଳ
ଗତ ଆତ୍ମା ହୋଇ ଉଗ୍ରସେନର ନନ୍ଦନ
ରୁଧିର ବହଇ ଦଶଦ୍ୱାରୁ ଘନ ଘନ ।
ସୁନାସ ପାଶେ ଯେତେକ ଯଦୁବଳ ଥିଲେ
ରଣ ଭଙ୍ଗ ପାଇ କଂସ ସମ୍ମୁଖରେ କହିଲେ ।
ଯଦୁ ଭୋଜବଂଶ ତୁମ୍ଭେ ଅଟ ଗୁଣନିଧି
ଅଖଣ୍ଡେ ହରଷ ଦେଲ ଏଡ଼େକ ସମୃଦ୍ଧି ।
ଭାଇ ତୁମ୍ଭର ସୁନାସ ପ୍ରାଣେ ଯିବ ନାଶ
ଜୀବନ୍ତା ବନ୍ଧନ କରି ନେଉଛି ରାକ୍ଷସ ।
ଦେଖ ଦେଖ ବୀରବର ଆସୁଅଛି ମାଡ଼ି
ଦୃଷ୍ଟି ନ ହେଉଁ ଖାଇବ ସବୁ କେକମୋଡ଼ି
ବହୁତ ସୈନ୍ୟ ମାରି ସେ ଗୋଡ଼ାଇଛି ବେଗେ
ମହା ମହା ରଥୀ କେହି ନ ରହିଲେ ଆଗେ
ସ୍ଥଳ ସ୍ଥଳ ରାଜନ ହୋ ଏଥୁ ପଳାଇବା
ଅସୁର ସମ୍ମୁଖରେ ପଡ଼ କେହି ନ ବଞ୍ଚିବା ।
ଦେଖ ହେ ଭୂପାଳ ଆସେ ସେ ରାକ୍ଷସ ମାଡ଼ି
ସ୍ଥଳ ଯିବା ଏଥେ ଥିଲେ ଦେବ ଶିର ମୋଡ଼ି
ଯଦୁ ଭୋଜବଂଶରେ ହେ ଅଟ ଶିରୋମଣି
ମଥୁରାପୁର କଟକେ ତୁମ୍ଭେ ଜୟ କାରେଣି ।

ରଜାଙ୍କର ପୁତ୍ର ତୁମ୍ଭେ ରାଜ୍ୟ ଅଧିକାରୀ
ପିତା ଥିବୁଁ ଥାଉଁ ହେଲ ତୁମ୍ଭେ ଦଣ୍ଡଧାରୀ ।
ଯଦ୍ୟପି ଏଠାରେ ଆଜ ପାଇବା ଅଯଶ
ଉଗ୍ରସେନଙ୍କ ଆମ୍ଭଙ୍କୁ କରିବ ଯେ ନାଶ ।
ଆପଣା ଜୀବନ କେହି ମୃହନ୍ତ କାହାର
ଦାନବ ଦର ନ ଆସୁ ଯିବା ବେଗ କରି ।
ଏହା ଶୁଣି କଂସ ହସେ ନାକେ ହାତ ଦେଇ
ହସିଣ ଉଠଇ କଂସ ହହ ହହ ହୋଇ ।
କଂସ ରଜା ବୋଲଇ ନ ଜାଣ ତୁମ୍ଭେ କିଛି
ଜାତ ହୋଇଲେ ଅବଶ୍ୟ ଏଥେ ମୃତ୍ୟୁ ଅଛି
ଜନମ ମରଣ ଏହି ସଂସାର ବେଭାର
ଦେହ ବହି ମଞ୍ଚେ କେହି ନାହିଁ ଅଜାମର ।
ଜାତୁଁ ବୃଦ୍ଧ ପରଯନ୍ତେ ଯେତେ ଜାତ ହୋଇ
ଯେ ଯାହାର କେଳକାଳ ଜାଣି ସହରଇ ।
ଦେବତାର ଭିଆଣ ଏ ସଂସାର କାରଣ
ଜନ୍ମ ହୋଇଲେ ଅବଶ୍ୟ ହୁଅଇ ମରଣ ।
ସଂସାରେ ଜାତ ହୋଇ କି ମରଣକୁ ଭୟେ
ଶତେକ ହେଲେକ ହେବ ଅଜାମର କାୟେ ।
ଜାତ ହୋଇଲେ ଲୋକରେ ଅବଶ୍ୟ ମରିବା ।
ଅର୍ଜିଲାର କର୍ମଫଳ କପାଇଁ ଡରିବା ।
ଶତେ ବର୍ଷକାର ହୋ କିଛି ନୋହେ ସୁଖ
ଶତ୍ରୁସ୍ଥ ପଡ଼ିଲ ଯେବେ ଭାଇ ଦୈତ୍ୟ ମୁଖ ।
କ୍ଷତ୍ରି ହୋଇଣ ଯଦ୍ୟପି ସଂଗ୍ରାମେ ଡରିବ
ବ୍ରାହ୍ମଣ ହୋଇଣ ଯେବେ ବେଦ ନ ପଢ଼ିବ ।
ରୋଗୀହୋଇଣ ବୈଦ୍ୟକୁ କରେଯେବେ ରୋଷ
ସେବକ ହୋଇ ସ୍ୱାମୀର ଯେବେ ଅବିଶ୍ୱାସ ।
ବୈଷ୍ଣବ ହୋଇଣ ଯେବେ ହେବ କ୍ରୋଧକାରୀ
କୁଳସ୍ତ୍ରୀ ହୋଇ ଯେବେ ହୋଇବ ଦୋଚୁରୀ
ସଭାପଣ୍ଡା ହୋଇ କହେ ସଭା ମଧ୍ୟେ ମିଛ
ରଜା ହୋଇ କରେ ଯେବେ ପ୍ରଜାଙ୍କୁ ଅରକ୍ଷ
ଶିଷ୍ୟ ହୋଇ ଯେବେଗୁରୁ ନିନ୍ଦେ ମତିଭୋଳେ
ଏମାନେ ନର୍କେ ପଡ଼ନ୍ତି ଜାଣ ଅନ୍ତକାଳେ
ଭୋଜବଂଶ କ୍ଷତ୍ରି ଆମ୍ଭେ ଅଟୁ ଜଗଜିତା
ମଥୁରାଧିପତି ଉଗ୍ରସେନ ଆମ୍ଭ ପିତା ।
ଆମ୍ଭର ଉପର ବଂଶେ ଯେତେ ରଜାଥିଲେ
ଯୁଦ୍ଧେ ପ୍ରାଣ ହରାଇଣ କୀର୍ତ୍ତି ରହାଇଲେ ।

ପାଣିର ଭିତରେ ଯେମନ୍ତେ ପାଣି ଜନ୍ମ ଫୁଟି
ତେସନ ସଂଜାତ ଏହି ପଞ୍ଚଭୂତ ଗୋଟି ।
ଯଦ୍ୟପି ସଂଗ୍ରାମେ ଆଜ ଦନୁଜ ମାରିବା
ଜମ୍ବୁଦ୍ୱୀପ ଅକଣ୍ଟକ କରିଣ ଭୁଞ୍ଜିବା ।
ଆମ୍ଭେ ଯେବେ ସଂଗ୍ରାମରେ ଯିବା ପ୍ରାଣେନାଶ
ରଣଯଜ୍ଞ କରି ସୁଖେ ଯିବା ସ୍ୱର୍ଗବାସ ।
ଏତେକହି କଂସ ତାର ସୈନ୍ୟ ପଛ କରି
ରଥରେ ସେ ଏକେ ଚଳ ଧନୁଶର ଧରି ।
କହୁଁ କହୁଁ କଂସ ଧାଇଁଗଲା ଅତିବେଗେ
ଘୋର ନାଦ କରି ଉଭା ହେଲା ଦୈତ୍ୟଆଗେ
କେତୁ ମଙ୍ଗଳ ଯେସନେ ଦିଶେ ତାଙ୍କ ତେଜ
ମେରୁଗିରି ଯୋଡିଲା କି ଐରାବତ ଗଜ ।
ରେରେକାର କରି ବୀର ଧାଇଁ ଯାଇଁ ବେଗେ
କଂସ ଉପରେ ପିଟିଲା ଗଦା ବଇରାଗେ ।
ଜାଣିଣ ସାରଥି ତାର ରଥ ଦେଲା ଘୁଳ
କେଡେବଡ଼ ଗଦା ଗଲା ଭୂମିରେ ଯେ ଗଳ
କହୁ କହୁ ଧାଇଁ ଯାଇ ଦୈତ୍ୟ ପଚ୍ଛେ ମାଡ଼ି
ଭୂମିରୁ ଗଦା ତୋଳନ୍ତେ ହସ୍ତୁ ପଡ଼େ ଛାଡ଼ି ।
ଗଦା ଭଗ୍ନ ହେବା ଦେଖି ଦୈତ୍ୟ ମହାବଳୀ
ବୃକ୍ଷେକ ଉପାଡ଼ ବେଗେ ମାଇଲାକ ତୋଳି
କଂସ ସାନଭାଇ ଉଗ୍ରସେନ ସାନ ବହି
ସେ ସୁନାମକୁ ଦ୍ରୁମିଳ କାଟେ ଯାଇଅଛୁ ।
ଆପଣା ବକ୍ଷରେ ତାହା ଦେଖି କଂସରାୟେ
କ୍ରୋଧେ କର୍ମିଲ ତାହାର ଶିରୁ ପାଦଯାଏ ।
ଭାଇର ଦୁର୍ଦ୍ଦଶା ଦେଖି କଂସାସୁର ବୀର
ଧାଡ଼କାରେ ଧଇଲାକ ଲୋହ ଧନୁଶର ।
ତିନି ସହସ୍ର ନାରାଚ ଗୁଣରେ ବସାଇ
ମନ୍ତ୍ରବଳେ ବାଣତଳେ ବେଗଗତି ହୋଇ ।
ପୁଣ ପାଞ୍ଚ ଲକ୍ଷ ବାଣ ଯୋଖି ଏକମନା
ପେଷନ୍ତେ ଫୁଟିଲା ଦୈତ୍ୟବର ବଜ୍ରସେନା
ହସ୍ତେ ପୁଣି ଦଶବାଣ ବ୍ୟଗ୍ର କରି ଧରି
ଅଧର ପୃଷ୍ଠ କରିଣ ମାରେ କୋପକରି ।
ଦେଖନ୍ତେ ଦେଲ କୋପଭର ହୋଇ ମହାବଳୀ
ପାଞ୍ଚଶତ ବାଣ ପୁଣି ମାରେ ମନ୍ତ୍ରି କରି ।
ଲକ୍ଷେକ ବାଣ ମାଇଲା ପୁଣି ଗୁଣେ ଯୋଖ
ସହସ୍ରେ ବାଣ ମାଇଲା ଧନୁକୁ ଆମଞ୍ଚ ।

ହୁଁକାର ଧ୍ୱନି କରନ୍ତି ମାରେ ବାର ବାର
ଗଗନେ ଅଦୃଶ୍ୟ ହେଲେ ଦେବ ଦାନବର ।
ଜଳଦମାନେ ବରଷେ ଯେହ୍ନେ ଜଳଧାର
ତେହ୍ନେ ବାଣ ବୃଷ୍ଟି କରେ କଂସ ମହାବୀର ।
ଏକା ନିଶ୍ୱାସେ ସହସ୍ରେ ବାଣ ସେ ସନ୍ଧଇ
ଘୋର ନାଦ କରି ବେଗେ ୨ ସେ ଛନ୍ଧଇ ।
ବଡ଼ ପ୍ରତିଜ୍ଞାବନ୍ତ ସେ ଉଗ୍ରସେନ ବଳା
ସଂଗ୍ରାମେ ସାରଥି ଯାର ତେଜ ଅନର୍ଗଳା ।
କୋଟି ୨ ବୀରଙ୍କୁ ସେ ଖଣ୍ଡପ୍ରାୟେ ମଣେ
ରାକ୍ଷସ ମାନେ କ ସମ୍ଭବେ ତାକୁ ରଣେ ।
ପୂର୍ବର ଶାପ ତାହାକୁ ପାପକର୍ମ ଯୋଗେ
ନିଜପୁତ୍ର ହସ୍ତେ ମୃତ୍ୟୁ ଅଛି ତାର ଭାଗ୍ୟେ ।
ପିତା ପୁତ୍ର ବୋଲି ପୁଣି ନ ଜାଣନ୍ତି କେହି
ନିରତେ ଶର ପଡ଼ଇ ଦାନବର ଦେହି ।
ଅପୂର୍ବ ବୀର ସେ ଦୁଇ କଲେ ରଣରଙ୍ଗ
ରକତ ବର୍ଷି ଦିଶଇ ଦୁହିଙ୍କର ଅଙ୍ଗ ।
ସୁନାସ କୁମାରକୁ ସେ ଜାଣେ ଯାକଥିଲା
ସଂଗ୍ରାମ କରନ୍ତେ କଂସ ତାହାକୁ ଦେଖିଲା ।
ବାବଲ ବାଣ ଛନ୍ଦନ୍ତେ ଜାଣେ ଗଲା ଗଲା
ପୀଡ଼ା ପାଇ ସୁନାସକୁ ଗ୍ରାସିଣ ମହାବଳୀ ।
ଉଗ୍ରସେନର ନନ୍ଦନ ଚଳେ ଧାଣ୍ଡକାରେ
ଭୂମିରେ ମିଳିଲା କଂସ ରାଜାର ସମ୍ମୁଖରେ ।
ବେନି ଭାଇଙ୍କର ଦେଖା ଦେଖି ଏକ ସଙ୍ଗ
କୋପଭର ହୋଇ ଦୁହେଁ କଲେ ରଣରଙ୍ଗ
ଅନେକ ନାରାଚ ଛନ୍ଦେ କଂସ ମହାବୀର
ଅସ୍ତ୍ରମଲ୍ଲ ଆଦିକରି ହୋଇଲେ କାତର ।
ଆକାଶେ ଥାଇ ଦେଖନ୍ତି ରଣ ଦେବଗଣ
ପିତା ପୁତ୍ରଙ୍କର ହେଲା ଅସଂଖ୍ୟକ ରଣ ।
ଏସନ ସଂଗ୍ରାମ କାହିଁ ନ ଦେଖି ଦ୍ରୁମିଳ
ଆନନ୍ଦ ମନେ କହଇ ହୋଇଣ ପ୍ରଫୁଲ୍ଲ ।
କେଉଁ ଭାଗ୍ୟେ ଉଗ୍ରସେନ କଲା ତୋତେ ଜାତ
ଧନ୍ୟ ୨ ତୋହର ହୋ ଗର୍ଭଧାରୀ ମାତ ।
ଭୋଜବଂଶରେ ଜାଣନ୍ତି ଯେତେ ରାଜାଥିଲେ
ଏତେ ବିଖ୍ୟାତ ହୋଇ କେ ଏମନ୍ତ ନକଲେ
ନିଶ୍ଚୟ ମଥୁରା ରାଜ୍ୟ ଏଠାରୁ ସରିଲା
କଂସର ପରାଣ ମୋର ହସ୍ତରେ ପଡ଼ିଲା ।

ଏକଥା ଯହୁଁ ଶୁଣିଲେ ଯଦୁବୀରମାନେ
କୋପାନଳେ ମାଇଲେ ସେ ବାଣ ଅନୁକ୍ଷଣେ
ନିଶ୍ୱାସକେ ବାଣ କଂସ ଛନ୍ଦେ କୋଟି ୨
କଥା କହୁ କହୁ ବାଣ ଆସଇ ଯେ ଘୋଟି ।
ନିରନ୍ତର ପଡ଼ଇ ସେ ଯେହ୍ନେ ଜ୍ୟୋତିମାନେ
ପୃଥିବୀ ଯାକ କମ୍ପିଲା କଂସ ଦର୍ପବଳେ ।
ଏମନ୍ତ ଦେଖି ଦ୍ରୁମିଳ ଚକିତ ହୋଇଲା
ଧନ୍ୟ ଧନ୍ୟ କ୍ଷତ୍ରୀ ବୋଲି ବହୁ ପ୍ରଶଂସିଲା ।
କାହାର ନନ୍ଦନ ତୁମ୍ଭ ଅଟ କାହା ବଂଶ
ରଣେ କପାଇଁ ତୁ ମୋର ପୁର କଲୁ ଧ୍ୱଂସ
ଅକସ୍ମାତେ ଶତ୍ରୁ ହେଲୁ ପୂର୍ବେ ନୋହୁ ବାଦୀ
ଅଜାଣତେ କାହିଁ ପାଇଁ ହେବୁ ଶିରଚ୍ଛେଦୀ ।
ଅପୂର୍ବ ବନ ଗୋଟି ମୋ କଲ କମ୍ପା ନାଶ
କେବଣ କୁଳରେ ଜାତ କେବଣ ପୁରୁଷ ।
ଅନେକ କାଳରୁ ମୁହିଁ ଏଥେ ଥାଇ ରହି
ଏ ରାଜ୍ୟରେ ପଶିଲରେ କହ କାହିଁପାଇଁ ।
ଦ୍ରୁମିଳ ବାଣୀ ଶୁଣିଣ ବୋଲେ ବୀର କଂସ
ଉଗ୍ରସେନ ରାଜା ଅଟେ ଭୋଜ ଯଦୁବଂଶ ।
ତାହାର ନନ୍ଦନ ମୁହିଁ ଅଟେ ଜଗଜିତା
ପବିତ୍ର ଭୋଜବଂଶୀ ଯେ ଇନ୍ଦୁମତୀ ମାତା ।
ପିତା ଉଗ୍ରସେନ ମୋତେ ରାଜ୍ୟଭାର ଦେଲା
ନବଖଣ୍ଡ ମହୀଭାଗେ ଅଭିଷେକ କଲା ।
ମଥୁରା ରାଜ୍ୟରେ ମୋତେ କଲକ କାରେଣୀ
ଛପନକୋଟି ଯାଦବ ପରେ ଶିରୋମଣି ।
ପିତାର ଆଜ୍ଞାରେ ମୁହିଁ ନୃପତି ହୋଇଲି
ଦେବ ଦାନବ ଜିଣିବା ପାଇଁ ବଚନ କଲି ।
ସଙ୍ଗତରେ ଅସ୍ତ୍ରମଲ୍ଲ ଅଛନ୍ତି ମୋ ସଖା
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ମୁଁ ଜିଣିପାରେ ଏକା ।
ତୁ କପାଇଁ ପଥ ମୋତେ ନିରୋଧୁଛୁ ଆସି
ଜାଣି ଗଳାରେ ଲଗାଉ ଅଛୁ କାଳ ଫାଶି ।
ପ୍ରଥମ ଅନୁକୂଳେ ତୁ କଲୁ ଯେ ବିଖଣ୍ଡ
ଏହିକ୍ଷଣି ତୋର ଛେଦ ପକାଇବି ମୁଣ୍ଡ ।
ଏହା ଶୁଣି ଦାନବ ଯେ ପ୍ରହସିତ ହୋଇ
କଂସ ମୁଖକୁ ଚାହିଁ କହେ ଉଚ୍ଚେ ଶବଦାଇ ।
ଦ୍ରୁମିଳ ବୋଇଲା ବାବୁ ଶୁଣ ସିଦ୍ଧ କଥା
ତୁ ମୋହର ପୁତ୍ର ଅଟୁ ମୁଁ ତୋହର ପିତା ।

ଯେବଣ ପ୍ରକାରେ ତୁମ୍ଭ ହୋଇଲୁରେ ଜାତ
ତଦନ୍ତ କରି ଜାଣଇ ଏହା ତୋର ମାତ ।
ମକର ସଂକ୍ରାନ୍ତି ଦିନ ଶୁଦ୍ଧସ୍ନାନ କାଳେ
ଇନ୍ଦୁମତୀ ସ୍ନାନକରି ଉଠିଲେକ କୂଳେ ।
ତାର ମୁଖ ଦେଖି ମୂର୍ଚ୍ଛି କାମେ ବଶ ହେଲି
କାମଦେବ ଜ୍ୱାଳାକୁ ଯେ ସହି ନ ପାରିଲି ।
ଜଳନ୍ଧର ଦୈତ୍ୟ ବଳେ ଜାଣେ କୂଟମାୟା
କପଟରେ ଧଇଲି ମୁଁ ଉଗ୍ରସେନ କାୟା ।
ଜଳଘାଟେ କଲି ତାର ସଙ୍ଗତେ ବିହାର
ସେହି ସଂଯୋଗେ ଉତ୍ପଲୁ ଗର୍ଭରେ ତାହାର ।
କେହି ନ ଜାଣନ୍ତି ଅତି ଗୁପତ ଏ କଥା
ଏକା ଜାଣଇ ତୋହର ଗର୍ଭଧାରୀ ମାତା ।
ତୁମ୍ଭେ ମୋର ପୁତ୍ର ବାବୁ ମୁଁ ତୁମ୍ଭ ପିତର
ଏ ବଚନ ଗୋଟି ବାବୁ ଅଟଇ ନିରଧାର ।
ଯେବେ ଉଗ୍ରସେନ ରାଜାଶୌର୍ଯ୍ୟେ ଜାତ ହେଲ
ଏତେବଡ଼ ପରାକ୍ରମ କିପରି ବହିଲ ।
ଏ ମୋହ ରେତେ ଜାତ ହେଲୁ ପୁତ୍ରଗୋଟି
ସଂଗ୍ରାମେ ଜିଣିଲୁ ତେଣୁ ସପ୍ତଦ୍ୱୀପ ସୃଷ୍ଟି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତୁ କରିବୁରେ ସାଧି
ଜିଣନ୍ତା ନୋହିବେ କେହି ତ୍ରିଜଗତ ମଧ୍ୟ ।
ଏ ତୋହର ରୂପ ଦେଖି ହୋଇଲି ମୁଁ ବଶ
ଏ ଜନ୍ମ ଦୁଷ୍କୃତ ମୋର ହେଲା ଆଜ ନାଶ ।
ନ ଜାଣି ପିତା ପୁତ୍ରର ହୋଇଲେକ ରଣ
ତୋର ରୂପ ଦେଖି ପୁତ୍ର ପାଇଲି କାରଣ ।
ଦ୍ରୁମିଳା ବଚନ ଶୁଣି କଂସ ମହାବୀର
ଅଧର କମ୍ପାଇ କୋପେ କରଇ ଉତ୍ତର ।
ପୁଚ୍ଛ ମୋଡ଼ିଲେ ଯେସନ ଗର୍ଜେ କାଳ ସର୍ପ
କଂସ ବୋଇଲା ତୋହର ହେଲା ଏତେ ଦର୍ପ ।
ଅସୁର ନିଲକ୍ଷଣ ତୁ ଅଟୁରେ ପାମର
ଏକ୍ଷଣି ପ୍ରାଣ ନେବି ତୋର ନିଶାଚର ।
ଆଜ ତୋ ପ୍ରାଣ କେ ଆସି ରଖୁ ରତ୍ନେଶ୍ୱର
ଏକ୍ଷଣି ନେବି ଆରେ ଜୀବନ ତୋହର ।
ଏତେ ବଡ଼ ଲକ୍ଷ କଥା କହିଲୁରେ ମୋତେ
ଅନେକ ଦଣ୍ଡ ଦେବଇଁ ମାରିବଇଁ ତୋତେ ।
ଯେବେ ଦିଗପାଳେ ରକ୍ଷ ହେବେ ଚନ୍ଦ୍ର ସୂର୍ଯ୍ୟ
ଇନ୍ଦ୍ର ଆଦିକରି ତୋତେ ମାରିବଇଁ ଆଜ ।

ଦେବ ଗନ୍ଧର୍ବ ସନ୍ତତେ ଯେ କରିବ ରକ୍ଷା
ଅବଶ୍ୟ ମାରିବି ତାକୁ ତୋତେ ଏ ମୋ ଦୀକ୍ଷା ।
ଏହା କହିଣ ନାରଚ ପେଷେ ବୀର କଂସ
ତୋତେମାଇଲେରେ ମୋର ନାହିଁକିଛି ଦୋଷ
ତିଳ ପ୍ରମାଣ କରି ମୁଁ କାଟିବି ତୋ ମାଂସ
ଦ୍ରୁମିଳା ବୋଲଇ ପୁତ୍ର କ୍ଷମାକର ଦୋଷ ।
ମୋହର ରେତରୁ ତୁମ୍ଭ ହୋଇଛି ଜନମ
ମୋତେ ନାଶକଲେ ତୋର ଯିବ ସବୁ ଧର୍ମ
କଂସ ବୋଲେ ରେ ପାମର ଅଟୁ ନିନ୍ଦାଜାତି
ଧର୍ମକୁ ଲଙ୍ଘିଲୁ ତୁରେ କଲୁ ଏ ଅନୀତି ।
ଗୋପନ ରୂପେ ବିଶ୍ୱାସ ଘାତକତା କଲୁ
ଅସୁର ହୋଇ ଅନୀତି ଘୋର ଆଚରିଲୁ ।
ରାଜପତ୍ନୀ ହରିଲୁ ଯେ କରି କୂଟ ମାୟା
ସ୍ୱଦେହେ ଭୁଞ୍ଜିବୁ ସିନା ଅର୍ଜିଅଛୁ ଯାହା
ଗୁରୁ ପତ୍ନୀ ହରିଅଛୁ କପଟେ ରାକ୍ଷସ
ତୋତେ ମାଇଲେ ତହିଁରେ କିଛୁନାହିଁ ଦୋଷ
ଯେବେହୁଁ ନ ମାରି ମୁଁ ଛାଡ଼ିଦେବିରେ ଦନୁଜ
ଜନମୁଖେ ଉପହାସ ପାଇବି ରେ ଲଜ ।
ଆଗରୁଁ ନାରଦ କହି ଅଛନ୍ତି ତୋ କଥା
ସେହିଦିନୁ ମୋ ମନରେ ଲାଗିଅଛି ବ୍ୟଥା ।
ଅବର ଏଥିରେ ତୋତେ ଦେଇଅଛି ଶାପ
ମୂଢ଼ ନିଲକ୍ଷଣ ତୁରେ କଲୁ ମହାପାପ ।
ଯାହା ଅର୍ଜିଅଛୁ କର୍ମେ ଫଳିବ ନା ତାହା
ନିଶଚ ହେଉ ତୁ ନଷ୍ଟେ ଭେଦିବ ତୋ ହିୟା
ପିତୃ ମାତୃ ଶତ୍ରୁ ତୁରେ ମୋହର ବଇରୀ
ପତିବ୍ରତା ସ୍ତ୍ରୀଙ୍କି ତୁ ବଳାତ୍କାରେ ହରି ।
ବେଦଶାସ୍ତ୍ରେ ନ ବିଚାରି କଲୁରେ ଅହନ୍ତା
ଧନବନ୍ତ ହୋଇ ଯାରେ ଧର୍ମେ ନାହିଁ ଚିନ୍ତା
ଜଣେ ଦ୍ୱନ୍ଦକରି କଲେ ବନ୍ଧୁଲୋକ ମନ୍ଦ
ସହୋଦର ସଙ୍ଗେ ଯେହୁ କରେ କଳହନ୍ଦ ।
ଆପଣା ଅମ୍ବାକୁ ଆପେ ମୃତ୍ୟୁ ହସ୍ତେ ଦେଇ
ଧର୍ମିଷ୍ଠ ପ୍ରମାଣେ ସେ ଆତ୍ମଘାତୀ ହୋଇ ।
ଶୌର୍ଯ୍ୟ ବଳ ଥାଇଁ ଶତ୍ରୁ ନ କରେ ଯେ ନାଶ
ଅନ୍ତକାଳେ କୁମ୍ଭୀପାକ ନର୍କେ ତାର ବାସ ।
ତୁ ହୀନପାମର ବଳେ ହରିଲୁ ମୋ ମାତା
କୁଳକୁ କଳଙ୍କ ମୋତେ ଲାଗେ ବଡ଼ ବ୍ୟଥା ।

ଜାଣି ଶୁଣି ଆଜ ଯେବେ ନ ମାରିବି ତୋତେ
ଇହଲୋକ ଲାଜ ପରଲୋକେ ଦୁଃଖମୋତେ ।
ଏତେ ବୋଲି ଧନୁ ବେଗେ ଧଇଲାକ ତୋଳ
ପ୍ରଳୟ ସମୁଦ୍ର ଜାଣି ଗର୍ଜେ ମହାବଳୀ ।
କାଳାନଳ ପ୍ରାୟ ଦିଶେ ତାର ବେନି ଆଖି
ପାଞ୍ଚ ମନ୍ତ୍ରୀ ଅଷ୍ଟମଲ୍ଲ ଡରିଲେ ତା ଦେଖି ।
କଂସ ବିଶ୍ୱମୂର୍ତ୍ତି ଦେଖି ଦେଖା ବସୁନ୍ଧରା
ଡରେ ଥରହର ହୋଇ ଗର୍ଜନ ଉଗ୍ରର ।
ଲୌହଧନୁକୁ ଆକର୍ଷି ଧରି ବାମକରେ
ସହସ୍ରେ ବାଣ ବିନ୍ଧିଲା ଅସୁର ଉପରେ ।
କଙ୍କପକ୍ଷ ଖଷ୍ଟ ମୁନା ଦଶସହସ୍ର ବାଣ
ଗୁଣେ ବସାଇ ବିନ୍ଧିଲା କରି ଗରୁଟାଣ ।
ଆସନ୍ତେ ସେ ବାଣ ତହିଁ ଦଶଦିଗ ପୂରି
ଉଷୁରି ଛଟକେ ବାଣ ଛେଦେ ଶେଷ କରି ।
ଚଳିଲେ ଯେ ବାଣମାନ ଶୂନ୍ୟପୁର ଘୋଟି
କୁହୁଡ଼ି ଯେସନେ ଘୋଟେ ନବଦ୍ୱୀପସୃଷ୍ଟି ।
ବାଣ ଆସନ୍ତେ ଦୂରୁ ତା ଦୃମିଳା ଦେଖିଲା
ସଂଗ୍ରାମକୁ ଅନ୍ତଗଳ ହୋଇଣ ଧାଇଁଲା ।
ଅନିବାରଣ ଯୋଦ୍ଧା ଯେ ଅଟେ କଂସରାୟ
ଝିଙ୍କପକ୍ଷୀ ପ୍ରାୟ ଶର ଭେଦେ ଦୈତ୍ୟ କାୟ
ଅନେକ ବାଣ ଶରୀରେ ଅଛି ତାର କଣ୍ଟି
ବାଣର ଉପରେ ବାଣ ଚଢ଼ି ଦେହ ଫୁଟି ।
ସେମେ ସେମେ ରୁଧିର ତା ଦେହଯାକ ଗଳ
ହିଙ୍ଗୁଳ ପର୍ବତ ପ୍ରାୟେ ଦିଶେ ମହାବଳୀ ।
ବେଳୁବେଳ ବ୍ୟଥା ପାଇ ଅସୁର ଶରୀର
କୋପ କରି କଂସାସୁର ବିନ୍ଧି ଅଛି ଶର ।
କି କରିବି ବୋଲି ମନେ ବିଚାର କରଇ
କଂସର ଉପରେ ବେଗେ ମାରେ ଗଦାନେଇ
ଦେହେ ବାଜି ଗଦା ଭାଙ୍ଗେ ବେନିଖଣ୍ଡ ହୋଇ
ଦେଖି ଦୃମିଳା ଦୈତ୍ୟକୁ କଷ୍ଟ ନଷ୍ଟ ରଇ ।
ଗଦା ଭଗ୍ନ ଦେଖିଣ ସେ କଂସ ମହାବୀର
ଅର୍ଦ୍ଧଚନ୍ଦ୍ର ବାଣ ପେଷି ଦେଲା ଧାଡ଼ିକାର ।
ବାଣ ବାଜନ୍ତେ ତା ବେନିଭୁଜ ଗଲା ଛିଡ଼ି
ଗଦା ସେନ ଭୁଜଦୁଇ ଖସି ତଳେ ପଡ଼ି ।
ଭୁଜ ଛିଡ଼ନ୍ତେ ଅସୁର କୋପେ ଅନ୍ତଗଳ
ହୋଇଲା ଆଜ ନିଶ୍ଚୟ ପୂରିଲା ମୋ କାଳ ।

ସତ୍ୟ ଶାପ ଏତେଦିନେ ହେଲା ମୋତେ ଭୋଗ
ଏହି ପୁତହସ୍ତେ ମୋର ଅଛି ମୃତ୍ୟୁ ଯୋଗ ।
ଏତେକ ବୋଲି ଦାନବ ଧାଇଁଲା ଗରଜ
ମେରୁ ବା ମନ୍ଦରଗିରି ପଡ଼ିଲା କି ଭାଜ ।
ଉଦୟଗିରି ଯେସନେ ଦିଶେ ରଙ୍ଗମୟ
ତେସନ ସଂଜାତ ସେହି ଅସୁରର କାୟ ।
ଯାଦବଙ୍କ ଉପରକୁ ପଡ଼ିଲାକ ମାଡ଼ି
ଦେଖିଣ ଯାଦବସୈନ୍ୟେ ପଳାଇଲେ ଘୁଡ଼ି ।
ଏସନ ସ୍ୱରୂପ ତାର ଦେଖେ କଂସାସୁର
ଦେଖୁଁ ଦେଖୁଁ ବିସ୍ତାରିଲା ଦୈତ୍ୟ କଳେବର
ଲହ ଲହ ଜିଭ କରେ ବିସ୍ତାରି ତା ତୁଣ୍ଡ
ଆକାଶ ମାର୍ଗରେ ଯାଇଁ ଲାଗିଲାକ ମୁଣ୍ଡ ।
ଦନ୍ତ ରଗଡ଼ି ଘୁଡ଼ଇ ମହା ଘୋରରଡ଼ି
ଆଷାଢ଼ମାସରେ ଯେହ୍ନେ ମେଘ ଘଡ଼ଘଡ଼ି ।
ଖାଙ୍କର କେଶ ତାହାର ବିକରାଳ ମୂର୍ତ୍ତି
ଊର୍ଦ୍ଧ୍ୱମ ଅନଳ ଜାଣି ନୟନର ଜ୍ୟୋତି ।
ଭୟଙ୍କର ମୂର୍ତ୍ତି ଧରି ମିଳିଲା କଂସ ଆଗ
ମହାଘୋର ଶବଦରେ କମ୍ପେ ଦଶଦିଗ
ଏସନ ସଂଜାତ ରୂପ ଦେଖି ଉଗ୍ରସେନ
ବଜ୍ର କଢ଼ୁଷ୍ଟ ନାରାଚ ଗୋଟା କରେ ଘେନ
ମନ୍ତ୍ର ଆଧାନ କରିଣ ପେଷିଲାକ ବାଣ
ଦାନବର କଣ୍ଠେ ଯାଇ ପଡ଼ିଲା ତକ୍ଷଣ ।
ବେକଠାରୁ ଛିଡ଼ି ଦୈତ୍ୟ ହେଲା ବେନିଖଣ୍ଡ
ପର୍ବତ ସମାନେ ତହିଁ ପଡ଼ିଲା ତା ପିଣ୍ଡ ।
ଦାନବ ନିହତ ଦେଖି ଯାଦବ ସଇନ୍ୟ
ଆନନ୍ଦେ ସର୍ବେ କଂସକୁ କଲେ ଧନ୍ୟଧନ୍ୟ
ଅଷ୍ଟମଲ୍ଲ ସହିତରେ ଯେତେ ସୈନ୍ୟ ଥିଲେ
ପରମ ଆନନ୍ଦ ହୋଇ ଜୟ ଜୟ କଲେ ।
ଯେତେବେଳେ ସେ ଦାନବ ଭୂମିରେ ପଡ଼ିଲା
ଜାଜ୍ଜ୍ୱଲ୍ୟମାନ ତା ତେଜ ସଂସାରେ ଦିଶିଲା ।
ଅଦ୍ଭୁତ ପୁରୁଷ ଏକ ହେଲା ତହୁଁ ଜାତ
ଅତ୍ୟନ୍ତ ସୁନ୍ଦର କାମଦେବର ସଂଜାତ ।
ପୁଷ୍ପରଥମାନେ ଆସେହ୍ନ ଗଲା ଶୂନ୍ୟମାର୍ଗେ
କଂସ ଦେଖନ୍ତେ ସେ ଯାଇଁ ବସିଲାକ ସ୍ୱର୍ଗେ
ଝଞ୍ଜାଳ କାହାଳ ବାଜେ ଅଧାବେଣୀ ପୁଣି
ଡରେ ଖଟିଲେ ଘୁମୁରେ ସ୍ୱର୍ଗ ବିଳାସିଣୀ ।

ପାଟଛତ୍ର ଗୁମର ଯେ କରେ ଧୂପକାଠି
ବିଦ୍ୟାଧର ଅଇଲେ ଯେ ନେବାକୁ ପାଖେଟି
ସେ ଦୈତ୍ୟ ହୃଦେ ଯେବଣ ପୁରୁଷେକ ଥିଲା
ଅଭିଶାପ ପାଇକରି ସ୍ୱର୍ଗକୁ ଚଳିଲା ।
ଜୟ ଜୟ ଜଗନ୍ନାଥ ଜଗତର ବନ୍ଧୁ
ଭକତଜନ ନିମନ୍ତେ କୃପାମୟ ସିନ୍ଧୁ ।
କରୁଣାସାଗର ହରି ବଇକୁଣ୍ଠବାସୀ
ଅଚ୍ୟୁତାନନ୍ଦ ମୁଁ ତବ ଦାସ ଅବା ନଶି ।

—:*:—

## ଦୁର୍ମିଳା ରାକ୍ଷସର ପୂର୍ବଜନ୍ମ ବୃତ୍ତାନ୍ତ ଓ ନହୁଷ ରାଜାର ଚରିତ

ଏ କଥା ଶୁଣି ପରୀକ୍ଷ ବିସ୍ମୟ ହୋଇଲା
ଶୁକମୁନି ଆଗେ ବସି ଏହା ପଚାରିଲା ।
ହେ ମୁନି ବଚିତ୍ର କଥା କହିଲ ମୋ ଆଗେ
ଅସୁର ଦେବ ବିମାନ ପାଇ କେଉଁ ମାର୍ଗେ ।
ପୂର୍ବ ଜନ୍ମେ କରିଥିଲା ସେ କେବଣ ଦୋଷ
କେବଣ କାରଣେ ଜାତ ହୋଇଲା ରାକ୍ଷସ ।
ଜାତ କଲା ପୁତ୍ର ସେହି ପିତାକୁ ମାରିଲା
ଏ କଥା ଶୁଣିଣ ମୋର ସନ୍ଦେହ ଲାଗିଲା ।
ଏଥିର ତତ୍ତ୍ୱ କହିବା ହେଉ ମହାମୁନି
ମନଭ୍ରାନ୍ତି ଫିଟିଯିବ ଶୁଣି ପୁଣ୍ୟଧ୍ୱନି ।
ଶୁକ ବୋଇଲେ ଭୋ ରାଜା ପଚାରିଲୁ ଯାହା
ସାବଧାନେ ଶୁଣ ତୁ ହୋ କହିବା ନା ତାହା
ଅନେକ କାଳର କଥା ପୁରାତନ ବାଣୀ
ବଶିଷ୍ଠ ଋଷିଙ୍କ ମୁଖୁଁ ଆମ୍ଭେ ଅଛୁ ଶୁଣି ।
ସୋମବଂଶୀ ରାଜା ପୁରୁରବା ଦଣ୍ଡଧାରୀ
ଉର୍ବଶୀ ନାମେ ଅପ୍ସରା ପତ୍ନୀ ତାହାଙ୍କରି ।
ସେ ଉର୍ବଶୀ ଗର୍ଭେ ଏକ ପୁତ୍ର ଅବତାରି
ସପତଦ୍ୱୀପରେ ସେହି ହେଲା ଦଣ୍ଡଧର ।
ପୁରୁରବାଙ୍କର ରାଜ୍ୟ ଅକଣ୍ଟକ ହେଲା
ଅତିବଳ ବୀର୍ଯ୍ୟବନ୍ତ ରଣେ ମହାବଳୀ ।
ତାହାଙ୍କର ନନ୍ଦନ ଯେ ନହୁଷ ନୃପତି
ତ୍ରୈଲୋକ୍ୟ ମଧ୍ୟରେ ସେ ହେଲା ଚକ୍ରବର୍ତ୍ତୀ ।
ବାସବକୁ ଜିଣି ସେହି ସ୍ୱର୍ଗେ ଇନ୍ଦ୍ର ହେଲା
ନହୁଷ ଇନ୍ଦ୍ର ବୋଲିଣ ସ୍ୱର୍ଗେ ବୋଲାଇଲା ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ଜିଣିଲେକ ରଣେ
ଦେବ ଦାନବ ଉପରେ ହେଲା ଏକଜଣେ ।
ରଥ ଗଜ ପଦାତିକ ସଙ୍ଗତେ ଯେ ଯୋଧୀ
ଚତୁରଙ୍ଗୀ ଖଟବଳ ଅଗାଧ ପୟୋଧି ।
ନବଦ୍ୱୀପ ସାତସିନ୍ଧୁ ମଧ୍ୟେ ଯେତେ ରାଜା
ସମସ୍ତେ ଆସି ତାହାର କଲେ ପାଦ ପୂଜା ।
ମେରୁ ଉତ୍ତରେ କମଳାଂକନନ ଯେ ବନ
ନହୁଷ ବାସ ନିକଟେ ସେହୁ ବିଦ୍ୟମାନ ।
ଶତଶତ ଯୋଜନ ସେ ଅଟେ ପାର୍ଶ୍ୱପ୍ରାନ୍ତ
ବେଢ଼ିଛି ଯେ କଂସ ତୋଳା ଗିରି ଚକ୍ରବନ୍ତ
କୁବେର ସମାନ ଧନବନ୍ତ ସେ ଅଟଇ
ଚତୁଷ୍ପାଦେ ଲକ୍ଷ୍ମୀ ଜାଣ ତାହାକୁ ଖଟଇ ।
କହନ୍ତେ ଯେ ନ ସରଇ ନହୁଷ ମହିମା
ଚତୁର୍ଦ୍ଦଶ ବ୍ରହ୍ମାଣ୍ଡରେ ଯାର ନାହିଁ ସୀମା ।
କେବଣଦିନେ ସେହି ନହୁଷ ନୃମଣି
ସ୍ୱର୍ଗପୁରକୁ ଚଳିଲା ସଦଣ୍ଡ ଘେନି ।
ଅନେକ ଯେ ରଥ ଗଜ ପଦାତି ଗହଳ
ସମାଙ୍ଗଣେ ବଜାଇଲା ଚତୁରଙ୍ଗ ବଳ ।
ଆଲମ୍ବ ବଳମ୍ବ ପାଟଛତ୍ର ଯେ ଉଦଣ୍ଡ
ସାରଥୀର ଶବଦରେ କମ୍ପଇ ବ୍ରହ୍ମାଣ୍ଡ ।
ଚତୁରଙ୍ଗ ବଳଶବ୍ଦେ କମ୍ପଇ ମେଦିନୀ
ନହୁଷ ବାହେ ସ୍ୱର୍ଗକୁ ଅଙ୍ଗବଳ ଘେନି ।
ଆକାଶକୁ ସମଦଣ୍ଡ ଦେଲେକ ଚଳାଇ
ସ୍ୱର୍ଗ ମଣ୍ଡଳେ ପ୍ରବେଶ ହେଲା ରାଜା ସାଇଁ ।
ଅକଳନ୍ତ ବଳ ତାର ନ ଯାଇ କଳଣା
ସହସ୍ରେ ଯୋଜନ ମାତ୍ର ଚାଲନ୍ତି ତା ସେନା ।
ନହୁଷ ଆସନ୍ତି ସ୍ୱର୍ଗଉପରେ ଧାଇଁଲେ
ଇନ୍ଦ୍ର ଦେବତା ସମ୍ଭ୍ରମରେ ଯାଇଁ ଜଣାଇଲା ।
ହେ ଦେବ ଅମରପତି ସାବଧାନେ ଶୁଣ
ଦେବାଉଳୁ ବାରତା ମୁଁ କହିବି ଏକ୍ଷଣ ।
ମର୍ତ୍ତ୍ୟମଣ୍ଡଳର ରାଜା ନହୁଷ ଗୋସାଇଁ
ସମଦଣ୍ଡ ଘେନି ସ୍ୱର୍ଗେ ଆସୁଛନ୍ତି ବାହି ।
ଏକ୍ଷଣି ସ୍ୱର୍ଗପୁର ପକାଇବ ଭାଙ୍ଗି
ଦିଗପାଳଙ୍କର ଦର୍ପ ପକାଇବ ଭଙ୍ଗି ।
ପ୍ରତାପୀ ତେଜେବନ୍ତ ସେ ନହୁଷ ନୃମଣି
ସମ୍ମୁଖ ସଂଗ୍ରାମେ ତାକୁ ପାରିବ କେ ଜିଣି ।

ପାଇଲେ ତୁ ରକ୍ଷା କର ତୋ ସ୍ୱର୍ଗ ମଣ୍ଡଳ
ନୋହିଲେ ପଳାଇଯିବା ସ୍ଥଳ ଆଖଣ୍ଡଳ ।
ଯଦ୍ୟପି ସଂଗ୍ରାମ ଆଜ କରିବୁ ତୁ ରହି
କୋଟିଇନ୍ଦ୍ର ହେଲେ ତାକୁ ଜିଣନ୍ତା କେ ନାହିଁ
ସକଳ ଦେବତା ଆଜ ଜିଣିବ ସେ ଧରି
ମର୍ତ୍ତ୍ୟକୁ ଖେଦିଣ ଯିବ ସ୍ୱର୍ଗ ଅପସରି ।
ଏଡ଼େ ବଡ଼ ଯଶ ସ୍ୱାମୀ ହେଲେ ଯିବ ନାଶ
ନୋହିଲେ ନହୁଷ ପାଦେ ଶରଣ ଯା ପଶ ।
ପାଗ୍ରେଟି ଯାଇଣ ତାକୁ ନମସ୍କାର କର
ବିଷ୍ଣୁଙ୍କ ପ୍ରାର୍ଥନା ପ୍ରାପ୍ତ କର ଯା ଆଦର ।
ଯେବେ ଏହା ନ କରିବ ଆହେ ଶଚୀବରେ
ଆଜଠାରୁ ଇନ୍ଦ୍ରପଦ ଯିବ ତୋର କ୍ଷୟେ ।
ତୁମ୍ଭେ ଅବା ବସ୍ତୁରିବ ମୁହିଁ ସ୍ୱର୍ଗେ ରଜା
ଦେବେନ୍ଦ୍ର ହୋଇ କେମନ୍ତେ କରିବ ତା ପୂଜା
ଆପଣା କାର୍ଯ୍ୟ ନିମନ୍ତେ ପରକୁ ଭଜନ
ଏଥେ କିଛୁ ଦୋଷ ନାହିଁ ଜାଣ ହେ ରାଜନ
ପାର୍ବତୀଙ୍କ ରମଣ ଯେ ଦେବ ତ୍ରିପୁରାରି
କାର୍ଯ୍ୟର ନିମନ୍ତେ ସେହି ହୋଇଲେ ଭିକାରୀ
କୋଟିଇନ୍ଦ୍ର ପଦକୁ ସେ ତୃଣ ପ୍ରାୟ ମଣି
ସ୍ନେହେ ଗଙ୍ଗାକୁ ବହିଲେ ଶିରପରେ ଆଣି
ଦାନବ ବଧ ନିମନ୍ତେ ନାରାୟଣ ସ୍ୱାମୀ
ମାଳତୀ କନ୍ୟା ହୋଇଲେ ପ୍ରଭୁ ଅନ୍ତର୍ଯ୍ୟାମୀ
ବେଦବ୍ରହ୍ମା ସୃଷ୍ଟି ଜୀବଜନ୍ତୁ ଜାତକଲେ
କାର୍ଯ୍ୟର ନିମନ୍ତେ ସେହି ଅପୂଜା ହୋଇଲେ
ମହାବ୍ରହ୍ମବେତ୍ତା ପୁଣି ବ୍ୟାସ ମହାଯତି
କାର୍ଯ୍ୟର ନିମନ୍ତେ ଭାଇବୋହୂ ସଙ୍ଗେ ପ୍ରୀତି
ଏକଥାମାନ ବିଚାର କର ଶଚୀସାଇଁ
ଭେଟିବା ସ୍ଥଳ ନହୁଷ ନୃପତିଙ୍କ ପାଇଁ ।
ଦେବଇନ୍ଦ୍ର କହିଲେ ମୁଁ କରିବ ଉପାୟ
ନାରାୟଣ ସ୍ୱାମୀଙ୍କ ମୁଁ ଏକା କରେ ଭୟ ।
ଯେତେବେଳେ ଇନ୍ଦ୍ର କଲେ କମଳାର ସାଇଁ
ଆପେ ଓଲଗିଲେ ମତେ ଶିରେ କରଦେଇ
ଏସନ ପୂଜା ମୁଁ ଘେନି ଅଛଇ ଯେ ପୂର୍ବେ
ମାନବକୁ ନମସ୍କାର କରିବି କି ଏବେ ।
ନାରାୟଣ ଜାଣିଲେ ମୁଁ ହେଲେ ଯିବ ନାଶ
ଦେବଙ୍କ ମଧ୍ୟେ ପାଇବ ସିନା ଉପହାସ ।

ଏମନ୍ତେ ବସୁଇନ୍ତେ ସେ ଦେବ ଆଖଣ୍ଡଳ
ନିକଟେ ଆସି ମିଳିଲା ନହୁଷ ଭୂପାଳ ।
ଆକାଶରେ ସୈନ୍ୟ ତାର ଆସୁଛନ୍ତି ବାହି
ଦେବତାମାନେ କାତର ହେଲେ ତାହା ଚାହିଁ
ପ୍ରଳୟକାଳେ ଯେସନ ଘୋଟେ ମହାଜଳ
ତେସନ ଆସି ଘୋଟିଲା ନହୁଷ ଭୂପାଳ ।
ବନ୍ଧ ଭାଙ୍ଗିଲେ ଯେସନେ ବଢ଼େ ନଦୀଜଳ
ତେସନ ପ୍ରକାର ସ୍ୱର୍ଗେ ନହୁଷର ବଳ ।
ପୃଥ୍ୱୀ ପୂରିଣ ଆସନ୍ତି ନହୁଷର ଥାଟ
ଦେଖି ଦେବତାଙ୍କ ମଧ୍ୟେ ପଡ଼ିଲା ସଙ୍କଟ
ସୁଧର୍ମା ସଭାରେ ଥିଲେ ସମସ୍ତେ ଯେ ବସି
ଗୋଟି ଗୋଟି ହୋଇ ସର୍ବେ ପଳାଇଲେ ଖସି
ଦିଗପାଳ ଆଦି ଯେତେ ଗନ୍ଧର୍ବ ଦେବତା
ଇନ୍ଦ୍ର ଆଦି ଦେବତାଙ୍କୁ ଲାଗିଲାକ ଚିନ୍ତା ।
ଧିକାରେ ଯେ ଯାହାର ବାହନ ଆରୋହି
କପିଳାସ କନ୍ଦରେ ସେ ଲୁଚିଲେକ ଯାଇ ।
ଏକାଳେ ଇନ୍ଦ୍ର ଦେବତା ରହିଲେ ଆରମ୍ଭେ
ସୁଧର୍ମା ସଭାରେ ସେହି ବସିଛନ୍ତି ଦମ୍ଭେ ।
ବୃହସ୍ପତି ଆଦି ପାଖେ ନ ରହିଲେ କେହି
ଭୟକଲେ ଦେବତାଏ ନହୁଷକୁ ଚାହିଁ ।
ଇନ୍ଦ୍ର ବୋଇଲେକ ଆମ୍ଭେ ମନ୍ଦକୃତ୍ୟ କଲୁ
ସର୍ବେ ପଳାଇଲେ କିମ୍ବା ଏକାକେ ରହିଲୁ ।
ଯଦ୍ୟପି ସଂଗ୍ରାମେ ହାନ ଆରମ୍ଭିବ ମୁହିଁ
ସମ୍ଭାଳ ନେବାକୁ ମୋତେ ଜଣେ କେହି ନାହିଁ
ସଂଗ୍ରାମ ନ କରି ଯେବେ ସନ୍ଧି ମୁଁ କରିବ
ନମସ୍କାର ନ କଲେ ତ ନିଶ୍ଚେ ନାଶ ଯିବ ।
ଏତେ ଭାଳି ଐରାବତ ପିଠିରେ ଆରୋହି
ନନ୍ଦନବନ ଭିତରେ ଲୁଚିଲେକ ଯାଇଁ ।
ତିନିସହସ୍ର ଯୋଜନ ସେହି ବନଗୋଟି
ଉଦେଗିରି ଠାରୁ ମେରୁ ଶିରଯାଏ ଘୋଟି ।
ଉତ୍ତରେ ଯେ ତଉରଶି ଧାରି ଗଙ୍ଗାହୋଇ
ତୋଟା ଚଉପାଶେ ବେଢ଼ି ଆସୁଅଛି ବହି ।
ସେ ତୋଟା ମଧ୍ୟରେ ଅଛି ବସନ୍ତ ନଗର
ଗୁପତେ ରହିଲେ ତହିଁ ଯାଇ ପୁରନ୍ଦର ।
ଏସନ ଚରିତ କେହି ନ ଜାଣନ୍ତି ଆନ
ଏକା ଜାଣଇ ଗନ୍ଧର୍ବରାଜ ବିଶ୍ୱପର୍ଣ୍ଣ ।

ସେ ଗନ୍ଧର୍ବ ଅଟଇ ସେ ତୋହର ଜଗୁଆଳ
ଗୁପତେ ଯାଇଁ ରହିଲେ ତହିଁ ଆଖଣ୍ଡଳ ।
ଇନ୍ଦ୍ର ବୋଲେ ଋଭୁପର୍ଣ୍ଣ ତୁ ମୋର ବିଶ୍ବାସ
ଗୁପତ କଥାଏ ମୁଁ ଯେ କହିବି ତୋ ପାଶ
ନହୁଷ ନୃପତି ଆସେ ସ୍ୱର୍ଗପୁର ବାଞ୍ଛି
ଦେବତା ଗୋଟିଏ ସ୍ୱର୍ଗେ ନାହାନ୍ତି ତ କେହି
ଆମ୍ଭଙ୍କୁ ଛାଡ଼ି ପଳାଇଗଲେ ଦେବଗଣେ
ଆମ୍ଭେ ଯେ ଏକା ହୋଇଣ ରହିଲୁ ଆସ୍ଥାନେ
ଆମ୍ଭର ସୈନ୍ୟ ନୁହନ୍ତି ତାକୁ ସାମରଥ
ସେଥିପାଇଁ ଲୁଚିବାକୁ ଅଇଲୁଁ ଯେ ଏଥ ।
ଏ ଶରୀରେ ଯେତେବେଳଯାକେ ପ୍ରାଣ ଥିବ
ଦେହ ଧରି କେମନ୍ତେ ଏ ପୁର ମୁଁ ଛାଡ଼ିବ ।
ଯେ ଯେତେ ଯାହା ଚାହଇ ପାଇ ପିନ୍ଧା ତାହା
ଏମନ୍ତ ସୁନ୍ଦର ପୁର ନ ଛାଡ଼ିବ ଏହା ।
ଅଙ୍ଗ ଭୋଗ କରିବାକୁ ଖୋଜଇ ଯେ ଦ୍ରବ୍ୟ
ଅଗୁରୁ ଚନ୍ଦନ ଆଦି ଅଛଇତ ସର୍ବ ।
ଏତେକ କହି ତହିଁରେ ଲୁଚିଲେକ ଇନ୍ଦ୍ର
ଯାଇ ସ୍ୱର୍ଗେ ବିଜେ କଲା ନହୁଷ ନରେନ୍ଦ୍ର
ବୋଇଲା ହକାରି ଆଣ ଇନ୍ଦ୍ର କରୁ ପୂଜା
ନୋହିଲେ ଯେ ସ୍ୱର୍ଗେ ଆମ୍ଭେ ହୋଇଲୁଁ ଟି ରଜା,
ଏତେ ବୋଲି ବସିଲା ସେ ସିଂହାସନ ମାଡ଼ି
ବୋଇଲେ ସ୍ୱର୍ଗପୁର ନ ଯାଇ ଆଉ ଛାଡ଼ି ।
ନ ଥାଉ ସ୍ୱର୍ଗରେ ଇନ୍ଦ୍ର ବାହାରିଣ ଯାଉ
ନୋହିଲେ ଗୃହାସ୍ଥ କରି କାହା ଆଗେ ଥାଉ ।
ଅଥବା ସଂଗ୍ରାମେ ମୋତେ ପାରିବେକ ଜିଣି
ନୋହିଲେ ଦେବତା ଯେଣେ ଗଲେ ଏବେ ଶୁଣି ।
ଆଉର ଦେବତା ଯେବେ କରିବେ ବିଖଣ୍ଡ
ଯମ କୁବେର ହେଲେହେଁ ଛେଦିବି ତା ମୁଣ୍ଡ
ଦେବତା ଆଦି ଅଛନ୍ତି ଯେତେ ସୁରମୁନି
ନିଶ୍ଚିନ୍ତେ ଥାନ୍ତୁ ସେମାନେ ଯେଝା ପଦ ଘେନି
ଯେବଣ ଦେବତା ମୋତେ କରିବେକ ଦ୍ୱେଷ
ପଦ ଛଡ଼ାଇ ତାହାକୁ କରିବି ବିନାଶ ।
ଏକମାତ୍ର ଏ ସ୍ୱର୍ଗେ ନ ଥାଉ ଇନ୍ଦ୍ରବିଶ୍ୱେ
ଆଉର ଦେବଙ୍କୁ କହ ନ କରନ୍ତୁ ଭୟେ ।
ଏତେବୋଲି ଅଭିଷେକ ହେଲା ଶୁଭବେଳେ
ନହୁଷ ଇନ୍ଦ୍ର ବୋଲି ଯେ କହନ୍ତି ସକଳେ ।

ଇନ୍ଦ୍ର ସମାନ କରଇ କର୍ମ ଯଥାବିଧି
ସଚରାଚର ପାଳଇ ଆପେ ହୋଇ ଯୋଧୀ ।
ଦିଗପାଳଙ୍କୁ ଲୋଡ଼ିଲା ଦେଖା କେହି ନାହିଁ
ଅମର ସିଂହାସନେ ସେ ବସେ ଏକା ହୋଇ
ପୁରେ ପୁରେ ପଶି ଖୋଜି ନ ପାଇଲା କାହିଁ
ଖୋଜୁ ଖୋଜୁ ସେ ଅନଙ୍ଗ ପନ୍ନଗ ଦେଖଇ
ଶାସ୍ତ୍ରୀମାନ ଦେଲା ତାକୁ ଗଉରବ କରି
ସ୍ୱର୍ଗ ରକ୍ଷା ପଦ ତାକୁ ଦେଲା ଦଣ୍ଡଧାରୀ ।
ସକଳ ଦେବତାଙ୍କର ଅଛି ଯେଝା ବିଧି
ଇନ୍ଦ୍ରପଦେ ବସିବାର ଅଛି ଯେଉଁ ସିଦ୍ଧି ।
ଦେବ ଭଣ୍ଡାର ସ୍ୱର୍ଗର ନିଧି ଆଦି କର୍ମ
ନହୁଷ ଆଗେ କହିଲା ଅନଙ୍ଗ ସେ ମର୍ମ ।
ଯକ୍ଷ ଗନ୍ଧର୍ବଗଣଙ୍କ ସେବାର ଯେ କଥା
ଭୂର୍ଲୋକ ଭୁବର୍ଲୋକର ସ୍ୱର୍ଗ ମାର୍ଗ ଯଥା ।
ଅମର ବାରସ୍ଥଳରେ ଯେତେ କଥାମାନ
ସବୁ କହିଲା ଗନ୍ଧର୍ବ ସେ ପନ୍ନଗାସନ ।
ଶୁଣିଣ ନହୁଷ ରଜା ହୋଇଣ ସନ୍ତୋଷ
ବୋଇଲା ମୋ ଇନ୍ଦ୍ରପଦ ହୋଇଲା ଅବଶ୍ୟ
ଏଥୁ ଅନନ୍ତରେ ପୁଣି କେତେଦିନ ଗଲା
ଶଚୀ ପୁରକୁ ନହୁଷ ଇନ୍ଦ୍ର ବିଜେ କଲା ।
ପଲଙ୍କରେ ଅନ୍ତଃପୁରେ ପ୍ରବେଶିଲା ଯାଇଁ
ଆଜ୍ଞାଦେଲେ ଶଚୀ ଆସୁ ସଜବାଜ ହୋଇ ।
ଚଳିଗଲେ ମୃଦୁସ୍ମୃତି ତାର ଆଜ୍ଞା ପାଇ
ଏକାନ୍ତ ପୁରୁଁ ଆଣିଲେ ଶଚୀକି ଡକାଇ ।
ଶଚୀକି ଦେଖି ନହୁଷ ହୋଇଲେ ହରଷ
ବୋଇଲେ ମୋ ଅଙ୍କେ ସଖି କହନ ତୁ ବସ
ଶଚୀ ବୋଲନ୍ତି ହୋଇଛି ମୁହିଁ ପୁଷ୍ପବତୀ
ଏଥକୁ ଆଉତ କ୍ଷମା ହେଉ ସୁରପତି ।
ଆଉର ପାଞ୍ଚଦିବସ ସ୍ଥିର ହୋଇ ରହ
ଶୁଦ୍ଧସ୍ନାନ କଲେ ନାଥ ଛୁଇଁବ ମୋ ଦେହ
ହୃଦେ ଥିବା ପଦାର୍ଥକୁ ଯେତେବେଳେ ଭୁଞ୍ଜି
ତୁମ୍ଭେ ମୋର ମୁଁ ତୁମ୍ଭର ଧାତାଲେଖା ପାଞ୍ଜି
ଆଜ୍ଞାଭ୍ରଷ୍ଟ ହେଲେ କୋପ କରିବ ପାଞ୍ଚିଲି
ତେଣୁକରି ଡରେ ମୁହିଁ ତୁମ୍ଭକୁ ଅଇଲି ।
ଶୁଣିଣ ନହୁଷ ଇନ୍ଦ୍ର ସନ୍ତୋଷ ହୋଇଲେ
ବୋଇଲେଯେ ଅନ୍ତପୁରେ ବିଜେକରିଗଲେ ।

ଏଥୁଅନ୍ତେ ମନେ ପାଞ୍ଚି ଶଚୀ ମହାସତୀ
ମହା ନିଶାରେ ଗଲେ ସେ ବାସବର ଜତ ।
ବସନ୍ତ କେଳି ନବରେ ଇନ୍ଦ୍ର ଅଛି ଲୁଚି
ଅନ୍ତଃପୁର ହୋଇ ଯାଇଁ ପ୍ରବେଶିଲେ ଶଚୀ ।
କେଶବାସ ଅସମ୍ଭାଳ ନେତ୍ରୁ ବହେ ବାରି
ଉଚସ୍ୱରେ ରୋଦନ୍ତି ସେ ଇନ୍ଦ୍ର ମନୋହାରୀ ।
ଶଚୀ ଦେଖି ଆଚମ୍ବିତ ହେଲେ ସୁରପତି
ଇନ୍ଦ୍ର ବୋଇଲେ କକାର୍ଯେଁ ଅଇଲ୍ରୋ ସତୀ
ପ୍ରାଣରକ୍ଷକଲେ ଆମ୍ଭେ ଲୁଚିଅଛୁ ଡରେ
ତୁହେଁ ନାଶଯିବା ଜ ଗୋ ପଡ଼ିଲେ ଗ୍ରାମରେ
ଶଚୀ ବୋଇଲେ ତୁମ୍ଭେ ନଷ୍ଟିନ୍ତେ ଚଉଦ
ନହୁଷ ଇନ୍ଦ୍ରକୁ ମୋତେ ବଳସାଇ ଦେଲ ।
ଅବଶ୍ୟ ବଳେ ସେ ଧରି କରିବ ଅମାନ୍ତ
କେବଣ ଉପାୟ ଅଛି କୁହ ସୁରପତି ।
ବାସବ ବୋଇଲେ ମୁହିଁ ତୁମ୍ଭଠାରୁ ଦୁଃଖୀ
ମୋହର ବଳେ କ ସତୀ ପାରଇ ମୁଁ ରଖି ।
ତୁମ୍ଭ ବୁଦ୍ଧି ବଳେ ତୁମ୍ଭେ ରଖ ତୁମ୍ଭ ଦେହ
ରାଜା ବଳାତ୍କାର କଲେ ରଖିବ କେ ସତ୍ୟ ।
ବିଷ୍ଣୁଙ୍କ ଗ୍ରାମରେ ଯେବେ ଯାଇବ ଜଣାଇ
ତାଙ୍କ ବିନୁ ମୋତେ ଅନ୍ୟଗତି ଦିଶୁନାହିଁ ।
ବାସବ କହନ୍ତେ ଶଚୀ ବେଗେ ଚଳିଗଲେ
ନାରାୟଣଙ୍କ ଗ୍ରାମରେ ପ୍ରବେଶ ହୋଇଲେ ।
ପ୍ରଳୟ ବଟ ପତ୍ରରେ ସେ ଉତ୍ସନଶାୟୀ
ଯୋଗନିଦ୍ରା ଯାଇଛନ୍ତି ତ୍ରୈଲୋକ୍ୟଗୋସାଇଁ
ସନ୍ନିଧିରେ ସରସ୍ୱତୀ ଗାନ୍ଧାର ରାଗରେ
ବୀଣାଯନ୍ତ୍ର ଧରି ଗୀତ ଗାବନ୍ତି ସୁସ୍ୱରେ ।
ଦେଖିଲେ କମଳା ପାଦ ମର୍ଦ୍ଦାଳନ୍ତି ବସି
ଯୋଗନିଦ୍ରାରେ ଅଚେଷ୍ଟ ପ୍ରଭୁ ବ୍ରହ୍ମରାଶି ।
ଶଙ୍ଖ ଚକ୍ର ଗଦା ପଦ୍ମ ଶୋହେ ଚତୁର୍ଭୁଜ
ବିରାଜନ୍ତି ମିଳୋତ୍ପଳ ପ୍ରାୟ ଦେବରାଜ ।
ନବରତ୍ନ କୁଣ୍ଡଳ ଶୋଭା ବେଣିକଣ୍ଠେ
ହେମରତ୍ନ ମାଳା ଲମ୍ବି ଅଛି ହୃଦସ୍ଥାନେ ।
ଅନନ୍ତ ସହସ୍ରଫଣା ଛତ୍ରାକାର ହୋଇ
ଅଷ୍ଟାଙ୍ଗ ଯୋଗନିଦ୍ରାରେ ସ୍ୱାମୀ ଛନ୍ତି ରହି ।
ଏମନ୍ତ ବେଳେ ଭେଟିଲେ ଶଚୀ ମହାମାୟୀ
କରଯୋଡ଼ି ସ୍ତୁତି କଲେ ପାଦପଦ୍ମ ଚୁମ୍ବି ।

ଜୟ ତୁ ନିରଞ୍ଜନ ହେ ଯୋଗେଶ ଦେବତା
ଜୟ ତୁ ଯୋଗେଶ୍ୱର ହେ ସର୍ବ ଜନ ପିତା
ଜୟ ଯୋଗେଶ୍ୱର ବଟପତ୍ରେ ଶୋଇ ସ୍ୱାମି
ଜୟ ତୁ ଯୋଗେଶ୍ୱର ହେ ଅଟୁ ଅନ୍ତର୍ଯାମୀ
ଜୟ ତୁ ଯୋଗେଶ୍ୱର ହେ ଦେବ ନାରାୟଣ
ଜୟ ତୁ ଯୋଗେଶ୍ୱର ହେ କରଣ କାରଣ
ଜଗତର ଭାରାଭର ନିବାରଣ ଅର୍ଥେ
ଆପେ ନାନା ଅବତାର ହୁଅ ଶୂନ୍ୟ ପଥେ ।
ବେଳେ ବେଳେ ପୃଥ୍ୱୀ ତୁମ୍ଭେ ଉଦ୍ଧାରଣଧର
ସଂସାର ପାଳନ ଅର୍ଥେ ନାନାରୂପ ତୋର ।
ଆରତ ଜନମାନଙ୍କୁ ହୁଅ ତୁମ୍ଭେ ସହା
ତୁମ୍ଭେ ନ ରଖିଲେ ମୋର କେହିନାହିଁ ନାହା
ଅନାଥର ନାଥ ପ୍ରଭୁ ଦୟା ମୋତେ କର
ସଙ୍କଟ ପଡ଼ିଲି ସ୍ୱାମୀ ଉଦ୍ଧରଣ ଧର ।
ସ୍ୱାମୀ ସକଳ ଜୀବର ଅଟ ତୁମ୍ଭେ ସାକ୍ଷୀ
ଆଶ୍ରିତ କଳ୍ପତରୁ ବୋଲି ବେଦ ଲେଖି ।
ଜୟ ଜୟ ନାରାୟଣ ଆଦିକଳ୍ପ ଦେହ
ତୁମ୍ଭେ ନ ରଖିଲେ ପ୍ରଭୁ ରଖନ୍ତାକେ ନାହିଁ ।
ତୁମ୍ଭର ମହିମା ବେଦ ଅଗୋଚର ମୋତେ
ହିଂସା ମୁଁ ପ୍ରାଣ ହାରିବି ହତ୍ୟା ଲାଗୁ ତୋତେ
ଜଳ ସ୍ଥଳ ଅନଳ ଏ ପ୍ରଭୁ ତୁମ୍ଭ ମାୟା
ଜନ୍ମମରଣ ବାଧା ନ ଲାଗେ ତୁମ୍ଭ କାୟା ।
ଅଚ୍ୟୁତ ଦାସ ଶରଣ ମାଗେ ଲକ୍ଷ୍ମୀ ନାହା
ସଙ୍କଟ ପଡ଼ିଲି ନାଥ ରଖ ଚକ୍ରବାହା ।
ଏମନ୍ତେ ଅନେକ ସ୍ତୁତି କଲେକ ଇନ୍ଦ୍ରାଣୀ
ପରମ ଆନନ୍ଦ ହେଲେ ନିସ୍ତକାର ଶୁଣି ।
ନାରାୟଣ କହନ୍ତି ତୋ ଚିନ୍ତା କାହିଁ ପାଇଁ
କ ଅବା ବିପତ୍ତି ତୋତେ ପଡ଼ିଲା ତୋ ଚହିଁ
ସୁରପତିବଲ୍ଲଭି ତୁ ଅଟୁ ଆଦ୍ୟ ପାଟ
ଦେବକନ୍ୟାଙ୍କ ଭିତରେ ଅଟ ତୁମ୍ଭେ ଶ୍ରେଷ୍ଠ ।
କାହିଁବ ତୁମ୍ଭର ପତି ସ୍ୱର୍ଗପୁର ରାଜ୍ୟେ
ତ୍ରୈଲୋକ୍ୟ ମଧ୍ୟେ ତୁମ୍ଭର କାହାକୁଗୋଭୟେ
ଶଚୀ ବୋଇଲେ ହେ ଶୁଣ ପ୍ରଭୁ ନାରାୟଣ
ତୁମ୍ଭେ ଠାକୁର ଥାଉଁ ମୁଁ ହେଲି ଅକାରଣ ।
ନହୁଷ ନାମେ ମର୍ତ୍ତ୍ୟରେ ଏକଇ ନୃପତି
ସେ ଆସି ସ୍ୱର୍ଗରେ ବଳେ ହୋଇ ସୁରପତି ।

ବଳେ ସେ ସୁଧର୍ମାସଭା ବସିଲେକ ମାଡ଼
ଭୟରେ ଦେବବୃନ୍ଦ ସ୍ୱର୍ଗ ପଳାଇଲେ ଛାଡ଼ି ।
ମତେ ଆବୋରି ସ୍ୱର୍ଗ ସମ୍ପଦ ଉପେକ୍ଷି
ନନ୍ଦନବନ ମଧ୍ୟରେ ସ୍ୱାମୀ ଲୁଚି ଅଛି ।
ମାରେଖ ହୋଇଲ ଦେବ କେହିନାହିଁ ଶାଖା
ଅନ୍ତଃପୁର ମଧ୍ୟେ ମୁହିଁ ଥିଲି ପ୍ରଭୁ ଏକା ।
ନହୁଷ ନୃପତି ମୋତେ ନେଉଥିଲା ବଳେ
ଧର୍ମ କଷଣ ପଡ଼ିଲା ମୋତେ ଏତେ କାଳେ ।
କେଉଣ ପ୍ରକାରେ କୁଳେ ନ ପାଇବି ଲଜ୍ଜା
ବିସ୍ତାରିଣ ଆଜ୍ଞା ମୋତେ ଦେବା ଦେବରାଜା ।
ନହୁଷକୁ ଦେଇଲ କି ତୁମ୍ଭେ ଇନ୍ଦ୍ରପଦ
ତୁମ୍ଭ ଇଚ୍ଛା ଅଛି କିବା କହ ମୋତେ ସିଦ୍ଧ ।
ଶଚୀଦେବୀର ମୁଖରୁ ଏମନ୍ତ ଶୁଣି
କୋପଭର ହୋଇଲେ ସେ ଦେବ ଚକ୍ରପାଣି
ନାରାୟଣ ବୋଇଲେ ତୁ ଶୁଣ ଗୋ ଯୁବତୀ
ଯେତେବେଳେ ସେ ନହୁଷ ଆସିବ ତୋ ଭିତି
ବୋଲିବୁ ତାହାକୁ ସ୍ୱର୍ଗେ ଇନ୍ଦ୍ର ଯେ ହୁଅନ୍ତି
ସପତ ଋଷି ତାହାର ହାନ୍ଦୋଳ ବହନ୍ତି ।
ତୁମ୍ଭେ ଯେବେ ସ୍ୱର୍ଗେ ଇନ୍ଦ୍ର ହୋଇବ ନହୁଷ
ସପତ ଋଷିଙ୍କି ଘେନି ଏଠାବକୁ ଆସ ।
ତୋହର ହାନ୍ଦୋଳା ତାଙ୍କ କାନ୍ଧେ ବୁହାଇବୁ
ତେବେ ସ୍ୱର୍ଗେ ମୋତେଘେନିଇନ୍ଦ୍ରତୁ ହୋଇବୁ
ଏମନ୍ତ କଥା କହିଲେ ଯହୁଁ ଲକ୍ଷ୍ମୀପତି
ବାହୁଡ଼ି ସ୍ୱର୍ଗକୁ ଆସେ ଶଚୀ ମହାସତୀ ।
ଏମନ୍ତେ ସେ ସାତଦିନ ସମ୍ପୂର୍ଣ୍ଣ ହୋଇଲା
ଶୁଦ୍ଧସ୍ନାନ କରି ଶଚୀ ପୁରକୁ ସେ ଗଲା ।
ନହୁଷ ଇନ୍ଦ୍ରକୁ ଦେଖି ବୋଇଲେକ ସତୀ
ଇନ୍ଦ୍ରର ଯେତେ ବିଧି ନ ଜାଣ ସୁରପତି ।
ଆବର ସ୍ୱର୍ଗରେ ଯେବେ ଇନ୍ଦ୍ରରାଜା ହେବ
ଚହିଁରେ ସେ ବିଧି ତୁମ୍ଭେ ସମାନ କରିବ ।
ପଶ୍ଚାରେ ଭଜନ କରିବ ତୁମ୍ଭେ କମ୍ପା ଏକା
ପୂର୍ବବିଧି କଲେ ହେବି ତୁମ୍ଭର ନାୟିକା ।
ଦେବଗୁରୁ ବୃହସ୍ପତି ତୁମ୍ଭ ସଙ୍ଗେ ଥିବେ
ସେ ବିଧି ଯେଉଁଠାରେ ତା ପ୍ରବର୍ତ୍ତାଇଦେବେ
ମର୍ତ୍ତ୍ୟର ରାଜା ତୁମ୍ଭେ ନ ଜାଣ ସ୍ୱର୍ଗ ଭୋଗ
ଏହା ନ ଜାଣି ଅଇଲ କମ୍ପା ଏତେ ବେଗ ।
ଶଚୀର ବଚନ ଶୁଣି ନହୁଷ ହୋଇଲା
ଇନ୍ଦ୍ରପଦ ବିଧି ମୋତେ କେହି ନ କହିଲା ।
କେଉଣ ବିଧିରେ କହ ସେ ଇନ୍ଦ୍ର ଆସଇ
ସେକଥା ମହାସତୀ ଗୋ କହିବୁ ମଣାଇ ।
ଶଚୀ ବୋଲେ ଇନ୍ଦ୍ର ବିଧି ଶୁଣ ହୋ ନୃପତି
ଯେମନ୍ତହୋଇ ପୁରକୁ ଆସେ ସୁରପତି ।
ରବି ଅସ୍ତକାଳେ କେହି ନ ଥିବେ ସେ ଏକା
ସପତ ଋଷି ବିମାନ ବହିବେ ଜଣାଖା ।
ଭରଦ୍ୱାଜ ଗଉତମ ଅଙ୍ଗିରା ଅଗସ୍ତି
ସନକ ଯେ ସନାତନ ଭୃଗୁ ଏ ବହନ୍ତି ।
ଏ ସପ୍ତଋଷିଙ୍କ କାନ୍ଧେ ତୋ ହାନ୍ଦୋଳ ଥିବ
ସେ ହାନ୍ଦୋଳା ଚଢ଼ି ମୋର ପୁରକୁ ଆସିବ
ଏମନ୍ତ ବିଧିରେ ତୁମ୍ଭେ ଆସ ମୋର ଘର
ଲଭିବ ମୋତେ ଯେ କଲେ ଇନ୍ଦ୍ରର ବେଭାର
ଶୁଣିଣ ନହୁଷ ଇନ୍ଦ୍ର ସନ୍ତୋଷ ହୋଇଲେ
ଦୂତ ପଠାଇ ସପତ ଋଷି ଅଣାଇଲେ ।
ଶାନ୍ତି ପ୍ରସାଦ ଦେଇଣ କହିଲେ ସୁତଭେ
ହାନ୍ଦୋଳାରେ ବହିନେବ ଶଚୀପୁରେ ମୋତେ
ଅବଧ୍ୟବେଶ ହୋଇ ମୁହିଁ ବସିବି ବିମାନେ
ମୁଖେ ବେଦପଢି କାନ୍ଧେ କହିବ ସୁମନେ ।
ତେବେ ଜାଣ ଇନ୍ଦ୍ରପଦ ହେବ ମୋର ସିଦ୍ଧି
ଶଚୀ ବୋଇଲେ ଏରୂପେ ଇନ୍ଦ୍ରଙ୍କର ବିଧି ।
ନହୁଷ କହିଲେ ଯହୁଁ ଏମନ୍ତ ବାଣୀ
ଆମ୍ଭ ବିସର୍ଜିଲେ ଶୁଣି ସେ ସପ୍ତ ମୁନି ।
ବୋଇଲେ ନହୁଷ ଇନ୍ଦ୍ର ହୋଇ ମନ୍ଦକଲ
ଋଷିଏ ଦୋଳା ବହିବେ ଏହା ବିସ୍ତାରିଲ ।
ସମ୍ପଦରେ ମତ୍ତହୋଇ କଲ ଏ ବିଚାର
ଋଷି ବୋଳାବୁହାଇବା କଥା ଅବେଭାର ।
ଦେଖ ଦେଖ ଶିରଗ୍ରତ ଲକ୍ଷ୍ମୀ ଯେ ତୁମ୍ଭର
ଏ ମନ୍ଦ ବିଚାର କମ୍ପା କଲ ନୃପବର ।
ଅମାନ୍ତ କଥା ଆମ୍ଭର କହିବା ବିମାନ
ଆମ୍ଭେ କେମନ୍ତେ ଜାଣିବୁ କହିବା ବିଧାନ ।
ଅନୁଭବ ନାହିଁ ଆମ୍ଭେ ଧର୍ମକୁ ଜାଣିମା
ନହୁଷ ବୋଇଲା ଉଠ ଋଷି ମହାତମା ।
ହାନ୍ଦୋଳା ବହହୋ କାନ୍ଧେ ବେଗେ ଯିବା ଚାଲ
ଉତ୍ତର ହୋଇଲେ ଗଡ଼ିଯିବ ଯୋଗ ବେଳ ।

ଏହା କହିଣ ନହୁଷ ଆରୋହି ବିମାନ
ଆଜ୍ଞା ଦେଲା ମୁନିମାନେ ଉଠି ବେଗେ ଘେନ
ଡରେ ସେ ସପତ ଋଷି ହାନ୍ଦୋଳା ବହିଲେ
କେହି ଧୀରେ ୨ କେହି ବେଗେ ୨ ଗଲେ ।
ଯୁଗତେ ସେ ତପସ୍ୱୀ ପୁଣି ସ୍ୱାନବଳ
କେବଳ ଆହାର କନ୍ଦମୂଳ ବୃକ୍ଷଫଳ ।
କୋମଳ ପତ୍ର ଭକ୍ଷିଣ ଉପାସ କରନ୍ତି
ବନଗହଳ ଫଳ ସେ ଯେ ଚପୁଡ଼ି ପିଅନ୍ତି ।
ପାଣି ଗଣ୍ଡୂଷେ ଭକ୍ଷନ୍ତି କରି ଉପବାସ
ଏମନ୍ତ ନିଷ୍ଠାପରି ଯେ ବଳ ଶାର୍ଯ୍ୟ ନାସ ।
ବିମାନ ଜାନ୍ଧେ ମୁଖରୁ ରୁଧିର ଉଦ୍‌ଗାରି
ମୂର୍ଚ୍ଛାଗତ ହେଲେ ମୁଖୁ ବଚନ ନ ସ୍ଫୁରି ।
କେବଣ ଋଷି ବିକଳେ ପଡ଼ି ବେଗେ ଉଠି
ପଡ଼ି ଉଠିବାରୁ ଛିଡ଼ଯାଏ ଆଣ୍ଠୁ ଗଣ୍ଠି ।
ଚାଲି ନ ପାରଇ ଋଷି ପନ୍ଥରେ ରହିଲେ
ଧର୍ମ ସୁମରି ଧାତାଙ୍କୁ କେହି ସାକ୍ଷୀ ଦେଲେ ।
ଶରୀରୁ ଯେ ଶ୍ରମଝାଳ ବହେ ଘନ ଘନ
ଉଠି ପଡ଼ି ହୁଅନ୍ତି କେ ଋଷି ଅଚେତନ ।
ଏ ଗତି ଦେଖି ନହୁଷ କୋପଭର ହେଲା
ଭର୍ତ୍ସନା କରି ବହୁତ ରୂପେ ଗାଳିଦେଲା ।
ମିଛେ ଉଠି ବସି ପୁଣି ହେଉଅଛ ଗେଲ
ବ୍ୟଥା ପାଉଅଛ ଯେବେ ଧୀରେ ଧୀରେ ଚାଲ
ମୁନିମାନେ ବୋଇଲେ ତୁ ମୂଢ଼ ମନ୍ଦମତି
ମହାପାପ ଅର୍ଜିଲୁଣି ଲଭିବୁ ଦୁର୍ଗତି ।
ଶଚୀଙ୍କ ଜାନ୍ଧେ ହାନ୍ଦୋଳ ଗୋଟା ବୁହାଇଲୁ
ଏହିକ୍ଷଣି ନାଶ ଯିବୁ କଥା ରୁହାଇଲୁ ।
ମଞ୍ଚର ମାନବ ତୁହି ସ୍ୱର୍ଗ ଇନ୍ଦ୍ର ରାଜା
ଶୃଗାଳ ହୋଇ ଭୁଞ୍ଜୁ ତୁ ସିଂହ ବଳ ଖେଳା
ବଳବନ୍ତ ପଣେ ସ୍ୱର୍ଗ ବସିଲୁଟି ମାଡ଼ି
ତୋର ଦର୍ପେ ଦେବତାଏ ଗଲେ ସ୍ୱର୍ଗଛାଡ଼ି ।
ଆମ୍ଭଙ୍କୁ ବୋଳା ବୁହାଉ ତୋର ଏଡ଼େ ଦର୍ପ
ସର୍ପ ସର୍ପ ବୋଲି ବୋଲୁ ଘେନ ଆମ୍ଭ ଶାପ
ଆମ୍ଭଙ୍କୁ ଦୁଃଖ ଦେଲୁ ତୁ ହୁଅ କାଳସର୍ପ ।
ପବନ ଆହାରୀ ହୁଅ ଭାଜ ତୋର ଦର୍ପ ।
ତୋହର ସଙ୍ଗେ ସ୍ୱର୍ଗକୁ ଅଛନ୍ତି ଯେ ଆସି
ସର୍ପ ଦେହ ପାଆନ୍ତୁ ସେ ସମସ୍ତେତ ଦୋଷୀ

ଏସନକ ଶାପ ଯହୁଁ ଦେଲେ ସପ୍ତଋଷି
ଦେଖୁ ଦେଖୁ ସେ ନହୁଷ ସର୍ପ ହୋଇ ଖସି
ମୁନିଶାପ ବଶନ୍ତେ ସେ ସ୍ୱର୍ଗ ଛାଡ଼ିଗଲା ।
ମଞ୍ଚେ ସୈନ୍ଦ୍ରେସ୍ପୁ ପର୍ବତେ ଯାଇଁ ବାସକଲା ।
ପର୍ବତ ଉତ୍ସର୍ଗ ଅତି ଅଟନ୍ତି ସୁସଞ୍ଚ
ଦଶସହସ୍ର ଯୋଜନ ଅଟଇ ତା ଉଚ୍ଚ ।
ପର୍ବତର ଶିଖ ଅଟେ ସୁବିସ୍ତର ଘଞ୍ଚ
ଦୀର୍ଘ ଯେତକ ତାହାର ପ୍ରସ୍ତ ସମକଞ୍ଚ ।
ସେ ଅହି ଯାଇଁ ପ୍ରବେଶ ହେଲା ଛନ୍ତିଁ ତଳେ
ହରିଭୃଙ୍ଗ ନଦୀ ବହେ ଅତି ନିର୍ମଳେ ।
ମହାସର୍ପ ହୋଇ ସେହି ନଦୀରେ ପଡ଼ିଲା
ଜୀବ କାରଣ ଅର୍ଥରେ ଧାତା ସୁମରିଲା ।
ବିରଞ୍ଚି ବୋଇଲେ ସର୍ପ ହୋଇ ଏଥେ ଥିବୁ
ଯୁଧିଷ୍ଠିର ଦରଶନେ ମୁକତ ହୋଇବୁ ।
ନହୁଷର ସୈନ୍ୟବଳ ସ୍ୱର୍ଗେ ଯେତେ ଥିଲେ
ସମସ୍ତେ ସର୍ପ ହୋଇ ସେ ବନରେ ରହିଲେ
ଅନେକ ଯେ ଅହି ଏକମେଳ ଛନ୍ତିଁ ହେଲେ
ତେଣୁ ଅହିରାଜ ନାମ ସେ ବନର ଦେଲେ
ସର୍ପ ଡରେ ସେ ବନକୁ ନ ପଶନ୍ତି କେହି
ହସ୍ତି ଶୁଣ୍ଢ ପ୍ରମାଣରେ ସର୍ପ ଗୋଟାଛନ୍ତି ।
ଅଷ୍ଟ ଧାତୁ ମୂଳେ ନବ ବଟକ ଯେ ଦ୍ରବ୍ୟ
ଅମର ଔଷଧମାନ ଅଛନ୍ତି ସର୍ବ ।
ନହୁଷକୁ ଶାପ ଦେଇ ସପ୍ତଋଷି ଗଲେ
ଯେ ଯାହାର ତପସ୍ଥାନେ ପ୍ରବେଶ ହୋଇଲେ
ନହୁଷ ବିଯୋଗ ଦେଖି ସ୍ୱର୍ଗପୁର ବାସୀ
ଅମର ମଣ୍ଡଳେ ସର୍ବେ ପ୍ରବେଶିଲେ ଆସି
ନନ୍ଦନବନେ ଯେ ଇନ୍ଦ୍ର ଲୁଚି ବସିଥିଲେ
ଐରାବତ ଆରୋହିଣ ସ୍ୱର୍ଗପୁରେ ଗଲେ ।
ଯକ୍ଷ ଗନ୍ଧର୍ବ କିନ୍ନର ଆଦି ବିଦ୍ୟାଧର
ସମସ୍ତେ ମିଳିଲେ ଆସି ଯେ ଯାହାର ପୁର ।
ବିଚିତ୍ର ନଗର ମାନ ଦେଖିଲେକ ଆସି
ସ୍ୱର୍ଗ ମଣ୍ଡଳ ସମସ୍ତ ହୋଇଅଛି ଧ୍ୱଂସି ।
ସୁଧର୍ମା ସଭାରେ ଯାଇଁ ବିଜେ ପୁରନ୍ଦର
ସକଳ ଦେବତା ଆସି ପ୍ରବେଶ ସଭାର
ବାସବ ବୋଇଲେ ଦେବଗୁରୁ ମୁଖ ଚାହିଁ
ଏଡ଼େ ଉପଦ୍ରବ ସ୍ୱର୍ଗେ କେହି କରି ନାହିଁ ।

ଅନେକ ଦାନବେ ପୂର୍ବେ ସ୍ୱର୍ଗେ ଆସିଥିଲେ
ଏତେବଡ଼ ଉପଦ୍ରବ କେହି ନ କରିଲେ ।
ମାନବ ଇନ୍ଦ୍ର ହୋଇ ସେ ସ୍ୱର୍ଗକୁ ବାହୁଳ
ଏତେ ଛିଦ୍ରକଥାଗୋଟା କେମନ୍ତେ ପାଇଲ ।
ଦେବତାଏ ବୋଇଲେ ହୋ ଶୁଣ ଜମ୍ବୁଭେଦୀ
ଅନଙ୍ଗସେନ କହିଲା ସ୍ୱର୍ଗର ଯେ ବିଧି ।
ଆମ୍ଭ ଛିଦ୍ର ଜାଣି ଶୁଣି ବସିଲାକ ମାଡ଼ି
ଆମ୍ଭର ଯେ ପ୍ରାଣହତ୍ୟା ଏହାଯୋଗୁ ପଡ଼ି ।
ବିଶ୍ୱାସୀଲୋକ ଅନ୍ତରେ କରେ ଯେବେ ମାୟା
ପିତା ହୋଇ ପୁତ୍ରକୁ ନ କରେ ଯେବେ ଦୟା
ବୈଦ୍ୟହୋଇ ଔଷଧିରେ ଦେବେଯେବେ ବିଷ
କୃଷକରନ୍ତେ କୃଷିରେ ନୋହେ ଯେବେ ଶସ୍ୟ
ରାଜା ହୋଇଣ ଦଣ୍ଡିବ ଯେବେ ନ ବିଚାରି
ଧର୍ମପତ୍ନୀ ହୋଇ ଯେବେ ହୋଇବ ଦୋଚାରୁଣୀ ।
ମନ୍ତ୍ରୀ ହୋଇ ନ କରଇ ଯେବେ ସଦଭାବ
ବୃହସ୍ପତି ବୋଇଲେଯେ ନାହିଁ ତାଙ୍କୁ ଠାବ ।
ରାବଣର ଭାଇ ପୂର୍ବେ ବିଭୀଷଣ ଥିଲା
ଲଙ୍କା ଛିଦ୍ରମାନ ଯାଇ ରାମଙ୍କୁ କହିଲା ।
ଅସୁରଙ୍କ ଛିଦ୍ର ପାଇ ପ୍ରଭୁ ରଘୁବଂଶୀ
କପି ଘେନି ଲଙ୍କାଗଡ଼େ ପଶାଇଲେ ଧ୍ୱଂସି ।
ସମୁଦ୍ର ଛିଦ୍ର ଅଗସ୍ତି ମୁନି ଜାଣିଥିଲେ
ଗଣ୍ଡୁଷ କରି ସମୁଦ୍ର ଚୁଳୁକେ ଷୋଷିଲେ ।
ନହୁଷ ଜାଣନ୍ତା ତାହୁଁ ସ୍ୱର୍ଗ ଛିଦ୍ରକଥା
ଏହାଯୋଗୁଁ ଦେବତାଏ ପାଇଲେ ଏ ବ୍ୟଥା
ଏକା ଅନଙ୍ଗସେନ ଏ ସ୍ୱର୍ଗ କଲା ନାଶ
ଜ୍ୟେଷ୍ଠପୁତ୍ର ହୋଇ କଲା ଏତେ ଅବିଶ୍ୱାସ ।
ବୃହସ୍ପତିଙ୍କ ମୁଖରୁ ଏସନକ ଶୁଣି
କୋପେ ପ୍ରଜ୍ୱଳିତ ହେଲେ ସୁରପୁରମଣି ।
କୋପଭରହୋଇ ପୁଣି ବୋଇଲେ ବିଡ଼ୌଜା
ନନ୍ଦନବନୁ ବାହାରି ବହନ ଯାଅ ଯା ।
ବଜ୍ରଶକତି ବୁଲନ୍ତି ବଇରାଗ ପାଇ
ଯାଅରେ ଅନଙ୍ଗସେନ ନ ଥାଅରେ ତୁହି ।
ବିଶ୍ୱାସଘାତକ କଲୁ ମୋଠାରେ ତୁ ମାୟା
ଶତେ ଜନମ ତୁ ଧର ଅସୁରର କାୟା ।
ପୁତ୍ର ହୋଇ ପିତାଠାରେ କଲୁ ଅବିଶ୍ୱାସ
ତୋ ଜନ୍ମିତ ପୁତ୍ର ହସ୍ତେ ତୁଚ୍ଛ ପ୍ରାଣେ ନାଶ ।

ଏ ମୋହର ଶାପତୋତେ ନୋହିବରେ ଆନ
ଅସୁର ହୋଇ ମହୀରେ ରହ ବହୁଦିନ ।
ଏସନକ ଶାପ ଯହୁଁ ଦେଲେ ସୁରସାଇଁ
ସ୍ୱର୍ଗ ଛାଡ଼ି ବାହାରିଲା ପିତା ଆଜ୍ଞା ପାଇ ।
ଦ୍ରୁମିଳା ନାମେ ଅସୁର ହୋଇଲା କୁମର
କଂସ ହସ୍ତେ ପ୍ରାଣ ଦେଇ ଗଲା ସ୍ୱର୍ଗପୁର ।
ଦେବ ମନ୍ଦିରତଳେ ଯାଇଁ ପ୍ରବେଶ ହୋଇଲା
ନମସ୍କାର କରି ଇନ୍ଦ୍ର ସମ୍ମୁଖରେ ମିଳିଲା ।
ଏହଣି ତାକୁ ସୁରପତି ସାନନ୍ଦ ହୋଇଲେ
ପ୍ରସାଦଶାଢ଼ୀ ଚନ୍ଦନମାଳା ନେଇ ଦେଲେ ।
ଆଶିଷ ବାକ୍ୟେ ଆଶିଷ କଲେ ଦେବରାଜା
ନନ୍ଦନବନ ଚୋଠାକୁ ପୁତ୍ର ତୁ ଯାଅ ଯା ।
ଚଳିଲା ଅନଙ୍ଗସେନ ଇନ୍ଦ୍ର ଆଜ୍ଞା ପାଇ
ନନ୍ଦନବନ ଚୋଠାରେ ମିଳିଲାକ ଯାଇଁ ।
ଦଶ ଅର୍ବୁଦ ଚୋଠାଳ ଉପରେ ଅଗ୍ରଣୀ
ଇନ୍ଦ୍ରର ଜ୍ୟେଷ୍ଠପୁତ୍ର ସେ ସ୍ୱର୍ଗର ଜାରେଣି ।
ଅଭିଶାପ ପାଇ ମର୍ତ୍ତ୍ୟେ ଜାତ ହୋଇଥିଲା
କଂସହସ୍ତେ ମରି ନିଜ ଭୁବନ ପାଇଲା ।
ଶୁକ ବୋଇଲେ ଶୁଣିଲୁ ତୁହେ ନୃପରାୟ
ହରିବଂଶ ଆଦ୍ୟଖଣ୍ଡ ଅଟେ ପୁଣ୍ୟମୟ ।
ପବିତ୍ର ଗଙ୍ଗାଜଳ ଏ ବିଷ୍ଣୁ ପୁଣ୍ୟ ବାଣୀ
ଅନେକ ପାତକ ଧ୍ୱଂସ ହେବ ଏହା ଶୁଣି ।
ଯୋଗବଳେ ଦୃଶ୍ୟ ମୋତେ ହେଲା ଏହି କଥା
ସଂକଳ୍ପ କରି ଶୁଣିବ ହରିବଂଶ ଗାଥା ।
ତୁମ୍ଭେ ପଚାରିଲ ପିତା ପୁତ୍ରଙ୍କର ଯୁଦ୍ଧ
ଯେମନ୍ତେ ପ୍ରକାରେ ହେଲା ଦୈତ୍ୟ ପ୍ରାଣବଧ
କହିଲି ତୋ ଆଗେ ହରିବଂଶର କାହାଣୀ
ଅଚ୍ୟୁତାନନ୍ଦ ଦାସକୁ ରଖ ଚକ୍ରପାଣି ।

—❋—

## କଂସରସୈନ୍ୟ ମଗଧଦେଶେଯାତ୍ରା ଓ ଯୁଦ୍ଧ କେଶୀସହିତ ଜରାସନ୍ଧର ଯୁଦ୍ଧ ଓ ବନ୍ଦୀ ଏବଂ ହେତି ପ୍ରହେତି ବଧ

ଏଥୁଅନନ୍ତରେ ତୁହେ ଶୁଣ ଦଣ୍ଡଧାରୀ
ହରଷ ହୋଇଲା କଂସ ଦ୍ରୁମିଳାକୁ ମାରି ।
ସଂଗ୍ରାମ ଜୟ କରିଣ ତେଜୋବନ୍ତ ହେଲା
ରଚି ଭଜାଗରେ ସୈନ୍ୟ ସଜାଇ ରଖିଲା ।

ପ୍ରଭାତେ ଯମୁନାକୂଳେ ଗଲେ ସମଦଣ୍ଡ
ଘୋରତର ଶବଦରେ କମ୍ପାଇ ବ୍ରହ୍ମାଣ୍ଡ ।
ଅନେକ ସମାରୋହରେ ଚଳିଗଲା କଂସ
ଅଷ୍ଟମଲ୍ଲ ସଙ୍ଗତରେ ଘେନ ସାତବଂଶ ।
ହସ୍ତି ଘଣ୍ଟାରବ ସୈନ୍ୟ ମୁଖରବ ଶୁଣି
ପାତାଳେ ବାସୁକୀ ରାଜା ନ ଟେକିଲା ଫେଣୀ ।
ଉଦଣ୍ଡ ଲକ୍ଷେ ଆଲମ୍ବ ଲକ୍ଷ ପନ୍ତ ପନ୍ତ
ବଲମ୍ବ ଯେ ପାଟଛତ୍ର ଉପରେ ଉଡ଼ନ୍ତ ।
ଆନନ୍ଦରେ ସମଦଣ୍ଡ ଚଳିଗଲେ ବେଗେ
ପ୍ରବେଶ ହେଲେ ବିପୁଳ ବନ ପୂର୍ବଭାଗେ ।
କଉଶିକୀ ନାମେ ନଦୀ ବହେ ପୁଣ୍ୟ ଜଳ
ଉତ୍ତର ମୁଖେ ବହଇ ଅତି ପରିମଳ ।
ମୁକ୍ତେଶ୍ୱର ବୋଲି ଏକ ଲିଙ୍ଗ ତହିଁ ଅଛି
ଆଦ୍ୟରୁ ପୂଜା କରନ୍ତି ଇନ୍ଦ୍ର ହୋଇ ଶୁଚି
ସ୍ଫଟିକର ପାବଚ୍ଛ ସେ ନଦୀ ପୂର୍ବଘାଟ
ମଥୁରାକୁ ସେ ସ୍ୱରିଶ ଯୋଜନ ଯେ ବାଟ ।
ପ୍ରଥମ ଦିବସେ ଥାଟ ରହିଲେକ ଯାଇଁ
ରାତ୍ର କାଟିଲେ ରନ୍ଧନ କରି ତହିଁ ଖାଇ ।
ରଜନୀ ପ୍ରଭାତୁ ଉଠି ତହୁଁ ଚଳିଗଲେ
ଶକୁନ୍ତଳା ନଦୀ ପାଶେ ସନ୍ଧ୍ୟାରେ ମିଳିଲେ ।
ଗଣ୍ଡୁକୀ ନାମେ ଯେ ନଦୀ ଯାଉଅଛି ବହି
ରମ୍ଭା ଉର୍ବଶୀ ତପ କରୁଥିଲେ ତହିଁ ।
ସେ ନଦୀର ତୀରେ ଏକ ପର୍ବତ ଅଛି
ସେ ଗିରିବର ଅତ୍ୟନ୍ତ ଶୋଭା ପ୍ରକାଶୁଛି ।
ଅତି ଉଚ୍ଚ କୁଳାଚଳ ଅଟେ ତାର ନାମ
ବେନି ନଦୀ ବେଢ଼ିଦିଶେ ଶୋଭା ଅନୁପମ ।
ଭୂତଭବିଷ୍ୟତ ବୋଲି ଅଛି ଲିଙ୍ଗ ଗୋଟି
ଚତୁରଙ୍ଗ ବଳ ଘେନ କଂସ ଯାଇ ଭେଟି ।
ମଣିନାଗ ଗିରିତଳେ କଟକାଇ କରି
ଭୂତଭବିଷ୍ୟତ ନାମେ ତହିଁ ଦଣ୍ଡଧାରୀ ।
କଂସର ଦିଗବିଜୟ ବାରତା ପାଇଲା
ଉପହାର ଘେନ ତାର ପ୍ରମୁଖେ ମିଳିଲା ।
ସେ ରାଜ୍ୟ ନୃପତି ମହା ଗଉରବ ପାଇ
ଉଷାକାଳେ ତହୁଁ କଲେ ଥାଟ କଟକାଇ ।
ବନକୁ ବନ ଚଳନ୍ତି ସୈନ୍ୟ ଅତିଖରେ
ସ୍ୱରଶତ ଯୋଜନ ସେ ଯାନ୍ତି ଦିନକରେ ।

ଯେତେ ବାଟେ ଚଳଇ କଂସ ଅଙ୍ଗବଳ
ଶାଳଶିଳ ବନ ଭାଙ୍ଗି ହୁଏ ସମତଳ ।
ଚଳଇ ସେ କଂସରାଜା ରାଜା ଦର୍ପ ଭଞ୍ଜି
ପରରାଷ୍ଟ୍ର ନଗ୍ର ଗ୍ରାମ ପାଟଣାକୁ ଭଜି ।
ଚଉଦ ଦିନ ଯାଏ ସେ ସଞ୍ଚାର ଚଳିଲା
ଶାଖାନାମେ କଟକରେ ପ୍ରବେଶ ହୋଇଲା ।
ରଣରଙ୍ଗୀ ମହାତେଜା ପ୍ରତାପୀ ସେ କଂସ
ବଜ୍ରନାଭ ନାମେ ଅଟେ ତହିଁର ନରେଶ ।
ରାଜାର ପ୍ରତାପେ ସେହି ଅକଣ୍ଟକ ଦେଶ
ସ୍ୱାମୀର ପାତେରାମାନ ବେଢ଼ି ଚଉପାଶ ।
ଶାଖାନଗ୍ର ନାମେ କଂସ ସୈନ୍ୟ ରହିଛଲେ
ଏ ସମୟେ ଡଗରଏ ରାଜାକୁ କହିଲେ ।
ହେ ମଣମା ସାବଧାନେ ଶୁଣ ନରସାଇଁ
ମହାବଳୀ ରାଜା ଏତ ଅଇଲେକ ବାହି ।
ରଥଗଜ ପଦାତିକ ବଳ ସଙ୍ଗେ ଘେନ
ନଗ୍ରର ନିକଟେ ଆସି ରହିଛନ୍ତି ପୁଣି ।
ହାଟ ବାଟ ପାଟଣା ସେ ସବୁ ପୂରି କରି
ସାଧୁ ସଜ୍ଜନ ଲୋକଙ୍କ ବିତ୍ତ ନେଲେ ହରି ।
ପଚାରିଲେ ବୋଲନ୍ତି ସେ ଯଦୁ ଭୋଜବଂଶ
ରାଜା ଦିଗ ବିଜେକରି ଆସିଛନ୍ତି କଂସ ।
ଆମ୍ଭଙ୍କୁ ବୋଇଲେ କହ ଭୂପ ରାଜା ଆଗେ
ଯୁଦ୍ଧ ନ କଲେ ଶରଣ ପଶୁ ଆସି ବେଗେ
ଏସନ ବାରତା ଯହୁଁ କହିଲେ ଡଗରେ
ଶୁଣି ବଜ୍ରନାଭ ରାଜା କମ୍ପେ କୋପଭରେ ।
ଆସ୍ଥାନୁ ଡେଇଁ ପଡ଼ିଲା ରାଜା ଧାଇଁକାରେ
ରେରେକାର କରି ଧାଇଁଯାଏ ରୋଷଭରେ ।
ଘୋରତର ଗଦା ବାମ ହସ୍ତରେ ଧରିଲା
ଆପେ ଆଗ ହୋଇ ଗଲା ଥାଟ ପଛ କଲା ।
ବୋଲେ ଗିରି କି ପଡ଼ିଲା ମେରୁର ଉପରେ
ମେରୁ ପର୍ବତ ଟଳାଇ କେ ସୂଚୀମୁନରେ ।
ପୁଣି ବୋଇଲା କାହାର ଏତେକ ଭରସା
ଶୋକଲା ବ୍ୟାଘ୍ରକୁ କରେ ଖଣ୍ଡିଆଲ ଶଶା ।
ଏ ମୋର ମହିମା ସେ କି ଶୁଣି ନାହିଁ କର୍ଣ୍ଣେ
ନ ଜାଣି ପଶିଲା ଆସି ମୋହର ଭୁବନେ
କୋଟି ଇନ୍ଦ୍ର ଯେବେ ଆସି ଏକତ୍ର ହୋଇ
ନଷ୍ଟପ୍ରାଣ ହେବ ଯିବ ଏବେ କାହିଁ

ଏତେବୋଲି ଧାଇଁଲେ ସେ ଦୈତ୍ୟ ଅତିବେଗେ
ଧାଡ଼ିକାରେ ମିଳେ ଯାଇଁ କଂସରାଜା ଆଗେ
ଆଗୁଆଣି ଦଣ୍ଡେ ଅଷ୍ଟମଲ୍ଲ ଥିଲେ ରହି
ତାଙ୍କ ସମ୍ମୁଖରେ ମିଳିଲେ କୋପଭର ହୋଇ ।
ଶରଚୂର ଖଡ୍ଗ ଗଦା କାଖେ ଥିଲା ଯାକ
ଅଷ୍ଟମଲ୍ଲେ ତାଳମାରି ହସିଲେ ତା ଦେଖି ।
କେଶୀ ବୋଇଲା କାହିଁକି ଅଇଲୁ ତୁ ଧାଇଁ
ବଜ୍ରନାଭ ଯେ ବୋଇଲା ଯୁଝିବାର ପାଇଁ ।
କେଶୀ ବୋଇଲା ତୁ ନୋହୁ ଯୁଝିବାକୁ ସରି
ମରିବା ପାଇଁ ଆସିଛୁ ସିନା ପ୍ରୌଢ଼ି କରି ।
କାଇ ପ୍ରାପ୍ତ ହୋଇ ତୁରେ ଧାଇଁଅଛୁ ଏକା
ରଥ ଗଜ ପଦାତିକ ସୈନ୍ୟ ନାହିଁ ଶାଖା ।
କେଉଁ ପ୍ରକାରେ ସଂଗ୍ରାମ କରିବୁରେ କହ
ଅସ୍ତ୍ର ଶସ୍ତ୍ର ଆଣି ନାହୁଁ ରଖିବୁ କି ଦେହ ।
ଅଗ୍ନି ମଧ୍ୟେ ପଶୁ ତୁହି ଆଖି ଥାଉଁ ଅନ୍ଧ
ଦେଖୁ ଦେଖୁ ବଣା ହେଉ କରିବୁ କି ଯୁଦ୍ଧ ।
କା ସଙ୍ଗେ ଯୁଝିବୁ ତୁରେ ବିସ୍ତରି କହନା
କୋଟି ଯୋଦ୍ଧା ମଧ୍ୟେ ଯାର ଶରବର ବାନା
ଯେ ତୋହର ବିସ୍ତରକୁ ଆସେ ବଳ କଛ
ତୋର ସମକକ୍ଷ ଜଣେ ବିସ୍ତରିଣ ବାଛ ।
ନୋହିଲେ ତୋ ବନ୍ଧୁ ବଳ ଆବର ସଇନା
ବାହୁଡ଼ି ଯାଇ ତୁ ସ୍ୱଷ୍ଟେ ଆସ ସଙ୍ଗେ ଘେନ ।
ଯେତେ ସୈନ୍ୟ ଆସି ଭେଳା ହୋଇଛନ୍ତି ଆଗେ
ଯେତେତେ ଯୋଗାଏବାଟୁ ଘେନ ଯାଆ ସଙ୍ଗେ
ଶୁଣି ବଜ୍ରନାଭ ସ୍ତମ୍ଭୀଭୂତ ଯେ ହୋଇଲା
ମଥା ପୋତି ରହି ମହାଲଜ୍ଜା ସେ ପାଇଲା ।
କେଶୀ ବୋଇଲା ଏ ପରା ମହାରାଜା କଂସ
ଉଗ୍ରସେନ ନନ୍ଦନ ଏ ଭୋଜବଂଶ ଶିଷ୍ୟ ।
ମଥୁରାଠାକୁର ଅଟେ ଏହି ଧରମଣି
ସପ୍ତଦ୍ୱୀପ ପୃଥିବୀର ଅଟଇ କାରେଣୀ ।
ଦିଗବିଜେ କରିବାକୁ ଅଛି ଦଣ୍ଡସାଜ
ଦେବ ଦାନବ ମାନବ ଗଲେ ସର୍ବେ ଭଜ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଏ ଜଣି ତ୍ରିଭୁବନ
ଦୁର୍ଦ୍ଦଣ୍ଡ ରାଜାଏ ଆସି ପଶିଲେ ଶରଣ ।
ଆମ୍ଭେ ଅଷ୍ଟମଲ୍ଲ ଅଟୁ ତାହାଙ୍କର ଦେହ
ତୋ ବିସ୍ତରକୁ କି ଆସେ ସ୍ୱରୂପ ତୁ କହ ।

ଯୁଦ୍ଧକୁ ଇଚ୍ଛା ଥିଲେ ତୁ ସୈନ୍ୟ ଘେନ ଆସ
ଯୁଦ୍ଧ ନ କଲେ ଶରଣ ଆସି ବେଗେ ପଶ ।
ଶୁଣି ବଜ୍ରନାଭ ମନେ ମହାଭୟ କଲା
ସନ୍ଧାନ ବିଧି ଘେନ ସେ ସମ୍ମୁଖରେ ମିଳିଲା
ବିଶାଶତେ ପାଣିଦ୍ରବ୍ୟ ସହସ୍ରେକ ହସ୍ତୀ
ଦଶସହସ୍ର ଟେଙ୍କାର ସିନ୍ଦୂରର ଜ୍ୟୋତି ।
ସହସ୍ରେକ କନ୍ୟା ଦିବ୍ୟବେଶ କରାଇଲା
କଂସ ରାଜା ପାଦତଳେ ନେଇ ସମର୍ପିଲା ।
କରପଦ ଯୋଡ଼ି ଆଗେ ଶୋଏ ଗଡ଼ପାଲି
ଶରଣ ପଶିଲି ଦୋଷ ନ ଜାଣି ମୁଁ କଲି ।
ସମୁଦ୍ର ଲଙ୍ଘିଲେ କାହୁଁ କୂଳ ହେବ ରକ୍ଷା
ଦଣ୍ଡ ମଣ୍ଡକର ଦେବ ଯେ ତୁମ୍ଭର ଇଚ୍ଛା ।
କଂସବୋଇଲା ନ ଜାଣିହେଲୁ ଯେବେ ଦୋଷୀ
କି ଯଶ ଆମ୍ଭେ ଲଭିବା ଦୋଷୀକି ବିନାଶି ।
ତୁହି ଯେବେ ସମ୍ମୁଖୁରେ ନ ଆସନ୍ତୁ ଆଜ
ନଷ୍ଟପ୍ରାୟ ତୋତେ ମାରି ମୁଁ ଘେନନ୍ତି ତୋ ରାଜ୍ୟ
ତୋହର ସୁଖେ ତୁ ଏବେ ନିଶ୍ଚିନ୍ତରେ ଥିବୁ
ପରରାଷ୍ଟ୍ର ପଡ଼ିଲେ ମୋ ଆଗେ ଜଣାଇବୁ ।
ଯେ ତୋହର ଶତ୍ରୁ ତାକୁ କରିବଇଁ କ୍ଷୟ
ଏତେବୋଲି ତହୁଁ ବେଗେ ଚଳେ କଂସରାୟ
ବୃନ୍ଦାବନରେ ଯମୁନା ନଦୀ ଛାଡ଼ିଗଲେ
ଦଣ୍ଡସୈନ୍ୟ ସରସ୍ୱତୀ କୂଳରେ ରହିଲେ ।
ଭାର୍ଗବ ଦେଶେ ଶରବ୍ୟ ନାମେ ଅଛି ବନ
ସଙ୍କେତ ନାମେ ପର୍ବତ ତହିଁ ବିଦ୍ୟମାନ ।
ସରସ୍ୱତୀ ନଦୀ ବହେ ପର୍ବତର ତଳ
ନିର୍ମଳ ପାପଦହନୀ ପବିତ୍ର ତା ଜଳ ।
ସମ୍ବତ୍ସର ବୋଲି ଦେଶ ଅଛି ପୂର୍ବଆଡ଼େ
ଧବଳାଙ୍ଗୀ ନାମେ ନଦୀ ବହେ ଅତିଗାଢ଼େ ।
ତହିଁରେ ଯାଇ ପ୍ରବେଶ କଂସରାଜା ସୈନ୍ୟ
ସୁସଞ୍ଚ ରମ୍ୟସ୍ଥାନ କି ଅମୂଲ୍ୟ ରତନ ।
ତିନିଦିବସ ରହିଲା ତହିଁ କଂସରାଜା
ଅନେକ ନୃପତି ଆସି କଲେ ପାଦପୂଜା ।
କେବଣ ରାଜା ଘେନଣ ଚତୁରଙ୍ଗ ବଳ
ଭୟରେ ଶରଣ ପଶେ କଂସ ପାଦତଳ ।
କେବଣ ରାଜାଏ ଦଣ୍ଡ ସିଂହାସନ ଛାଡ଼ି
ପଳାଇଲେ ଭୟପାଇ ଅମଡ଼ା ଯେ ମାଡ଼ି ।

କେବଣ ରାଜା ନ ମାନି ସଂଗ୍ରାମ ଯେ କଲା
ସକଳ ସମ୍ପଦ ଦେଇ ଆପେ ନାଶ ଗଲା ।
ଯେସନେ ତାରକା ଜଗ ବଡ଼ଜ କଲା ପୂର୍ବେ
ତହିଁରୁ ଦଶଗୁଣ ଏ କଂସ କଲା ଏବେ ।
ଅନେକ ରାଜାମାନଙ୍କୁ ସମରେ ଜିଣିଲା
ନିଜ ଭୁଜବଳେ ସବୁ ରାଜ୍ୟ ସାଧି କଲା ।
ସମସ୍ତ ରାଜାଏ ଡ଼ରେ ଦେଲେ ଅଙ୍ଗବଳ
ପାଦର ଘାତେ ପୃଥିବୀ ହେଲା ଟଳମଳ ।
କଂସାସୁର ଭାର ପୃଥ୍ୱୀ ନ ପାରିଲା ସହି
ଶିବଙ୍କୁ ଜନ ଉଦ୍ଧାରନ୍ତି ବସୁମତୀ ଦେବୀ ।
ଅଚଳେ ରେବନ ବସି କରେ ମଲ୍ଲସ୍ଥଳୀ
ମୁଖରୁ ରୁଧିର ତାର ପଡ଼ଇ ନିକଳି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ କଂସ ହେଲା ଭାର
ପ୍ରତ୍ୟକ୍ଷେ କାଳ ଯମ କି ହେଲା ଅବତାର ।
କାମ୍ୟକ ପର୍ବତ ତଳେ କଂସ ଅଛି ବସି
ଦେଶାନ୍ତରେ ଯେ ବାରତା କହିଲେକ ଆସି
ଶ୍ରେଦେବ କୁ ଯଦୁବଂଶେ ଅଛି ଯେ କାରେଣି
ପରରାଷ୍ଟ୍ରର ବାରତା ଅଇଲୁଁ ଶୁଣି ।
ଭୈରବ ପର୍ବତ ତଳେ ମଗଧ ପାଟଣା
ନବଖଣ୍ଡ ମେଦିନୀକ ଅଟଇ ଧାରଣା ।
ପ୍ରତ୍ୟକ୍ଷେ ଅଳକା ପୁର ମଣେ ଅଛି ରହି
ଉଦତଳେ ସରିସମ ପଟାନ୍ତର ନାହିଁ ।
ଜରାସନ୍ଧ ନାମେ ରାଜା ତହିଁରେ ଅଛଇ
ଅତିବଳବନ୍ତ ତାକୁ ଜିଣନ୍ତା କେ ନାହିଁ ।
ରାଜାଙ୍କ ଉପରେ ସେହି ଅଟେ ମହାରାଜା
ଲକ୍ଷେ ନୃପତି କରନ୍ତି ତା'ର ପାଦପୂଜା ।
ଅସଂଖ୍ୟ ବଳ ତାହାର ନ ଯାଇ କଳନା
ତେଇଶ ଅକ୍ଷୌହିଣୀ ଅଙ୍ଗବଳ ତା ଗଣନା ।
ଧନେ ଶ୍ରୀବନ୍ତ ରଣେ ଅଟେ ମହାଯୋଧୀ
ରଥ ଗଜ ଅଶ୍ୱ ତାର ଅନେକ ସମୃଦ୍ଧି ।
ଦ୍ୱିତୀୟ ଇନ୍ଦ୍ର ବୋଲାଇ ସେହି ଉଦତଳେ
ଛୟାଶୋଇ ସହସ୍ର ରାଜା ଜିଣି ବାହୁବଳେ ।
ବନ୍ଧକରି ରଖିଅଛି ରାଜ୍ୟରେ ତାହାର
ନରମେଧ ଯାଗ ଶେଷ କରିବେକ ପାଇଁ ।
ଯେବଣ ଜଗକୁ ଯମଦଣ୍ଡ ସେ ସାଜଇ
ଶାଳ ଶିଳ ବନ ଗିରି ଦେଶ ଉଜାଡ଼ଇ ।
ଗୃହପାଦ ଲକ୍ଷ୍ମୀ ଜାଣ ସେହି ଦେଶେ ଅଛି
କିଛି ଅବଗୁଣ ତାର ଦେଶରେ ନ ବାଛି ।
ବଳବନ୍ତ ବୁଦ୍ଧିମନ୍ତ ତେଜୋବନ୍ତ ଅଟେ
ନବଖଣ୍ଡ ମେଦିନୀ ଯେ ତାର ପାଦେ ଖଟେ
ଏହା ଶୁଣି କଂସରାଜା ନଶେ ହାତ ଦେଲା
ଆଜରେ ଏ କଥା ମୁହିଁ ଶୁଣିଲି ବୋଇଲା ।
ଏସନକ ରାଜା ଯେବେ ଅଛି ମହୀଭାଗେ
ଆଗରୁ କପାଇଁରେ ନ କହିଲ ମୋ ଆଗେ
ନିମିଷକ ମାତ୍ରେ ମୁହିଁ ସଂଗ୍ରାମେ ଜିଣିମି
ଜୀବନ୍ତା ବନ୍ଧ କରିଣ ଏଥିଣି ଆଣିମି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ମୁଁ ଜିଣିପାରେ ଧରି
ମାନବ ରାଜା ସଂଗ୍ରାମେ ମୋତେ ଜୟ କରି ।
ସାଜରେ ମୋ ଯମଦଣ୍ଡ ଏହିକ୍ଷଣି ଯିବା
ଥୋକାଏ ଦୂର ଯାଇଁରେ ବାଟରେ ରହିବା
ଆଜ୍ଞାପାଇ ଯମଦଣ୍ଡ ବେଗେ ଚଳିଗଲେ
ଉତ୍ତମ ପ୍ରକାରେ ତହିଁ ସଜବାଜ ହେଲେ ।
ଯେ ଯାହାର ଯାନ ମାନ ଆରୋହିଲେ ବଳ
ପ୍ରାତଃ ମଧ୍ୟାହ୍ନେ ଖୋଜିଲେ ଶୁଭ ଅନୁକୂଳ ।
ବେଲ ସାତ ଘଡ଼ିଠାରେ ଦଣ୍ଡକଲେ ସଜ
ପାଦଘାତରେ ଅଦୃଶ୍ୟ ହେଲେ ରବିତେଜ ।
କାମ୍ୟକ ପର୍ବତରୁ ସେ ଅତିବେଗେ ଗଲେ
ସରସ୍ୱତୀ ନଦୀତୀରେ ଯାଇଁ ପ୍ରବେଶିଲେ ।
ଚିତ୍ରକୂଟ ପର୍ବତକୁ ଷଣାଶେ ଯୋଜନ
ପ୍ରଥମ ଦିନେ ରହିଲେ ମେରୁ ଉହାଡ଼େଣ ।
ଗାରବାହୁକୁ ବୋଲେ ମୋ ସଙ୍ଗେ ଯିବୁ ତୁହି
ଯମଦଣ୍ଡ ସାଜ ସବୁ ଆଗରେ ଚଳାଇ ।
ବାଦ୍ୟନାଦ ଘାତ ସୈନ୍ୟ ମୁଖରବ ଗୋଳେ
ଅତ୍ୟନ୍ତ ଉଦ୍ଧତେ ମେରୁ ପର୍ବତ ଉଚ୍ଛୁଳେ ।
ଅଷ୍ଟମଲ୍ଲ ପାଦଘାତେ କମ୍ପଇ ମେଦିନୀ
ସ୍ୱର୍ଗ ମଣ୍ଡଳେ କମ୍ପିଲେ ଥାଇ ସପ୍ତଯୋନି ।
ଶାଳ ଶିଳ ତରୁଗିରି ଲତା ହୁଏ ଚୂର
ସାତବଂଶ ସୈନ୍ୟ ଘେନି ଚଳେ କଂସାସୁର
ଅନେକ ରାଜାପଣଙ୍କୁ ବାଟରେ ଭେଟଇ
ଯମଦଣ୍ଡ ଘେନି ସେହୁ ସଙ୍ଗରେ ଚଗୋଡ଼ାଇ
ବେଳୁ ବେଳ ସୈନ୍ୟ ତହିଁ ହୋଇଲେ ଗହଳ
ଷାଠିଏ ଯୋଜନ ମାଡ଼ି ଚଳେ ତାର ବଳ ।

କାମ୍ୟ ବନକୁ ମଗଧ ତିନଶ ଯୋଜନ
ଅଠର ଥରେ ମିଳିଲେ ଯାଇଁ ତାର ସୈନ୍ୟ
ନଗ୍ର ବାହାରେ ରହିଲେ ଗୁଡ଼ ରାଜଧାମୀ
ସିନ୍ଧୁଘୋଷ ଜିଣି ଶବ୍ଦେ ମୁଖରାବ ଧ୍ୱନ ।
ଆସ୍ଥାନରେ ବସିଥିଲା ଜରାସନ୍ଧ ବୀର
ଏ ସମୟେ ବାର୍ତ୍ତା ଯାଇଁ କହିଲା ଡଗର ।
ପରରାଷ୍ଟ୍ରର ବାରତା ଅଇଲି ମୁଁ ଘେନ
ସୈନ୍ୟ ଘେନ ରାଜ୍ୟେ ପଶେ କେଉଁ ନୃପମଣି
ଅନେକ ବଳ ତାହାର ନ ଯାଇ କଳଣା
ନଗ୍ର ଉପାନ୍ତେ ଆସି ସେ ଜଗାଇଛୁ ଠଣା ।
ଧରଧର ମାରମାର ଶବ୍ଦେ ସିଂହରଡ଼ି
ରଥଗଜ ହୟମାନ ବୀରେ ଛନ୍ତି ଚଢ଼ି ।
ସମସ୍ତେତ ବୀରବେଶ ଭୟଙ୍କର ମୂର୍ତ୍ତି
ନିର୍ଧୂମ ଅନଳ ଜାଣି ଦିଶେ ତାଙ୍କ ଜ୍ୟୋତି ।
ଅକଳିତ ବଳ ଦେବ କଳ ତ ନ ପାରି
ପଚାରିଲେ ବୋଲନ୍ତି ସେ ଦିଗବଜେ କରି ।
ସ୍ୱର୍ଗରୁ ଇନ୍ଦ୍ର ଅଇଲା ପ୍ରାୟେ ସେ ଦିଶନ୍ତି
ଏସନକ ବଳତେଜେ କେ ଦେଖା ନାହାନ୍ତି ।
ବେଶ ଉଜାଡ଼ ଗର୍ଜ୍ଜଣ କରୁଛନ୍ତି ଗୋଳ
ଜନପ୍ରଜା ରାଜ୍ୟ ନାଶ ପାଇଲେ ସମ୍ଭାଳ ।
ଶୁଣିକରି ଜରାସନ୍ଧ କୋପଭର ହେଲା
ବୋଲେ ଯମଦଣ୍ଡ କେ ମୋ ରାଜ୍ୟକୁ ବାହିଲା
ମୋତେ ଜିଣିବାକୁ କ୍ଷତ୍ରୀ ନାହିଁ ରବିତଳେ
କାହାକୁ ମୁଁ ନ ଜିଣିଛୁ ଏ ମହୀମଣ୍ଡଳେ ।
ଛୟାଣୋଇ ସହସ୍ର ରାଜା ଏହି ମହୀତଳେ
ତାହାଙ୍କୁ ଜିଣି ଆଣିଛୁ ବାହୁରଣେ ବଳେ ।
ଲକ୍ଷେ ରାଜାଙ୍କ ଅଗ୍ରେ ମୁଁ ଶିରୋମଣି ଲେଖା
ବଡ଼ବା ଅନଳେ କାହିଁ କାଠି ହେବ ଯୋଖା
ଶରଣ ପଶିବ ବୋଲି ଆସିଅଛି ଅବା
ଏଥିର ସନ୍ଦେଶ ତାକୁ ପଚାରରେ ବାବା ।
ଏତେ ବୋଲି ଜରାସନ୍ଧ ମଉନେ ରହିଲା
ଆଉରକ ଡଗର ଆସି ସମ୍ମୁରେ କହିଲା ।
ଭୋଜଦେବ ରାଜ୍ୟ ଭୁଞ୍ଜର ହେଲା ଉଗ୍ର ବାସ
ସମ୍ପଦ ସରିଲା ଆମ୍ଭେ ସଂଙ୍ଗ ଯିବା ନାଶ ।
ମଥୁରାର ନୃପତି ଯେ ଉଗ୍ରସେନ ବଳୀ
ବୀରବର ଯୋଦ୍ଧା ସେହି ରଣେ ଅନର୍ଗଳୀ ।
ବଳବନ୍ତ ଅଟଇ ଯେ ଭୋଜବୀର କଂସ
ଲୋହିତ ପିଙ୍ଗଳ ମୂର୍ତ୍ତି ପ୍ରତାପ ଅଶେଷ ।
ଦିଗବଜେ କରି ଆସିଅଛି ଦଣ୍ଡ ବାହୁ
ତାରସଙ୍ଗେ ଯୁଝିବାକୁ କା ଶକ୍ତି ଅଛଇ ।
କୋଟିଇନ୍ଦ୍ର ହେଲେ ଏକ ନ କରଇ ଶଙ୍କା
ଚାରୁଣେ ଅଛନ୍ତି ଅଷ୍ଟମଲ୍ଲ ରଣରଙ୍କା ।
ସୁଦେବ ସାତ୍ୟକ ଅନାଧୃଷ୍ଟ ମହାବୀର
ଉଦ୍ଧବ ସତ୍ରାଜିତ ଯେ ଆବର ଅକ୍ରୂର ।
ସାତବଂଶ ଯାଦବନ୍ତ ତେଜ ଅନର୍ଗଳା
ଅଠରଲକ୍ଷ ଯେ ଯୋଦ୍ଧା ପାରିଦଣ୍ଡ ଭେଳା ।
ଆବର ଏହାଙ୍କ ମୂଳେ ଲକ୍ଷେ ଦଣ୍ଡଧାରୀ
ପରଥାଟରେ ସଶନ୍ତି ମହାହନ୍ତକାରୀ ।
ଷାଠିଏ ଯୋଜନ ମାଡ଼ି ପୁରିଛନ୍ତି ଆଠ
ତିଳେମାତ୍ର ପଶିବାକୁ ନାହିଁ ସନ୍ଧିବାଟ ।
ନାରାୟଣ ପୁରିଛନ୍ତି ସବୁଙ୍କର ଘଟେ
କେମନ୍ତେ ତାହାଙ୍କୁ ଡେଇଁ ଯିବା କେଉଁବାଟେ
ନବଖଣ୍ଡ ମେଦନୀରେ ଯେତେ ରାଜା ସୈନ୍ୟ
ଏକାକେ ଆଣିଛି କଂସ ଅସୁର ରାଜନ ।
ନଗ୍ରର ଉପାନ୍ତେ ସୈନ୍ୟ ଅଛନ୍ତି ନିକଟେ
ଡରେ ଜନ ପ୍ରଜା ଯାଇ ନ ପାରନ୍ତି ବାଟେ ।
ନିଅନ୍ତି ଯେ ହାଟ ବାଟ ଦାଣ୍ଡ ଘୂର କରି
ଯେ ଧନ ନ ଦିଅନ୍ତି ସେ ତାଙ୍କ ପ୍ରାଣ ହରି ।
ଏଡ଼େଡ଼େ ବଡ଼ ସମ୍ପଦ ତ ହେଲେ ଗଲା ନାଶ
ସ୍ଥିର ହୋଇ ବିଚାରଣ କାର୍ଯ୍ୟ କରି କସ ।
ଏହାଙ୍କ ସଙ୍ଗେ ସଂଗ୍ରାମ ଆମ୍ଭେ ନ କରିବା
ରାଜ୍ୟ ନାଶ ନ କରିବା ସନ୍ଧି ତାଙ୍କୁ ଦେବା
ଡଗର ମୁଖରୁ ରାୟେ ଏ ବଚନ ଶୁଣି
କଟାକ୍ଷେ ଚାହିଁଲା ସେହି ମଗଧ ନୃମଣି ।
ଆସ୍ଥାନ ଉପରୁ ରାଜା ପଡ଼ିଲେକ ଡେଇଁ
ଘୋରନାଦ କରି ଧାଏଁ ଗଦାକୁ ବୁଲାଇ ।
ଅଧରେ ଦନ୍ତ ଚାପି ସେ କୋପଭର ହେଲା
ରଥ ଏକ ଆରୋହଣ ଆଗଭରେ ଗଲା ।
ସମଦଣ୍ଡ ସାଜ ଆଣ ଜଗ ଆଜ୍ଞା ଦେଲା
ତେଇଶୀ କ୍ଷଉଣୀ ବଳ ସାଜରେ ବୋଇଲା
ସାଜିଲେ ମଗଧବଳ ଅନ୍ତହିଁ ଗହଳ
ମୁଖରାବ ଶବଦରେ ପଡ଼ିଲା ଚହଳ ।

ସାଗରେକ ରଥ ଯେବେ ସାଗର ସାରଥି
ସ୍ବରସାଗର ଘୋଟକ ଆଠଲକ୍ଷ ହସ୍ତୀ ।
ଅମାପ ପଦାତିବଳ ସୁଭଟ ମାହୁନ୍ତ
ସାଜନ୍ତେ ମଗଧବଳ ପୃଥ୍ୱୀ ଚମକଇ ।
ରାଜାଆଜ୍ଞା ପାଇ ସଜହୋଇ ସେ ଅଇଲେ
ରଥୀ ହାତୀ ପଦାତିକ ପଟୋଆର କଲେ ।
ବେଜ୍ଜ ବେଳ ଜଗ ବଳ ଗହଳ ହୋଇଲା
ରଥଚଢ଼ି ଜରାସନ୍ଧ ଆଗରେ ଧାଇଁଲା ।
ଘୋର ଗର୍ଜନ କରଇ ବୀର ମହାରୋଷେ
ଶୁକ ମହାମନ୍ତ୍ରୀ ଆସି ମିଳିଲେ ତା ପାଶେ ।
ଜରାସନ୍ଧ ବୋଇଲା ଯେ ମନ୍ତ୍ରୀମୁଖ ଚାହିଁ
ଆମ୍ଭରାଜ୍ୟେ ପଶେ କେଉଁ ରାଜା ସୈନ୍ୟବାହି
ଆମ୍ଭର ଦେଶେ ପଶି ସେ କରୁଅଛି ହକା
କେଉଁ ସ୍ଥାନରେ ଶତ୍ରୁ ମୋତେନେଇ ଦେଖା
ତମ୍ବାତନ୍ଦ ପ୍ରାୟେ ବୁଲେ ତାର ଯେବେ ଆଖି
ଆକାଶରେ ଦେବଗଣ ଡରିଲେ ତା ଦେଖି
ବାମେ ଧନୁ ଦକ୍ଷିଣରେ ନାରାଚ ପୂରଇ
ରେରେକାର କରି ବାଣ ବନ୍ଧେ ବେଗ ହୋଇ
ପଛେ ଗୋଡ଼ାଇ ଅଛନ୍ତି ସଇନ ସକଳ
ଆଗ ହୋଇଅଛି ଜରାସନ୍ଧ ମହୀପାଳ ।
ଟମକ ନିଶାଣ ଭେରୀ ତୂରୀ ଘୋରନାଦ
ସମ୍ମୁଖରେ ବାଜୁ ଅଛଇ ନାନାବିଧ ବାଦ୍ୟ ।
କୋଟି ପାଟଛତ୍ର କୋଟି ଉଡ଼େ ସାରଥୀତ
ମେଘ ଆଡମ୍ବର ପାଞ୍ଚ ଲକ୍ଷ ପାଟଛତ୍ର ।
ଆଲମ୍ବ ଦଲମ୍ବ ଲକ୍ଷେ ଉଡ଼ଇ ପତାକା
ଫରହର ଉଡ଼ଇ ଯେ ନେତ ଚନ୍ଦ୍ରରେଖା ।
ଛତ୍ର ଘୋଟିଲେ ଅନ୍ଧାର ଦିଶେ ଦଶଦିଶ
ଅନ୍ଧାରେ ଧାମନ୍ତି ଥାଟ ବାଜି ବାଦ୍ୟଘୋଷ
ବାଦ୍ୟନାଦ ଶବଦରେ ଉଚ୍ଛୁଳଇ ମହୀ
ଅଶ୍ୱହସ୍ତୀ ପାଦଭରେ ଚମକଇ ଅହି ।
ରଥଚକ ପଦାତିଙ୍କ ମୁଖରବ ଗୋଳ
ସଂଗ୍ରାମକୁ ଜରାସନ୍ଧ ଧାମଇଁ ଚଞ୍ଚଳ ।
ତେଇଶୀ ଅକ୍ଷୌହିଣୀ ବଳ ଅଛନ୍ତି ତା ସଙ୍ଗେ
ରେରେକାର ଶବଦ ସେ କରୁଛନ୍ତି ରଙ୍ଗେ ।
କଂସର ସମ୍ମୁଖରେ ଯାଇଁ ଡଗର କହିଲା
ଜରାସନ୍ଧ ସମଦଣ୍ଡ ଘେନିଣ ବାହିଲା ।

ନଯାଇ କଳଣା ତାର ଅପ୍ରମିତ ଥାଟ
ସିନ୍ଧୁ ଘୋଷ ଜିଣି ମୁଖରବ ଯେ ବୁହାଟ ।
ବଳମ ସିଂହ ଜାଣିଣ ଆସୁଛନ୍ତି ମାଡ଼ି
ମୃଗଗଣକୁ ଦେଖି ବ୍ୟାଘ୍ର ଯେସନ୍ତେ ଦଏ ରଡ଼ି
କଂସ ବୋଲେ କେଶୀବୀର ଆଗେ କହ ଯାଇଁ
ଓଗାଳୁ ସେ ବେଗକରି ଅଷ୍ଟମଲ୍ଲ ନେଇ ।
କଂସର ଆଜ୍ଞାରେ କୋପେ ଅଷ୍ଟମଲ୍ଲ ଗଲେ
ଜରାସନ୍ଧ ନୃପତିକ ବାଟ ଓଗାଳିଲେ ।
ଷଣ୍ଢ ବକା ତୃଣାସୁର ଶକଟା ଅରିଷ୍ଟି
କୁବଳୟା କେଶୀ ଅଘା ଚାଣୁର ଯେ ମୁଷ୍ଟି ।
ଏକେ ଏକେ ପାରନ୍ତି ସେ ଇନ୍ଦ୍ର ଜୟକରି
ମାନବ ରାଜାକୁ ଭୟ ନାହିଁ ତାହାଙ୍କରି ।
ସାତବଂଶ ଯାଦବ ଯେ କରେ ଶସ୍ତ୍ରଘେନ
ମାର ମାର ବୋଲି ବେଗେ ଧାଇଁଲେ ସଇନ
ସନ୍ଦ କତ ଶତଧନୁ ଉଦ୍ଧବ ଅକ୍ରୂର
ବସୁଦେବ ସାତ୍ୟକ ଏ ସାତ ମହାବୀର ।
ଧାମନ୍ତି ଏ ରାଜାଆଜ୍ଞା ପାଇ ବେଗ ବେଗ
ଏକକୁ ପଛ କରିଣ ହୁଅନ୍ତି ସେ ଆଗ ।
ସକଳ ରାଜାମାନଙ୍କ ସମଦଣ୍ଡ ଘେନ
ପଛଆଣି ଦଣ୍ଡରେ ଯେ ରାଜା ଉଗ୍ରସେନ ।
ହାତୀ ରଥୀ ପଦାତିକ ଅକଳନ ଥାଟ
ବୀରବର ବାନା ମୁଖଧ୍ୱନି ରଟମଟ ।
ଏଥିଅନ୍ତେ ଆସେ ଜରାସନ୍ଧର ସଇନ
ପାଞ୍ଚ ଯୋଜନରୁ ଶୁଭେ ମୁଖରବଧ୍ୱନି ।
ଟମକ ନିଶାଣ ଢୋଲ ମାଦଳ ମହୁରୀ
ଉଡ଼ଙ୍ଗ କାହାଳ ବାଜେ ଶଙ୍ଖ ଭେରୀ ତୂରୀ ।
ହସ୍ତୀଙ୍କର ଘଣ୍ଟାରବ ଘୋଡ଼ା ହେଁଷାରବ
ସମୁଦ୍ର ଗର୍ଜନ ପ୍ରାୟେ ଶୁଭଇ ଶବଦ ।
ହଅନ୍ତି ସେ କୋଳାହଳ କରି ଘୋରରଡ଼ି
ଦେଖୁ ଦେଖୁ ସୈନ୍ୟ ସବୁ ପଡ଼ୁଛନ୍ତି ମାଡ଼ି ।
ରେଣୁ ଘାତେ ଅଦୃଶ୍ୟ ଯେ ହେଲେ ଦିନକର
ଗର୍ଜି ଜରାସନ୍ଧ ବୀର ଧାଏଁ ଖରତର ।
ନିକଟରେ ଯେବେସୈନ୍ୟ ହେଲେଭେଟାଭେଟି
ମେରୁକୁ ଯାଇ ଯେସନେ ଝୀରବତ ଭେଟି ।
ସୈନ୍ୟ ଯାଇ ଜରାସନ୍ଧ ସଙ୍ଗେ ମିଳି ବେଗେ
ସୈନ୍ୟ ପଛକରି ରାଜା ଠିଆହେଲା ଆଗେ ।

ଅଷ୍ଟମଲ୍ଲ ଉପରକୁ ବାଣ ଦେଲା ଗୁଡ଼
ଉପହାସ କଲେ ଶୂନ୍ୟଶରୀ ଦେଇ ଉଡ଼ ।
ଜରାସନ୍ଧ ବୋଇଲା ଏ ଅପୂର୍ବ ବୃତ୍ତାନ୍ତ
କେବଣ ବିଧାତା ଆହେ। ଗଢ଼ିଲା ଏହାନ୍ତ ।
ଏପରି ଲୋକ ଜଣେ ମୋ ଦେଖିବାର ନାହିଁ
ସଂସାରରୁ ଭିନ୍ନରୂପ ବହିଛନ୍ତି ଏହି ।
କେମନ୍ତେ ଜାଣିମା ଏହୁ ଉପୁଜିଲେ କାହିଁ
ଦେଖିବା ଗୁଡ଼ ମୋହର କର୍ଣ୍ଣେ ଶୁଣାନାହିଁ ।
ଅପାର ଦୁଷ୍ଟ ତ ପୂର୍ବେ ହୋଇଥିଲେ ଜାତ
ଦେଖାଶୁଣା ନାହିଁ କାହିଁ ଏସନ ସଂଜାତ
ହସ୍ତୀ ଘୋଡ଼ା ଷଣ୍ଢ଼ାସୁର ଧେନୁକା ଶକଟା
ଜାମଳା ବୃଷ ଅପୂର୍ବ ଭୟଙ୍କର ଗୋଟା ।
ଛପନ କୋଟିଙ୍କ ଛଡ଼ା ଅପୂର୍ବ ଏ ଜୀବ
କାହିଁ ଜାତ ହୋଇଲେ ଏ ରୂପ ଅସମ୍ଭବ ।
ନବଖଣ୍ଡ ମଧ୍ୟରୁ ତ ବାହାର ଏ କାୟା
ଈଶ୍ୱରମାୟାଂ ପ୍ରାୟେକ ଲାଗୁଛି ଏ ମାୟା ।
ଶାର୍ଦ୍ଦୂଳ ଗୋଟିଏ ଅଛି ଏହାଙ୍କର ପାଶେ
ଶ୍ୱାନମୁଣ୍ଡ ଗୋଟାଏତ ଲାଗିଅଛି ମୁଖେ ।
ଏହାଙ୍କର ପାଖେ ପୁଣି ପାଞ୍ଚ ବୃଷ ଖଞ୍ଜା
ଏସନ ପ୍ରପଞ୍ଚ ରୂପେ ନାହିଁ କେହି ପ୍ରଜା ।
ଆଠଗୋଟି ସେନାଏ ଯେ ସୈନ୍ୟ ପଛକରି
ଯୁଦ୍ଧ କରି ଆସୁଛନ୍ତି କରେ ଶସ୍ତ୍ର ଧରି ।
ଏ ମାଲକ୍ଷଣ ଜୀବ ମୁଁ ସଂଗ୍ରାମେ କ ମାରି
କ ପରୁରୁଷ ପାଇବ ସଙ୍ଗେ ଯୁଦ୍ଧ କରି ।
ଏ ଘୋର ସ୍ଥାନ ସଂଗ୍ରାମ କରି ମୋର ଭୂଲେ
ପର୍ବତକୁ ଟେକବେ କ ପିମ୍ପୁଡ଼ି ମିଳଲେ ।
ପ୍ରାଣେ ନ ମାରି ଜୀଅନ୍ତା ନେବା ଏହା ଧରି
ନଗରେ ରଖିବା ନେଇ ଯତ୍ନରେ ଯତ୍ନକରି
ଦେଖିବାକୁ ଶ୍ରଦ୍ଧା ଜାଣ ଏସନକ ଜୀବ
ରାଜ୍ୟେ ଥିଲେ ଲୋଡ଼ା ରୂପ ଅରୂପ ହିଁ ଜୀବ
ଅଷ୍ଟମଲ୍ଲଙ୍କୁ ସାକ୍ଷାତ କରି ଚତୁର୍ଦ୍ଦିଁ ଯାଇ
ଉତ୍ତମରୂପେକ ରାଜା ଆରୋହୀ ଅଛଇ ।
ମନ୍ତ୍ରୀଜ ବୋଲେ କେମନ୍ତ କରି ଏହା ବୁଝ
ଏ ଘୋର ଜୀବଙ୍କ ସଙ୍ଗେ କରିବା କ ଯୁଝ
ରଜ୍ଜୁରେ ବନ୍ଧନ କରି ନେବା ସବୁ ଧରି
ଯତ୍ନ କରିଣ ରଖିବା ଯନ୍ତ୍ର ମଧ୍ୟେ ଭରି ।

ଜରାସନ୍ଧ କହିଲା ଯେ ଏସନକ ବାଣୀ
କରଧରି କହନ୍ତି ଯେ ମନ୍ତ୍ରୀ ଚୂଡ଼ାମଣି ।
ଗୁରୁ ବୋଇଲେ ରେ ବାବୁ ଶୁଣ ନରନାହା
ଏ କଥା ଗୁପତ କେହି ନ ଜାଣନ୍ତି ଏହା ।
ବ୍ରହ୍ମାଙ୍କର ଶାପେ ପୂର୍ବେ କାମଦେବ ସ୍ୱାମୀ
ଅର୍ଦ୍ଧାଙ୍ଗ ହୋଇ ଜନ୍ମିଲା ଦୈତ୍ୟ କାଳନେମି
କାମଦେବର ଭରସା ଅଟେ ରତିଦେବୀ
କହୁଚ ରୋଦନ କଲା ପିତା ପାଦ ସେବି ।
ଦୁହିତା ବିକଳ ଦେଖି ଧାତା କଲେ ଦୟା
ଏକା କାମଦେବକୁ ସେ କଲେ ବେନି କାୟା
ଅନଙ୍ଗ ଅନୁରୂପ ସେ ଅଙ୍ଗୁ ଜାତ କଲେ
ତେଣୁ ବିଧାତା ମକରଧ୍ୱଜ ନାମ ଦେଲେ ।
ପ୍ରଥମ ଅଙ୍ଗ ତାହାର କାଳନେମି ହେଲା
ନାରାୟଣ ସଙ୍ଗେ ଯୁଦ୍ଧକରି ସେହୁ ମଲା
ଦ୍ୱିତୀୟ ଜନ୍ମେ ସେ କଂସରୂପେ ଅବତରି
ଯଦୁ ଭୋଜବଂଶର ସେ ଅଟେ ଅଧିକାରୀ ।
ମଥୁରାର ରାଜା ଉଗ୍ରସେନ ତାର ପିତା
କପଟେ ଦୁର୍ମିଳ ଦୈତ୍ୟ ହରିଲା ତା ମାତା
କାମଦେବ ଅବତାରେ ଯେ ଆୟୁଧ ଥିଲା
ଦୁଇଭାଗ ଅନୁକ୍ରମେ ପ୍ରାପତ ହୋଇଲା ।
ଜାଣିଲେ ସେ କାଳନେମି କଂସରୂପ ହେଲେ
ପ୍ରାଣର ଶାଖା ହୋଇଣ କଂସକୁ ଖଟିଲେ ।
ରଥ ଚକମାନ ହେଲା ଶକଟ ଅସୁର
ମହାପ୍ରତାପୀ ଅଟଇ ତୃଣାବର୍ତ୍ତ ବୀର ।
ପୁଷ୍ପଧନୁ ହେଲା ବ୍ୟୋମା ଅସୁର ଯେ ତହିଁ
ରଥର ବାଜୀ ଏଥିରେ କେଶୀ ନାମ ବହି ।
ସାରଥି ଯେ ହୋଇଥିଲା ହେଲା ବକାସୁର
ଜାମଳାନାମ ବହିଲା ତାର ରଥବର ।
କାମଦେବର ଆସନ ଥିଲା ଯେ ରଥରେ
ସେ ଜାଣ ଅରିଷ୍ଟ ନାମ ଅସୁର ଏଥିରେ ।
ହସ୍ତରେ ଥିଲା ତାଙ୍କର ଯେଉଁ ଫୁଲଶର
ମୁଷ୍ଟିକ ବୀର ନାମ ଯେ ହୋଇଲା ତାହାର
ଚଞ୍ଚଳଅଟେ ତାଙ୍କର ସୁହିଁବାର ଗତ
ଚାଣୁର ନାମ ତାହାର ସଂସାରେ ବିଖ୍ୟାତ ।
ଏମନ୍ତେ ସେ ଅଷ୍ଟମଲ୍ଲେ କଂସ ପ୍ରାଣଶାଖା
ଅଷ୍ଟମଲ୍ଲଙ୍କ ଉପରେ କେଶୀ ଅଗ୍ରଲେଖା ।

କାମଦେବ ଜାତହେଲ କଂସାସୁର ରୂପେ
ସର୍ବଶାଖା ଅଷ୍ଟମଲ୍ଲ ତାହାର ସମୀପେ ।
ସାମାନ୍ୟ ନୁହନ୍ତି ସେହି ରଣେ ବଡ଼ଗାଢ଼
ପ୍ରାଣକୁ ତୋ ଆଶା ଥିଲେ କୋପମନ ଗୁଢ଼ ।
ସେ କାଳନେମି ହିରଣ ଦେବ କରେ ବଶ
ତା ତୁଲେ ବାଦକଲେ ତୁ ପାଇବୁ ଅପଯଶ ।
ଏହାଙ୍କର ତୁଲେ ଯେବେ ସଂଗ୍ରାମ କରିବୁ
ରାଜ୍ୟ ତୋର ନାଶ ଯିବ ଆପଣେ ମରିବୁ ।
କୋଟିଏ ଇନ୍ଦ୍ର ଆସିବେ ଯେବେ ଦେହ ବହି
ଏହାଙ୍କୁ ଜିଣନ୍ତା ନାହିଁ ଚରାଚର ମହି ।
ପ୍ରତ୍ୟକ୍ଷ କଥା ଏ ଭୁହି ବଚୁରଣ ବୁଝ
ମନ୍ତ୍ରୀର କହିବା କଥା ମାନ ମନେ ହେଜ ।
କଂସାସୁର କୋପକଲେ ସମସ୍ତେ ମରିବା
ଗୁଢ଼ ଦୁଷ୍ଟବୁଦ୍ଧି ଗୁଳ ସନ୍ଧାନ କରିବା ।
ଜରାସନ୍ଧ ବୋଲେ ଯୁଦ୍ଧ କରିବା ନା ଆଗେ
ଉଦ୍ୟମ କରୁ ଯେବେଟି ଜଣିପାରି ଯୋଗେ ।
ଶାସ୍ତ୍ରେ ପୁଣି ବୋଲିଛନ୍ତି ଲେଖିଛନ୍ତି ଯାହା
ହେବ କି ନହେବ ଆଗ ବୁଝିବାନା ତାହା ।
ନ ପାରିଲେ ପଛେ ଆମ୍ଭେ ସନ୍ଧାନ କରିବା
କଳସାର୍ଯ୍ୟ ଥାଉଁ କପା ଆଗଙ୍କୁ ଡରିବା ।
ଜରା ବୋଲେ ନ କରିବା ଯେବେ ରଣଦୀକ୍ଷା
ପରସେବକ ହୋଇ କି ସୁଖ ମଧ୍ୟେ ଲେଖା ।
ରୋଗୀ ହୋଇଣ ଆହାର ନ କଲେ କି ପୁଷ୍ଟି
ବ୍ରାହ୍ମଣ ହୋଇ ଦାନରେ ନୋହେ ଯେବେ ତୁଷ୍ଟି
ମାଗନ୍ତା ଜନ ଯଦ୍ୟପି ଦାନକୁ ନଦଇ
ଥାଉଁ ଥାଉଁ ଯେଉଁଲୋକ ଦାନ ନ ଦଅଇ ।
ଆପେ ଅର୍ଜି ଯେବେ ଆନେକରେ ତାହା ନାଶ
ଇହଲୋକେ ଦୁଃଖୀ ପରଲୋକେ ନର୍କେ ବାସ
ଏମନ୍ତ କହନ୍ତେ ମନ୍ତ୍ରୀ ମଉନ ହୋଇଲା
ତୁମ୍ଭ ସୁଖେ ଯାହା ଇଚ୍ଛା କର ହୋ ବୋଇଲା ।
ଜରାସନ୍ଧ ବୋଲେ ମୁହିଁ ରାଜା ଶିରୋମଣି
ଅଙ୍ଗବଳ ଅଛନ୍ତି ମୋ ଚଉଦ ଅକ୍ଷଉଣୀ ।
ଛତ୍ରିଶୋଇ ସହସ୍ର ରାଜା ଅଛୁ ବନ୍ଦୀକରି
ସବୁଙ୍କୁହିଁ ରଖିଅଛୁ ବନ୍ଦୀଘରେ ଭରି ।
ଏଣୁ ବଡ଼ ପ୍ରତିଜ୍ଞା ମୋ ବ୍ୟର୍ଥ ହେବ ପୁଣି
ମୋ ସ୍ତମ୍ଭରୁ କେ ବରତିବ ଦେହଘେନ ।

ଯେବେ ଦେହ ଘେନ ସାହା ହେବେ ତ୍ରିପୁରାରି
କୋଟିଇନ୍ଦ୍ର ହୋଇଲେ ମୁଁ ପକାଇବ ମାରି ।
ଏତେ ବୋଲି ଜରାସନ୍ଧ ଉଠିଲା ଗରଜ
ତତ୍‌କ୍ଷଣ ଯାଦବବଳ ପଳାଇଲେ ଭଜ ।
ସାତ୍ୟକ ଉଦ୍ଧବ ଆଦି ବୀର ହେଲେ ଆଗ
ଧାଡ଼କାରେ ଧାଇଁଲେ ସେ ହୋଇ ବେଗବେଗ
ବାମରେ ଧନୁ ଡାହାଣେ ତୀକ୍ଷ୍ଣ ଶର ଧରି
ଅଂଗୁଳି ଭିତରେ ବାନ୍ଧି ତାହା ବେଗକରି
କାଳାନ୍ତକ ରୂପ ଗୋଟା ଧରି ଛନଜଣ
ଆଗଭର ହୋଇ ବେଗେ ବିନ୍ଧିଲେ ସେ ବାଣ
ଦେଖିକରି ଜରାସନ୍ଧ କ୍ରୋଧଭର ହୋଇ
ରଥର ଉପରୁ ବୀର ପଡ଼ିଲାକ ଡେଇଁ ।
ଧନୁକୁ ପକାଇ ରଥେ ଗଦା ଧରି କରେ
ନର୍ଘାତ ଶବଦ କରି ପିଟେ ରୋଷଭରେ ।
ଗଦାଘାତ ପଡ଼େ ଯାଇଁ ସାତ୍ୟକ ଉପର
ଉଦ୍ଧବ ଅକ୍ରୂର ଦୁହେଁ ଥିଲେ ତା ସଙ୍ଗର
ପୁଣି ଗଦା ଅନ୍ତରାଳେ ଧରି ବୁଲାଇଲା
ଉଦ୍ଧବ ଉପରେ ନେଇ ସେ ଗଦା ପିଟିଲା ।
ଭୈରବ ମୂରତି ଧରି ଜରା ବେଗେ ଧାଇଁ
ଅକ୍ରୂର ଉପରେ ଗଦା ପିଟିଲାକ ନେଇ ।
ଏକା ନିଶ୍ୱାସକେ ଛନବଳ ସେ ମାଇଲା
ଛନଜଣଙ୍କର ରଥ ମସିଗୁଣ୍ଡା କଲା ।
ସେହି ଛନଜଣ ବୀର ବିରଥୀ ହୋଇଲେ
ସାରଥି ଆବର ନେଇରଥ ସାଜଦେଲେ ।
ତାହାଙ୍କ ପଛେ ସୁନାସ ବୀର ରହିଥିଲା
ଗୁଣକୁ ଟଙ୍କାରି ରଥ ଗୋଟା ଧୂଆଇଲା ।
ରେ ରେ କାର କରି ବୀର ରଥକୁ ଠେଲିଲା
ପାଞ୍ଚସହସ୍ର ବାଣ ସେ ବେଗେଣ ବିନ୍ଧିଲା ।
ଦେଖିଣ ରାଜା ମଗଧପତି ବେଗେ ଯାଇଁ
ଗଦାଘାତେ ଶତମାନ ଦେଲାକ ଉଡ଼ାଇ ।
ମହାକ୍ରୋଧେ ଜରାସନ୍ଧ ଧାଏଁ ଉଦବେଗେ
ସୁନାସ ବୀରର ଭେଟ ହେଲା ଯାଇଁ ଆଗେ
ଆକର୍ଷି ଧଇଲା ତାର ରଥ ହେନ କରେ
ଫିଙ୍ଗିଦେଲା ରଥ ଯାଇଁ ପଡ଼ିଲାକ ଦୂରେ ।
ବେଳୁବେଳ ସଂଗ୍ରାମ ଯେ ହେଲା ରୋଷଭରି
ପଦାତି ତୁଲେ ପଦାତି ସୈନ୍ୟ ଯୁଦ୍ଧ କରି ।

ପଶିଯାଇ ଘୋର ଯୁଦ୍ଧ କଲେ ବେଣିବଳ
ଶିର ଛିଣ୍ଡି ମୁଣ୍ଡ କାର ପଡ଼େ ଯାଇଁ ତଳ ।
ଶକତି କୋଦଣ୍ଡ ଦଣ୍ଡ ଗଦା ମୁଦ୍ଗର
କୃପାଣ ଯେ ଅସିପତ୍ର ତୀକ୍ଷ୍ଣମୁନା ଶର ।
ଯଷ୍ଟି ପ୍ରହାର କରନ୍ତି କୃନ୍ତ ଯେ ସାବେଳ
ଲୌହ କମାଣ କେ ମାରେ ବଜ୍ରସେଲ୍ହା ଗୋଳ
ଅପ୍ରମିତ ଶବଦ ଯେ ଶୁଭେ ଗୁରୁ ଟାଣ
ବର୍ଷନ୍ତି ହାବେଳ ଆଉ ତୀକ୍ଷ୍ଣମୁନା ବାଣ ।
ଏକକୁ ଆରେକ ଯାନ୍ତି ଆଗଭର ହୋଇ
ନାନା ଶସ୍ତ୍ରମାନ ଧରି ପ୍ରହାରନ୍ତି ନେଇ ।
ରଣମତ ଶବଦ ଯେ ଶୁଭେ ଘୋର ଧ୍ୱନ
ପାଦଭରେ ଦଳଦଳ କମ୍ପଇ ମେଦିନୀ ।
କକଡ଼ାମାସରେ ଯେସନ୍ତେ ପଡ଼େ ଜଳଧାର
ତେସନ ସଂଜାତ ହୋଇ ପଡ଼ୁଅଛି ଶର ।
ନାସତ ଘାତେ ଉଡ଼ାଉ ଗଗନରେ ରଜ
ରକତେ ପାଦେ କର୍ଦ୍ଦମ ହୋଇଲା ମସ୍ତଦେଶ ।
ଭାଙ୍ଗିଲେକ ରଥଗଜ ପଦାତିକ ଘୋଡ଼ା
କୋଟିକୋଟି ହୋଇ ତହିଁ ପଡ଼ିଲେକ ମଡ଼ା
ମୁଣ୍ଡ ଛିଣ୍ଡିଗଲା କାର ଭାଙ୍ଗିଗଲା ଅଙ୍ଗ
କାହାର ଚରଣ ଛିଡ଼େ କାହା ପାଦ ଭଙ୍ଗ ।
ତୀକ୍ଷ୍ଣମୁନା ଶରେ ଛିଡ଼େ କାହା ପାଦତୂନା
ମୋହ ହୋଇ ପଡ଼ିଛନ୍ତି ରଣେ କେତେସେନା ।
ଗଦା ପଡ଼ି କେତେଜନ ଶିର ହୁଏ ଚୂର
ଗଦାଘାତ ପାଇ ପଡ଼େ କେ ଭୂମି ଉପର ।
ହସ୍ତୀପରେ ପ୍ରହାରନ୍ତି କେହୁ ନେଇ ମୁଷ୍ଟି
କୁମ୍ଭସ୍ଥଳ ପିଟନ୍ତେ କେ ପଡ଼େ ମସ୍ତଳେଟି ।
କୁତୂହଳେ କରନ୍ତି କେ ଯୁଦ୍ଧ ରସ କେଳି
ଚଣ୍ଡୀ ଚାମୁଣ୍ଡା ବାସେଲୀ ହୋଇ ଏକମେଳି ।
ପିଶାଚ ଭୈରବ ଭୂତ ପ୍ରେତଗଣ ମେଳେ
ରକତ ମାଂସ ଭୁଞ୍ଜନ୍ତି ରହି କୁତୂହଳେ ।
କବନ୍ଧ ନାଚନ୍ତି କୋଟି ୨ ରଣରଙ୍ଗେ
ପଡ଼ିଲେ ଅନେକ ସୈନ୍ୟ ରଥ ଗଜ ସଙ୍ଗେ
କାହାର ଗୋଡ଼ ଛିଡ଼ିଛି ହୋଇଛି ଘାଲୁଆ
ତ୍ରାଣ ଯାଆନ୍ତେ କାହାର ବିକଳିତ କାୟା ।
ଜରାସନ୍ଧ ମହାବଳୀ ଯୁଦ୍ଧତେ ଅଟଳ
ଛୟାଣେଇଁ ସସୁରଜା ପାଦେ ଯେ ଖଟାଇ ।

ଯାଦବ ବଳମାନଙ୍କୁ ଲାଗେ ବଡ଼ ଶଙ୍କା
ଭାଙ୍ଗିଲେ ବହୁତ ମଲେ ହୋଇଣ ଚାଟକା ।
ହାସିଲେ ଯାଦବ ବଳ ଜରା ପାଦଘାତେ
କେହୁ ନଶତ ହୋଇଲେ ଧରି ତୃଣଦନ୍ତେ ।
କେଶବାସ ଅସମ୍ଭାଳ ପଛକୁ ନ ଚାହିଁ
ମାଡ଼ଘାଏ ଘୁମାଇଣ ପଡ଼ୁଛନ୍ତି ତହିଁ ।
ନଶତ ହୋଇଣ କେହୁ ପଶନ୍ତି ଶରଣ
ମୁଖେ ହସ୍ତଭରି ବୋଲେ ରଖ ମୋର ପ୍ରାଣ
କୋପେ ଜରାସନ୍ଧ ସୈନ ମାରନ୍ତି ଗୋଡ଼ାଇ
ପ୍ରାଣବକଳେ ଯାଦବେ ଯାଆନ୍ତି ପଳାଇ ।
ଅଷ୍ଟମଲ୍ଲେ ଦେଖିଥିଲେ ରହିଣ ସମର
ଯାଦବେ ଭାଙ୍ଗନ୍ତେ ଦେଖି ହେଲେ ଆଗୁସାର
ରହରହ ବୋଲି ଜରା ସଂଗ୍ରାମର ମଧ୍ୟେ
ଜାଣିଣ ସେ ଓଗାଳନ୍ତି ପଶି ଘୋର ଯୁଦ୍ଧେ ।
ଛାଗଳ ପଲରେ ବ୍ୟାଘ୍ର ପଶେ ଯେସନ୍ତେ ପେଲି
ସକଳୁ ବ୍ୟଗ୍ରେ ଧାମନ୍ତି ମାରି ମାରି ବୋଲି ।
ଧାମନ୍ତି ହସ୍ତରେ ଶସ୍ତ୍ର ଧରି ଅଷ୍ଟମଲ୍ଲ
ମଞ୍ଜାର ଧାମନ୍ତି ଯେସନ୍ତେ ଦେଖି ମୂଷାପଲ ।
ମାର ମାର ବୋଲିଣ ସେ ଗଲେ ପଶିଯାଇ
ହସ୍ତୀଙ୍କ ଉପରେ ହସ୍ତୀ କଚାଡ଼ନ୍ତି ନେଇ ।
ଅଶ୍ୱଙ୍କୁ ଧରି ଅଶ୍ୱଙ୍କ ପରେ କଚାଡ଼ନ୍ତି
ରଥ ଉପରେ ରଥକୁ କଚାଡ଼ି ଭାଙ୍ଗନ୍ତି ।
ଜରାସନ୍ଧ ସୈନ୍ୟ ଯୁଦ୍ଧ କରୁଛନ୍ତି ରହି
ଟଳେ ନ ଘୁଞ୍ଚନ୍ତି ଶସ୍ତ୍ର ମାରନ୍ତି କଠାଇ ।
ଦନ୍ତ ଧରିଣ ପିଙ୍ଗନ୍ତି ଗଜ ମଦମତ୍ତ
ନିର୍ଦ୍ଦୟ ସେ ଅଷ୍ଟମଲ୍ଲେ ମାରନ୍ତି ବହୁତ ।
ଜରାସନ୍ଧର ସୈନ୍ୟକୁ ପକାଇଲେ ମନ୍ଥି
ଗୋଡ଼ାଇ ମାରନ୍ତେ ତାଙ୍କୁ କେହୁ ନ ରଖନ୍ତି
ଅଷ୍ଟମଲ୍ଲ ଦେଖି ସୈନ୍ୟ ଭୟେ ପଳାଇଲେ
ଜରାସନ୍ଧ ରଜା ପାଦେ ଶରଣ ପଶିଲେ ।
ଗୋଡ଼ାଇଣ ଅଷ୍ଟମଲ୍ଲେ ମାରନ୍ତି ଛେଚୁଗୁଡ଼ି
ଗଦା ମୁଦ୍ଗର ଧରି ପିଟନ୍ତି ସେ ଗାଢ଼େ ।
ଦେଖି ଜରାସନ୍ଧ ରଜା ହେଲା କୋପମୂର୍ତ୍ତି
ନିର୍ଦ୍ଧୂମ ଅନଳ ଜାଣି ନୟନର ଜ୍ୟୋତି ।
ଅଷ୍ଟମଲ୍ଲ ମୁଖ ଚାହିଁ ବଚନ ବୋଇଲା
ନଷ୍ଟପ୍ର କାଳ ତୁମ୍ଭର ସମାପତ ହେଲା ।

ମୋ ମହିମା କି ଶୁଣିନ୍ନ ନାହିଁରେ ତୁମ୍ଭର
କେଉଁ ବଗଘାଳ ଜାଣି ନାହିଁ ମୋର ବଳ ।
ଅବସ୍ଥରେ ତୁମ୍ଭେ ଆସି ସର୍ବନାଶ କଲ
ଆଜ ନବର୍ତ୍ତିଁ ସଂପୃତ୍ତେ ନଷ୍ଟେ ନାଶଗଲ ।
ତୁମ୍ଭଙ୍କୁ ମାଇଲେ ମୋର ନାହିଁ କିଛି ଯଶ
ସ୍ୱାମାମାନେ କରିବେ ନା ଶୁଣି ଉପହାସ ।
ସପ୍ତଦ୍ୱୀପ ମଧ୍ୟେ ମୁହିଁ ଅଟଇ ଜାରେଣି
ରଜାଧିରାଜେଶ୍ୱର ମୁଁ ରାଜଶିରୋମଣି ।
ଅପ୍ରଛନ୍ନ ଗୀବଙ୍କୁରେ ମାଇଲେ କି ଯଶ
ଯଶ ପଉରୁଷ ମୋର ଯିବ ସବୁ ନାଶ ।
ସମାନ ଶତ୍ରୁଙ୍କ ସଙ୍ଗେ ଯୁଦ୍ଧ ଯେବେ କରି
ଲଭଦାନ ନାହିଁ ତହିଁ ଯୁଦ୍ଧେ ଯେବେ ହାରି ।
କେଶୀ ବୋଇଲ୍ଲ କେତେ ତୁ କହୁ ବଡ଼ପଣ
ଆପେ କହିଲେ ସେକଥା ହୁଏ ଅକାରଣ ।
ଆପଣାର ବଳ ଗୁଣ ଦାନ ଧନ କଥା
ପରମୁଖେ ଶୁଣିଲେ ଯେ ପଉରୁଷ କଥା ।
ଇହ ପରଲୋକ ଜଣିପ ରେ ଭଲେ ତେବେ
ବିଶ୍ୱାସଘାତକ ଲୋକ ବନ୍ଧକରେ ଯେବେ ।
ପଳାନ୍ତାଲୋକ ଗୋଡ଼ାଇ ମାରି କରୁ ଟାଣ
ଆଜ ଜାଣିବା ତୋହର କେତେ ବଡ଼ପଣ ।
ତୁ ଯେବେ ବଳବନ୍ତରେ ଜରାସନ୍ଧ ରାଜ୍ୟେ
ଅକାରଣେ ମରିଅଛୁ ସଇନ ଲୁଚ୍ଛଏ ।
ପ୍ରଥମେ ସମର ତୁ ନ କଲୁ ଜସପାଇଁ
ସଂଗ୍ରାମ ମଧ୍ୟେ କରୁଛୁ କମ୍ପା ଶବଦାଇ ।
କ୍ଷତ୍ରୀ ହୋଇଣ ସଂଗ୍ରାମେ କରେ ଯେବେ ଛନ୍ଦ
ମନ୍ତ୍ରୀ ହୋଇଣ ରାଜାରେ ଚିନ୍ତେ ଯେବେ ମନ୍ଦ
ଶୁଚିମନ୍ତ ହୋଇ ଯେବେ ଭୁଞ୍ଜେ ମତ୍ସ୍ୟମାଂସ
ରଉରବ ନରକେ ସେ ପଡ଼ଇ ଅବଶ୍ୟ ।
କେଶୀର ମୁଖରୁ ବାଣୀ ଏସନକ ଶୁଣି
କୋପେ କାଳାନଳ ହେଲ ବୀର ଶିରୋମଣି ।
ବୋଇଲ ତୁ କହିଲୁ ଯା ନୁହଇ ଏ ମିଛ
ଅପ୍ରଛନ୍ନ ଗୀବମୁଖେ ହେଲା ସବୁ ତୁଚ୍ଛ ।
କହିଣ କୋପେ ବିନ୍ଧିଲା ବାଣ କୋଟି କୋଟି
ଶ୍ରାବଣ ମାସରେ ଯେହ୍ନେ ଜଳଧାର ବୃଷ୍ଟି ।
ଗୁଣରେ ବସାଇ ବାଣ ବିନ୍ଧେ ପୁଣି ପୁଣି
ବରଷଇ ସେ ପ୍ରଳୟକାଳ ମେଘ ଜାଣି ।

ଅନ୍ଧାରେ ଯେସନେ ଜକୁଜୁଳା ପୋକ ଦିଶେ
ତେସନକ ବାଣଯାକ ଆକାଶରୁ ଖସେ ।
ବାଣ ଆସନ୍ତେ ଦେଖିଲା ଦୂରେ କେଶୀ ଥାଇଁ
କୁଳୁ ପାଞ୍ଚିଲା ସେ ବୀର ଆଗଭର ହୋଇ ।
ଜରାସନ୍ଧ ବାଣ ଆସି କେଶିହୃଦେ ବାଜି
ମସିଗୁଣ୍ଡା ହୋଇଗଲା ଜର୍ଣ୍ଣ ହେଲା ଗଞ୍ଜି ।
ଦେଖିଣ ଜରାସନ୍ଧକୁ ନ ସ୍ଫୁରଇ କିଛି
ଭାଳଇ କେଉଁ ଦେବତା ଜାତ ହୋଇଅଛି
ଷଣକେ ମୁଁ ସପ୍ତଦ୍ୱୀପା ପୃଥ୍ୱୀ ପାରେ ଜିଣି
ମହାମହା ଶସ୍ତ୍ରମାନ ପ୍ରହାରିଲି ଆଣି ।
ଏତେକଡ଼ ଶସ୍ତ୍ର ମୋର ହୋଇଲାକ ଭଙ୍ଗ
ବଜ୍ରହୁଁ କଠିନ ଅଟେ ଏହାର ଯେ ଅଙ୍ଗ ।
କେଶି ବୋଲେ ଶୁଣ ତୋର ନାମ ଜରାସନ୍ଧ
ଆନ ବାଣ ଥିଲେ ମୋତେ ମନ୍ଦିବେଗେ ବିନ୍ଧି
ଏମନ୍ତ ସଂଗ୍ରାମେ ଜରେ ମୋତେ ହୁଏ ଜିଣି
ଦେବଶର ଜାଣିଥିଲେ ପ୍ରହାର ତୁ ଆଣି ।
ଜରାସନ୍ଧ ବୋଲେ ଦେବପୂଜା ମୋର ନାହିଁ
ପୂର୍ବେ ତପ କରିନାହିଁ ପାଇବ ମୁଁ କାହିଁ ।
ଏକା ମାଲ ବିନ୍ଧାଣ ମୁଁ କିଛି ଅଛି ଶିଖି
କେଶୀ ବୋଲେ ଯେବେ ଜାଣ ବଳମ୍ବକାହିଁକ
ଶୁଣି ଜରାସନ୍ଧ ଧନୁଶରକୁ ଥୋଇଲା
ବାହାନାଦ କରି କେଶୀ ସମ୍ମୁଖରେ ମିଳିଲା ।
କେଶୀବୋଇଲା ଯେ ଆମ୍ଭେ ଭଲ ହୋଇଥିବୁ
କରଚରଣହିଁ କିଛି ଆମ୍ଭେ ନ ଚାଳିବୁ ।
ତୁମ୍ଭର ଇଚ୍ଛା ଯେମନ୍ତ ପାର ତୁମ୍ଭେ ଲାଗ
ଆମ୍ଭେ ଯେ ତୁମ୍ଭଙ୍କୁ କିଛି ନ ବୋଲିବୁ ଆଗ
ଏମନ୍ତ ପ୍ରକାରେ ଯେବେ ନ ପାରିବ ଜିଣି
କର୍ମ ଆଦରି ରହିବ ବୀର ଶିରୋମଣି ।
ଏହା କହି କେଶୀ ବୀର ତଳେ ହେଲା ଉଭା
ଅନ୍ତବନ୍ତ ତରୁବର ଦିଶେ ଯେହ୍ନେ ଶୋଭା ।
କୋପଭରେ ଜରାସନ୍ଧ ଗୁରୁଚାପ ପାଇ
ବଜ୍ରସମ ବିଧାଏକ ମାଇଲା ନଠାଇ ।
ଶରଦକାଳେ ଯେସନେ ମେଘ ଘଡ଼ଘଡ଼
ଗିରିବର ଉପରେ କି ଗିରିବର ପଡ଼ ।
ପୁଣ ବଜ୍ରସମ ବିଧା ମାରେ କୋପଭରେ
ହୁଂକାରନାଦ କରିଣ ଧରେ ଦୁଇକରେ ।

ଅନେକ ଛନ୍ଦେ ଜାଣଇ ସେହୁ ମାଲବନ୍ଧ
ଛତିଶ ବନ୍ଧାଣ ପୁଣି ଚଉଷଠି ବନ୍ଧ ।
ଅନେକ ସଂଗ୍ରାମ କଲା ଜୟ ମହାବଳୀ
ଖିଳେ ମାତ୍ର କେଶୀକି ସେ ନ ପାରିଲା ସ୍ଖଳି
ବୃଷ ଉପରକୁ ଯେସନ୍ତେ ଉଠଇ ମର୍କଟ
ଶ୍ରମ ପାଇ ଜରାସନ୍ଧ ଶୁଖେ କଣ୍ଠତଟ ।
ଶରୀରୁ ଝାଳ ଶ୍ରମଝାଳ ବହେ ନିରନ୍ତର
ମହାତେଜରେ ନିଶ୍ୱାସ ଛାଡ଼ଇ ପ୍ରଖର ।
ଅପାର ପ୍ରକାରେ ତାକୁ ନ ପାରିଲା ଜିଣି
କରଯୋଡ଼ି କହେ ଜରାସନ୍ଧ ନୃପମଣି ।
କେବଣ ଦେବତା ତୁମ୍ଭେ କପଟେ ଅଇଲ
ରାଜାଙ୍କର ଦର୍ପ ଗଞ୍ଜି ଉଗ୍ରତେଜ କଲ ।
ମୋହଭଳି ରାଜା ଜିଣି ନ ପାରିଲ୍ଲି ବଳେ
ଆଜ କିଏ ଜିଣିବ ବା ଏ ମହୀମଣ୍ଡଳେ ।
ଏତେବୋଲି ଭିନ୍ନ ହୋଇ ନୃପତି ରହିଲା
ଆକର୍ଷିଣ କେଶୀ ଜରାସନ୍ଧକୁ ଧଇଲା ।
ଯେସନେ ବୈରକୁ ଶାସ୍ତି ଦିଏ କଣ୍ଠୀଆଳ
କଂସ ସ୍ଥାମୁକୁ ଘେନଗଲା ମହାବଳ ।
ଖଣ୍ଡେଦୂର ଯାଇଁ ସେହୁ ରହିଲା ନିକଟେ
ବାମକରେ କେଶ ତାର ଧରିଅଛି ଆଣ୍ଟେ ।
ଦେଖି କଂସାସୁର ତାକୁ ନିରେଖି ଚାହିଁଲା
ସ୍ଥାମୁକୁ ଆଣ ବୋଲି ଶ୍ରୀମୁଖେ ଆଜ୍ଞାଦେଲା ।
କଂସ ବୋଲେ କେଶୀ ଏହୁ କାହିଁର ନରେନ୍ଦ୍ର
କେଶୀ ବୋଇଲା ଏ ଘର ରାଜା ଜରାସନ୍ଧ ।
ମହାଘୋର ସଂଗ୍ରାମ ଏ ଆମ୍ଭ ସଙ୍ଗେ କଲା
ପାଞ୍ଚ ଅମାତ୍ୟ ଆଉଁ ଏ ଆପଣ ଯୁଝିଲା ।
ଅତି ଦୁର୍ଦ୍ଧର୍ଷ ଏ ରାଜା ରାଜାଙ୍କ ବଇରୀ
ଆଜ୍ଞା ଦେଲେ ଏହାକୁ ମୁଁ ପକାଇବି ମାରି ।
ନୋହିଲେ ଏହାକୁ ଆମ୍ଭସଙ୍ଗେ ଯିବାଘେନ
ମଥୁରାକଟକେ ବଳଦେବା କାତ୍ୟାୟନୀ ।
ଏହାଯୋଗୁ ରାଜାଙ୍କର ରାଜ୍ୟ ନାଶଗଲା
ଅନେକ ରାଜାଙ୍କୁ ଏହୁ କପଟେ ମାଇଲା ।
ଯାହା ସେ ଅର୍ଜିଲା ତାହା ଆପେ ଭୋଗକରୁ
ଦ୍ରୋହକର୍ମକଲା ବନ୍ଧିପ୍ରଭୁ ଏବେ ମରୁ ।
କଂସରାଜା ବୋଲେ ଯାକୁ ରଥତଳେ ବାନ୍ଧ
ଆମ୍ଭ ପଦତଳେ ଥାଉ ଏହୁ ଜରାସନ୍ଧ ।

ଆଜ୍ଞା ପ୍ରମାଣରେ କେଶୀ ଧାଡିକାରେ ଗଲା
ରଥତଳେ ନେଇ ଜରାସନ୍ଧକୁ ବାନ୍ଧିଲା ।
ମଗଧ ଦେଶର ସୈନ୍ୟ ପଳାଇଲେ ଡରେ
କଂସ ଆଜ୍ଞାରେ ରହିଲେ ଯାଇଁ ଯେଝାଘରେ
କେଶୀ ବୋଇଲାରେ ତୁମ୍ଭେ କେଣିକି ନ ଯାଅ
ଆମ୍ଭରାଜ୍ୟ ହୋଇଲାରେ ସୁସ୍ଥ ହୋଇଥାଅ ।
ଏତେକହି ଯମଦଣ୍ଡ ଦେଇକି ଚଳାଇ
ଷାଠିଏ ଯୋଜନେ ସୈନ୍ୟ ରହିଲେକ ଯାଇଁ
ସରସ୍ୱତୀ ଝରେ ଗନ୍ଧମାଦନ ପର୍ବତ
ଅଷ୍ଟବସୁ ଗନ୍ଧର୍ବେ ଯେ ହେଲେ ତହିଁ ଜାତ ।
ସୁଗନ୍ଧ ନାମେ ଯେ ବନ ସେ ପର୍ବତତଳେ
ବିଦ୍ୟାଧରମାନଙ୍କର କ୍ରୀଡ଼ା ରହିକାଳେ ।
ଅପୂର୍ବ ପଦାର୍ଥ ତହିଁ ପଟାନ୍ତର ନାହିଁ
ନାନାବିଧ ବିଦ୍ୟା ଔଷଧି ଅଛି ତହିଁ ରହି ।
ଲୋମଶ ମହାଋଷିଙ୍କ ଅଟଇ ଆଶ୍ରମ
ଲିଙ୍ଗେକ ଅଛି ଗନ୍ଧର୍ବେଶ୍ୱର ତାଙ୍କ ନାମ ।
ପର୍ବତରୁ ଝରି ଶିରେ ପଡ଼େ ପୁଷ୍ପଜଳ
ଅମୃତ ସମାନ ସ୍ୱାଦୁ ସୁଗନ୍ଧ ଶୀତଳ ।
ସେହୁ ପର୍ବତକୁ କଂସ ବେଗେ ଗଲା ଉଠି
ନମସ୍କାର କଲା ଋଷି ପାଦେ ଦେଇ ଦୃଷ୍ଟି ।
ଚରଣ ପଖାଳି ଘେନ ସୁବାସିତ ବାରି
ନିସ୍ତରିଲି ବୋଲି ଶିରେ ଲଗାଇଲା କରି ।
ଅଷ୍ଟମଲ୍ଲ ଆଦିକରି ସବୁ ଯଦୁବାରେ
ମୁନିଙ୍କି ଯେ ନମସ୍କାର କଲେ ଯେ ଯାହାରେ
ଅନେକ ପୂଜା କଲା ସେ କଂସ ନରପତି
ମହାମନ୍ତ୍ର ପଢ଼ି ମୁନି କଲ୍ୟାଣ କରନ୍ତି ।
କପାଳେ ବିଭୂତି ଦେଲେ ଝୁଲିରୁ ସେ କାଢ଼ି
କୃଷ୍ଣାଜିନ ଛାଲ ଦେଲେ ବସିବାକୁ ମାଡ଼ି ।
କନ୍ଦମୂଳ ଆଣି ମୁନି ଆଗେ ଥୁଆଇଲେ
ଆଗ ଉଭା ହୋଇ ମୁନି କୃତାଞ୍ଜଳି ହେଲେ
କଂସ ବୋଇଲଇ ବସିବା ହେଉ ମୁନି ବେଗେ
ହାନିଲାଭ କଥା ହେଲେ କହମୋତେ ତେବେ
ମୁନି ବୋଇଲେ ରାଜା ହେ ତୁମ୍ଭର ପ୍ରସାଦେ
କାହାକୁହିଁ ଡରଭୟ ନାହିଁ ମୋର ହାଦେ ।
ଆଜ କଥାଏ ମାଗିବୁ ରାଜା ଆମ୍ଭେ ଯାହା
ସତ୍ୟକର ଦେବ ତୁମ୍ଭେ ଆମ୍ଭଙ୍କୁ ଯେ ତାହା

କ୍ଷତ୍ରିଙ୍କର ଧର୍ମ ଯିନା ଏସନ ସ୍ୱଭାବ
ହାରିବା ଜିଣିବା ରଣ ପାଇଲେ କରିବ ।
ଶରଣ ପଶିବା ଜନ ନ ମାରିବ ରକ୍ଷି
ବିପ୍ର ଦାନ ମାଗିଲେ ତା ନ କରିବ ଉପେକ୍ଷି ।
କ୍ଷତ୍ରି ହୋଇ ନ କରିବ ଯେବେ ନିଜ କର୍ମ
ଘୋର ନରକେ ପଡ଼ିବ ନାଶ ଯିବ ଧର୍ମ ।
ଆମ୍ଭେ ଋଷିମାନେ ଅଟୁ ବ୍ରହ୍ମାସୁତ ନାଥ
ତୋ ବାହୁବଳେ କାହାକୁ ଆମ୍ଭର ନୋହେ ଭୀତ ।
ଯୁଦ୍ଧ କରିବାକୁ ନୋହୁ ଆମ୍ଭେ ଶସ୍ତ୍ରଧାରୀ
ଦାନେକ ମାଗିବୁ ଦେବୁ ତୁ ନାସ୍ତି ନ କରି
କଂସ ବୋଇଲା ମୁନି ହେ ମାଗ ଯାଚିକାରେ
କେତେ କଥା କହୁଛ ଦେବୁ ତା ସତ୍ତ୍ୱରେ ।
ଯାହା ମାଗିବ ମୁଁ ତାହା ଦେବି ଏହିକ୍ଷଣି
ଏ ମୋହର ସତ୍ୟ ସତ୍ୟ ନିର୍ଦ୍ଧାରି ବାଣୀ ।
ତୁମ୍ଭଭଳି ଋଷି ଯେବେ କଲ ଦାନେ ଇଚ୍ଛା
ଦେବଇଁ ଅବଶ୍ୟ ପୂର୍ଣ୍ଣକରି ମନ ବାଞ୍ଛା ।
ଯଦ୍ୟପି ହେ ମହାମୁନି ଜୀବନ ମାଗିବୁ
ଅବଶ୍ୟ ଶିର କମଳ ଆଜ ଦେବି ସବୁ ।
ମୁନି ବୋଇଲେ ଦେବାକୁ ଅଛୁ ଯେବେ ଶଧ
ଜରାସନ୍ଧ ନୃପତିକ ନ କର ତୁ ବଧ ।
ଦୋଷ ଅପରାଧ କ୍ଷମା କରିବୁ ଏହାର
ବନ୍ଧ ମୁକୁଳାଇ ଛାଡ଼ିଦେଅ ବନ୍ଧଧର ।
ସବୁ ରାଜାଙ୍କ ଉପରେ ଏ ମଉଡ଼ମଣି
ନବଖଣ୍ଡ ମଧ୍ୟରେ କେ ନ ପାରିଲେ ଜିଣି ।
ତୁମ୍ଭେ କାଳନେମି ଜାତ ହେଲ ଭବତଳେ
ଜିଣିଲ ଏ ଜରାସନ୍ଧ ରାଜା ଭୁଜବଳେ ।
ଏ ନବଖଣ୍ଡ ମଧ୍ୟରେ ଛନ୍ତି ଯେତେ ରାଜା
ସମସ୍ତେ କରନ୍ତି ଆସି ଏହା ପାଦ ପୂଜା ।
ଏବେ ତୁମ୍ଭେ ଏହାକୁ ଯେ କଷ୍ଟତେ ଜିଣିଲ
ପ୍ରାଣେ ନ ମାରିଣ ବାନ୍ଧି ଏହାକୁ ଆଣିଲ ।
ଏହାର ଯେ ବଡ଼ଭାଗ୍ୟ ଦେଖା ହେଲା ମୋର
ଛାଡ଼ିଦେବୁ ମାଗୁଅଛୁ ତୋତେ ଏହି ବର ।
ଏତେ ବଡ଼ ରାଜା ଗୋଟା ପାଇଲାଣି ଦୁଃଖ
ତୁମ୍ଭର ହୋଇ ଥାଉ ଏ ସମସ୍ତେକ ରଖ ।
ଆଉର କଥାଏ ଆମ୍ଭେ କହିବୁ ତୋ ଆଗେ
ଅଶ୍ୱ ଗୋଟିଏ ତୁ ଆଗ ମେଲ ମଣ୍ଡଳଗେ ।

ତାରକାସୁର ଏ ବିଧି ଜଗ ବିଜେ କଲା
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ ହେଳେଣ ଜିଣିଲା ।
ଦେବ ଦାନବ ମାନବ ଜିଣିଲା ସେ ରଣେ
ଜଗପାଳେ ସେବାକଲେ ତାହାର ଚରଣେ ।
ଲଙ୍କା ଅଧିପତି ପୂର୍ବେ ରାବଣ ଦଇତ୍ୟ
ଜଗ ବିହରଣ କଲା ସେ ବିଶ୍ରବାସୁତ ।
ଡରେ ସକଳ ଦେବତା ହେଲେ ତାର ବଶ
ତ୍ରେତା ଯୁଗରେ ଶ୍ରୀରାମ ବାଣେ ଗଲା ନାଶ ।
ଶ୍ରୀରାମର ବ୍ରହ୍ମଶରେ ମଲା ଦଶଶିର
ଜଗବିଜେ କରିବାର ଏମନ୍ତ ବିସ୍ତର ।
ତୁମ୍ଭେ ଏ ଦ୍ୱାପର ଯୁଗେ ଜଗବିଜେ କଲ
ଯଥାବିଧି ପୂର୍ବପର ଅଶ୍ୱ ନ ମେଲିଲ ।
ଆଗେ ଅଶ୍ୱ ପଛେପଛେ ଥିବ ଯେ ଗୋଡ଼ାଇ
ଯେ ଅଶ୍ୱ ଧରିବ ତାକୁ ମାରିବଟି ଯାଇଁ ।
ଶ୍ୱେତବର୍ଣ୍ଣ ସିନ୍ଧୁଜାତି ହୋଇବ ଏ ଘୋଡ଼ା
ଏମନ୍ତ ଅଶ୍ୱ ଗୋଟିଏ ହେବ ତୁମ୍ଭ ଲୋଡ଼ା ।
ମୁକୁଟ ତା ଶିରେ ବାନ୍ଧି ସୁବେଶ କରାଇ
ନବରତ୍ନ କଣ୍ଠମାଳ ଗଳାରେ ଲମ୍ବାଇ ।
ବିଶ୍ୱାସ ସେବକ ତାକୁ ନେଉଥିବ ଆଗେ
ସକଳ ସେବକ ଥିବେ ତାର ସଙ୍ଗେ ସଙ୍ଗେ ।
ଯେ ଅଶ୍ୱ ଗୋଟି ଧରିବ ଯେତୁ ବଳକରି
ପ୍ରାଣେ ନାଶ କରିବ ସେ ତୁମ୍ଭର ବଇରୀ ।
ଆଉ କଥାଏ କହିବା ଏବେ ଶୁଣ ତାହା
ଆମ୍ଭ କଥା ପ୍ରତି ପାଳିଥିବୁ ନରନାହା ।
ପବିତ୍ର ପାଟବଂଶୀ ଏ ଜରା ନରପତି
ବେନି ଦୁହିତା ଏହାର ପଦ୍‌ମ ଯେ ଜାତି ।
ହେନ୍ତି ପ୍ରହେନ୍ତି ବୋଲି ଯେ ସେ ଦୁହିଁଙ୍କ ନାମ
ଅପୂର୍ବ ରୂପବତୀ ସେ ଦୁହେଁ ଅନୁପମ
ସେ ବେନି କନ୍ୟା କରିବା ତୁମ୍ଭଙ୍କୁ ଯେ ବିଭା
ଚନ୍ଦ୍ର ରୋହ୍ମାଣୀ ପରାୟ ବିଶିବନା ଶୋଭା ।
କପିଳା ଶାପେ ଗଉରୀ ଦେବୀ ମହାସତୀ
ମାନବ ଦେହ ଘେନିଣ ମର୍ତ୍ତ୍ୟେ ଉତପତ୍ତି ।
ତେସନ ଏ କାମଦେବ ପ୍ରିୟା ରତି ନାରୀ
କାଳନେମି ରୂପେ ତୁମ୍ଭେ ଥିଲ ଅବତରି ।
ଏବେ କଂସରୂପେ ତୁମ୍ଭେ ଜନମ ହୋଇଲ
ଜରାସନ୍ଧ ଦୁହିତାଙ୍କ ରୂପକୁ ଘଟିଲ ।

ତୁମ୍ଭେ ତାଙ୍କ ପକ୍ଷ ବନ୍ଧୁ ଆନ କେହି ନାହିଁ
ଯତନେ ବିଧାତା ଏହା ଗଢ଼ିଛି ଘଟାଇ ।
ଆବର ବିଶେଷ ଜରାସନ୍ଧ ମହାରାଜା
ଭୃତ୍ୟପଣେ ଖଟିଥିବ ଦେଇଣ ତନୁଜା ।
ଦଇବେତ ସୂତ୍ର ଯୋଗେ ଆସି ହେଲା ଭେଟ
ଭୋଜବଂଶ ନୃପତି ତ ତୁମ୍ଭେ ଆଦ୍ୟପାଟ ।
ଇନ୍ଦ୍ରୁମତୀ ମହାସତୀ ଅଟେ ତୁମ୍ଭ ମାତା
ପଦ୍ମକେଶର ରାଜାର ଅଟଇ ଦୁହିତା ।
ଉଗ୍ରସେନ ନୃପତିର ତୁମ୍ଭେ ଜ୍ୟେଷ୍ଠସୁତ
ମଥୁରା ରାଜ୍ୟ ଧରାଇ ଅଛ ପାଟଛତ୍ର ।
ତୁମ୍ଭ ଅଙ୍ଗଗୁରୁ ଅଟେ ଯଯାତି ଯେ ରାଜା
ବଶିକ ଅତି ପବିତ୍ର ସେହି ପୁଣ୍ୟତେଜା ।
ଏ ଜରାସନ୍ଧ କେଶରୀବଂଶ ଶିରୋମଣି
ବିଭା କରାଇବୁ ଆମ୍ଭେ ଥାଇ ତହିଁ ପୁଣି ।
ଯତ୍ନେ ମଣାଇ କହିଲେ ନୃପମଣି ଶୁଣ
କନ୍ୟା ବିଭାହେଲେ ଶୋଭା ବଢ଼ିବ ଦ୍ୱିଗୁଣ
ଅନେକ ମତେ କଂସକୁ କହି ମହାମୁନି
ଅଷ୍ଟମଲ୍ଲ ମୁଖ ଚାହିଁ କଂସ ହେଲା ତୁନି ।
ଅଷ୍ଟମଲ୍ଲ ବୋଇଲେ ହେ ରାଜନ ଶୁଣିବା
ଜରାସନ୍ଧ ନୃପତିର ଦୋଷ ଉପେକ୍ଷିବା ।
ସତ୍ୟ କରାଇ ମାଗିଲେ ମୁନି ରାଜାଦାନ
ଏ କଥା ନ କଲେ ନାଶ ଯିବ ସବୁ ପୁଣ୍ୟ ।
ଆବର ବିଶେଷ ସେହି ଦେବ ଯେବେ କନ୍ୟା
ଏ ରାଜାର ଦୋଷ ତୁମ୍ଭେ କରିବାନା କ୍ଷମା ।
ହେମଦେବ ନେଇ ମୁନିଙ୍କି ଜରାସନ୍ଧ ଦେବା
କନ୍ୟାବେନି ଆଣି ମୁନି କରାଇବେ ବିଭା ।
କଂସ ବୋଲେ କେଶୀ ତୁ ହୋ ଜରାସନ୍ଧ ନଅ
ରଙ୍କୁ ପିଠାଇ ମୁନିର ପାଶେ ନେଇ ଥୁଅ ।
କଂସ ଆଜ୍ଞା ପରମାଣେ ଜରା ଅଣାଇଲେ
ଲୋମଶ ମୁନି ଗୋଚରେ ନେଇ ସମର୍ପିଲେ
ବନ୍ଧରୁ ମୁକୁଳ ହେଲା ଜରାସନ୍ଧ ରାଜା
ମୁନି ପାଦତଳେ ପଡ଼ି କଲା ପାଦପୂଜା ।
କଂସକୁ ଯେ ନମସ୍କାର କରି ଉଭା ଆଗେ
ମୁନି ବୋଇଲେ ଦୁହିତା ରାଜା ଆଣ ବେଗେ
ଦୂତ ପଠାଇ କନ୍ୟାଙ୍କୁ ଅଣାଇ ନୃମଣି
ସୁବେଶ କରି ସଙ୍ଗରେ ମୃଦୁସୁଲ୍ଲ ଧ୍ୱନି ।

କନ୍ୟାଙ୍କରୂପେ ହାନ୍ଦୋଳା ପାଉଅଛି ଶୋଭା
ଦେଖି କଂସର ବଢ଼ିଲା କାମଦେବ ପ୍ରଭା ।
ମୁନି ବୋଇଲେ ଶୁଣ ତୁ ମଗଧ ନୃପତି
ପିତାଦତ୍ତ କନ୍ୟା ପୁଣି ରାଜଦତ୍ତ ପୃଥ୍ୱୀ ।
ଗୁରୁଦତ୍ତ ମନ୍ତ୍ର ଜାଣ ଭାଗ୍ୟଦତ୍ତ ଧନ
ପୃଥ୍ୱୀଦତ୍ତ ଶସ୍ୟ ଯିନା ଜ୍ଞାନଦତ୍ତ ମନ ।
ଯୁକତେ ଦୁହିତା ତୁମ୍ଭେ କରିଛ ଜନମ
କନ୍ୟାଦାନ କଲେ ହେବ ଯଶ ପୁଣ୍ୟ ଧର୍ମ ।
ସୁପାତ୍ରେ ସୁକନ୍ୟା ଦାନ କର ମାନ ତେଜ
ମୋ କଥା ଗୋଟି ଅନ୍ୟଥା ନ କର ତୁ ହେଜ
ଶୁଣି ଜରାସନ୍ଧ ରାଜା ସନ୍ତୋଷ ହୋଇଲା
ବିଭାର ଯୋଗାଡ଼ମାନ ସବୁ ଅଣାଇଲା ।
ସରସ୍ୱତୀ ନଦୀତୀରେ ରଚିଲେ ମଣ୍ଡୁଆ
ସୁବର୍ଣ୍ଣ ବେଦୀ ଉପରେ ଟାଙ୍ଗିଲେ ଚାନ୍ଦୁଆ ।
ମାଣିକ୍ୟ ମୁକୁତା ଖଞ୍ଜା ବଇଦୁର୍ଯ୍ୟ ହୀର
ନେତ ପାଟ ସିନ୍ଦୁରା ଯେ ଉଡ଼େ କେରକେରା
ରଙ୍ଗ ଶୁକଳ ବାଲିଆ ଧ୍ୱଜା ପନ୍ତ ପନ୍ତ
ନୀଳ ମେଘରେ ବିଜୁଳି ପ୍ରାୟେ ହୁଟକନ୍ତ ।
ଜରାସନ୍ଧ ନୃପତିଙ୍କ ଅପୂର୍ବ କି ଅବା
ଛୟାଣୋଇ ସସ୍ତ୍ରରାଜା ବସି କଲେ ସଭା ।
ଶୁଦ୍ଧ ସୁବର୍ଣ୍ଣ କଲଶ ଲକ୍ଷେ ତହିଁ ହୁଳ
ନାନା ରତ୍ନର ପିଡ଼ୁଲା ଅଛି ଭଳି ଭଳି ।
ଜରାସନ୍ଧର ତେଇଶ ଅକ୍ଷୌହିଣୀ ବଳ
କନ୍ୟାବିଭା କାଳେ ଆସି ମିଳିଲେ ସକଳ ।
ଛୟାଣୋଇଁ ସସ୍ତ୍ରରାଜା ସୈନ୍ୟ ଯେତେଥିଲେ
ବିଭାର ସମୟ ଜାଣି ସମସ୍ତେ ଅଇଲେ ।
ରଥ ଗଜ ଅଶ୍ୱ କେତେ କଳଣା ନ ଯାଇ
ପଦାତିକ ସୈନ୍ୟବଳ କେ ପାରିବ କହି ।
ନଗରେ ରନ୍ଧୁ ଅଛନ୍ତି ରନ୍ଧି ସୁପ୍ରକାରେ
ଅନ୍ନବ୍ୟଞ୍ଜନ ବଢ଼ନ୍ତି ଯାଚି ଯେ ଯାହାରେ ।
ଭୁଞ୍ଜି ସନ୍ତୋଷ ହୁଅନ୍ତି ତହିଁ ସର୍ବଜନ
ଆଚମନ କରି ପୁଣି ବସନ୍ତି ଆସ୍ଥାନ ।
ମଙ୍ଗଳ ଉତ୍ସବ ଜରାସନ୍ଧ ଯେ କରଇ
ଢୋଲ ଦମା ବଜଘୋଷ ମହୁରୀ ବାଜଇ ।
ଅପ୍ରମିତ ବାଜଣାର ଘୋର ତୂରୀ ନାଦେ
ଗଗନ ଉଚ୍ଛୁଳୁଅଛି ଘୋରତର ଶବ୍ଦେ ।

ବନ୍ଦାପନା କରନ୍ତି ସେ ସାତଦ୍ୱୀପ ସେନ
ମଙ୍ଗଳ ଗୀତ ଗାଵନ୍ତି ଅନ୍ତସ୍ୱ କାମିନୀ ।
ବରକନ୍ୟା ବସାଇଲେ ବେଦୀରେ ସେ ମୁନି
ଦଶସହସ୍ର ବିପ୍ର ଉଚ୍ଚେ କଲେ ବେଦଧ୍ୱନି ।
ଉଚାରନ୍ତି ଦେଶକାଳ ବାକ୍ୟ ଦ୍ୱିଜମେଳେ
ଗୋହ ପାଳଟଇ ରଜା ହସ୍ତକୁ ଯୋଡ଼ିଲେ ।
ଶଙ୍ଖେ ଭରି ଜଳ ତିଳ ଦେଲେ ଯଜ୍ଞକୁଳ
ଦୁଇକୁଳ ଆନନ୍ଦରେ ହୋଇଲେ ଉତ୍ଫୁଲ୍ଲ ।
କୋଟିଏକ ଅଶ୍ୱଦେଲେ ବେଣ୍ଟକୋଟି ହସ୍ତୀ
ସ୍ୱବରକୋଟି ଅଶ୍ୱାରୋହୀ କୋଟିଏ ପଦାତି ।
ଲକ୍ଷେ ଶ୍ୱେତଛତ୍ର ପାଟଛତ୍ର ଆଦିକରି
କୋଟି ପାଣିଦ୍ରବ୍ୟ ଦେଇ ନତ୍ରଡ଼ିଲେ କାରି ।
ଦଶସହସ୍ର ପରିଵାରୀ ଦେଲେ ନବଯୁବା
ଏକଏକ କାମିନୀ ଯେ ଏକୁ ଏକ ଶୋଭା ।
ଦଣ୍ଡଛତ୍ର ସିଂହାସନ ଭୂମିଦାନ ମୂଳେ
ଅନେକ ଦ୍ରବ୍ୟ ଯୌତୁକ ଦେଲେ ମଣ୍ଡପାଳେ
ଆରେକ ଦୁହିତା ଭଣ୍ଡ ସେ ବେଦୀରେ କରି
ହେତୁ ପ୍ରହେତୁ ସେ ଦୁଇ ପରମା ସୁନ୍ଦରୀ ।
ଲାଜା ହୋମ ସାରି ବନ୍ଧି ବଧି ଶେଷ କଲେ
ଭୂଠି ଜଗସନ୍ଧ କର ଦୁଇକ ଯୋଡ଼ିଲେ ।
ହେ କଂସରଜା ତୁ ଯଦୁବଂଶ ଶିରୋମଣି
ଅନେକ ଦୋଷ କଲି ମୁଁ ନ ଚିହ୍ନି ନ ଜାଣି ।
ଜାମ୍ୱାପିତା ବୋଲିବାକୁ ଭାଜନ ନୁହଇ
ଶରଣ ପଶିଲି ଦୁଇ ଦୁହିତାକୁ ଦେଇ ।
ମୋର ସକଳ ସମ୍ପଦ ଅଟଇ ତୁମ୍ଭର
ଶରଣପୋଦର ବାନା ବହୁ କଂସାସୁର ।
ବାରେ ଅନୁଗ୍ରହ କର ମୁଁ ସିନା ତୋହର
ସେବକପଣରେ ରଖ ଦୋଷ ମୋ ନ ଧର
ପୁତ୍ର ଭାର୍ଯ୍ୟା ସହିତେ କୁଟୁମ୍ବ ମୋ ଯେତେ
ଶରଣ ପଶୁଛି ସେନ ଦୁହିତା ସହିତେ ।
ଶୁଣେ ପ୍ରତପାଳଥିବୁ ମୋର ବେନ ଜେମା
ତାହାଙ୍କର ଦଶଦୋଷ କରିବ ଯେ କ୍ଷମା ।
ଅନେକ ବିନୟ କରି କହେ ନରନାହା
ଅସମୟରେ ତୁ ବାବୁ ହେବୁ ମୋତେ ସାହା ।
ଆଜହୁଁ ଏବେ ହୋଇଲି ମୁଁ ତୁମ୍ଭର ବଶ
ଦ୍ରୋହକର୍ମ କଲେ ମୁହିଁ ନ ଧରିବ ଦୋଷ ।

କଂସାସୁର ବୋଇଲେହୋ ବୋଲ ତୁମ୍ଭେଯାହା
ମୋତେ ପଞ୍ଚଭୂତଆତ୍ମା ହେଲ ଏବେ ସାହା
ଯେତେ ଦୋଷ କରିଥିଲେ ସବୁ ଉପେକ୍ଷିବୁ
ଦୁହିତା ଦୁଇ ଦେଲାରୁ ଦୋଷ ଗଲା ସବୁ ।
ନ ଜାଣିମା ପଣେ ସିନା କଲ ଅମରିଷ
ସେ କଥାକୁ ବିସ୍ମରିଲେ ହେବ ଆଉ ଜସ ।
କେଶୀ କରଯୋଡ଼ି ବୋଲେ ମଗଧ ଈଶ୍ୱର
ପୃଥିବୀର ଏକମାତ୍ର ଅଟ ତୁମ୍ଭେ ବୀର ।
କର୍ମ ଅବଳକୁ ସିନା ଭଣେ ଗଲ ହାରି
ହାରିବା ଜଣିବା କ୍ଷତ୍ରୀ ବେଭାର ଏପରି ।
ସେକଥା ମନେ ନ ଧର ତୁହେ ନରପତି
ଆମ୍ଭ ତୁମ୍ଭ ଆତ୍ମା ଏକ ଅଭିନ୍ନ ପୀରତି ।
ଏହା କହି ବେନଜନ ହେଲେ କୋଳାକୋଳି
ଅଙ୍କୁରି ଉଦ୍ଧବ ଆଦି ଯଦୁବଳ ମିଳି ।
ଜରାସନ୍ଧ ନୃପତିକ କଲେ ପରିତୋଷ
ଚଉଠୀ ସପ୍ତମଙ୍ଗଳା ବଧି କଲେ ଶେଷ ।
ଜୟ ତୁ ଜୟନ୍ତୁ ସୃଷ୍ଟି କରତା ବିଧାତା
ଜୟନ୍ତୁ ଜୟନ୍ତୁ ଦେବ ଚଉବର୍ଗ ଦାତା ।
ଜୟନ୍ତୁ ଜୟନ୍ତୁ ଦେବ ଭୂଆଣ ତୋ ଧନ
ଜୟନ୍ତୁ ଜୟନ୍ତୁ ଦେବ ନୋହେ ତାହା ଆନ
ଯାହା ଲିହିଥିଲୁ ତାହା ଅନ୍ୟଥା ନ ହୋଇ
ତାହିଁ ମଥୁରା ମଗଧ ପ୍ରେମଶହିଁ ତାହିଁ ।
ଘଟାଇଲୁ ଆଣି ଏଣୁ ବହୁ ତୋର ନାମ
ଅଚ୍ୟୁତାନନ୍ଦ ଦାସ ମୁଁ ମୋର କର୍ମ ବାମ ।
ତେଣୁ ହରିବଂଶ ଗ୍ରନ୍ଥ ଲେଖିବାକୁ ମନ
ସାଗରକୁ ଲଙ୍ଘିବାକୁ ମୂଷିକ ଭାଜନ ।
ଏଣୁ କେବଳ କରେ ତବ ପାଦ ସେବା
ସରସ୍ୱତୀଙ୍କି ପଠାଇ ପଦ କହିଦେବା ।

—o—

## କଂସର ଦ୍ୱିତୀୟ ବାର ଦ୍ୱାରକାସ୍ଥ ଓ ସୌଦାସ ନୃପତି ଏବଂ ବାଣାସୁରର ପରାଜୟ ସ୍ୱୀକାର

ଶୁକମୁନି କହୁଛନ୍ତି ପରୀକ୍ଷ ଶୁଣନ୍ତୁ
ହରିବଂଶ ପୁରାଣ ଯେ ପରମ ଭାରତ ।
ସରିଲା ବିଭା ସପତମଙ୍ଗଳା ଚଉଠି
ଆଠଦିନେ ବଡଵଜେ କରିବାକୁ ଉଠି ।

ଲୋମଶ ବୋଇଲେ ଶୁଣ କଂସାସୁର ରାୟ
ଆଗେ ଅଶ୍ୱ ଗୋଟା ମେଲ୍ଲ କର ଦିଗ୍ବିଜୟ
ମୁନଙ୍କର ଆଜ୍ଞା ମାନ କଂସାସୁର ଘାର
ଅଶ୍ୱଭିତରୁ ଆଣିଲ୍ଲ ବାଛି ହୟବର ।
ନୀଳବର୍ଣ୍ଣ ସେ ବିଶୁଦ୍ଧ ଅଶ୍ୱ ସିନ୍ଧୁଜାତି
ପାଞ୍ଚ ବରଷ ବୟସ ନୀଳରତ୍ନ କାନ୍ତି ।
କପାଳେ ଧବଳ ଚନ୍ଦ୍ର ଉଜ୍ଜ୍ୱଳ ତା ପାଦ
ସର୍ବଗୁଣେ ସୁଲକ୍ଷଣ ନାହିଁ ନା ବିରୋଧ ।
କଂସରାଜାର ସମ୍ମୁଖରେ ଦେଲେ ଅଶ୍ୱ ନେଇ
ମଣ୍ଡିଲେ ସେ ଅଶ୍ୱଗୋଟି ନବରତ୍ନେ ଗୁନ୍ଥି ।
ମୁକୁଟ ଶିରରେ ମୁଖେ ସୁନା କଡ଼ିଆଳ
କଣ୍ଠେ ଲମ୍ବାଇଲେ ଅଷ୍ଟରତ୍ନ ପଦ୍ମମାଳ ।
ଦେବାଙ୍ଗ ଝିନ ବସନ ପାଟର ସିନ୍ଧୂଆ
ନୀଳମେଘୀ ପାଟ ଇନ୍ଦ୍ର ଗୋବିନ୍ଦ ବୃନ୍ଦୂଆ ।
ଘାଉଶୁର ନାଗ ଶ୍ୱେତ ଚାମରେ ସେ ଶୋଭା
ପ୍ରବାଳ ବୈଦୁର୍ଯ୍ୟ ଜ୍ୟୋତି ଝନକର ପ୍ରଭା ।
ତିନିଶତ ପାଟ ଛତ୍ର ଚିତ୍ରଣ ବିମଳ
ସାତସହସ୍ର ଆଲମ୍ବ ବିଚିତ୍ର କମ୍ବଳ ।
ଷାଠି ସହସ୍ର ସମ୍ମୁଖରେ ଘାଉବାଜା ବାଜେ
ପ୍ରଳୟ ଜଳରେ ଯେସନେ ସିନ୍ଧୁ ଗଳଗାଜେ ।
ଅଶ୍ୱ ଆଗପଛେ ମଣି ମାଣିକ୍ୟରେ ଭେଷ
ଦଶ ଲକ୍ଷ ପଦାତିକ ସୈନ୍ୟ ପଟୁଆସ ।
ସୁଲକ୍ଷଣ ସିନ୍ଧୁଜାତି ଅଶ୍ୱ ଚଳାଇଲେ
ବେନମାସ ଅନ୍ତେ ରାଜା ସଇନ ଚଳିଲେ ।
ପାଗ୍ଜ୍ୟୋତି ଯେ ଜରାସନ୍ଧ ରାଜା ଯାଉଥିଲ୍ଲ
ପାଞ୍ଚ ଯୋଜନରୁ ସେହି ବାହୁଡ଼ି ଅଇଲ ।
ଅନେକ ରାଜାଙ୍କ ସୈନ୍ୟ କଂସସଙ୍ଗେ ଚଳି
ନର୍ମଦା ନଦୀର କୂଳେ ସର୍ବେ ଯାଇଁ ମିଳି ।
ଘାର ତୂର ଶବ୍ଦେ ତିନି ବ୍ରହ୍ମାଣ୍ଡ କମ୍ପଇ
ସେ ଘୋର ଶବଦ ରାଜାମାନଙ୍କୁ ଝାମ୍ପଇ ।
ଜରାସନ୍ଧ ରାଜାକୁତ କଂସ କଲ ଜୟ
ଶୁଣି ନୃପତିଙ୍କ ମନେ ଜାତହେଲ ଭୟ ।
ଧନ ବସ୍ତ୍ର ଅଳଙ୍କାର ଘାସ ଅନ୍ନ ପାଣି
ସନ୍ମାନ ଦେଇ ବାଟରେ ଯୋଗାନ୍ତି ତା ଆଣି
କାମାକ୍ଷା ଦେଶ ନୃପତି କାମେଶ୍ୱର ରାଜା
ଦଶକୋଟି ରତ୍ନଦେଇ କଲ କଂସ ପୂଜା ।
ଉଡ଼ଙ୍ଗ ଦେଶ ନୃପତି ଘାର ବେଲଭଳ
ପାଞ୍ଚସହସ୍ର ଅଶ୍ୱ ଦେଇ ସେବେ ପାଦତଳ ।
ବେଲାଳ ଦେଶର ହରିଭୂରଙ୍ଗ ଯେ ରାଜା
ଦଶସହସ୍ର ରାଜା ଘେନ କଲ କଂସ ପୂଜା ।
କନାଉଜ ଦେଶ ରାଜା କଳିଙ୍ଗ ନୃପତି
କଂସକୁ ଦେଲ ସୁନ୍ଦର ଲକ୍ଷେକ ଯୁବତୀ ।
ସହସ୍ରେକ ରଥ ପାଞ୍ଚ ସହସ୍ର ସାରଥି
ଆବର ଦେଲ ପଦାତି ଅଶ୍ୱ ମତ୍ତହସ୍ତୀ ।
ବଦ୍ରମୂଳ ପର୍ବତରେ ରାଜା ସନ୍ନ୍ୟାସୀଏ
ଦଶସହସ୍ର ଅଶ୍ୱ ଘେନ ସେବେ କଂସପାଏ ।
ମରହଟ୍ଟା ଦେଶର ଯେ ପ୍ରଚଣ୍ଡ ନୃପତି
ଶତଶୃଙ୍ଗେ ବିଜେ ଘେନ ସାତ ସହସ୍ର ହସ୍ତୀ ।
କଂସବିଜେ ବାରତା ସେ ଚରମୁଖୁଁ ଶୁଣି
ଦଶସହସ୍ର ହସ୍ତୀ ଦେଲ ସମ୍ମୁଖରେ ସେ ଆଣି ।
ଚରିଦଗରେ ଅନେକ ନୃପତି ଅଛନ୍ତି
ଛୟାଣୋଇ ସହସ୍ର ଛତ୍ରି ବିଖ୍ୟାତ ନୃପତି ।
ଜମ୍ବୁଦ୍ୱୀପରେ ଅଛନ୍ତି ଯେତେକ ରାଜନ
ଜରାସନ୍ଧକୁ ଖଟନ୍ତି କର ଦେଇ ଧନ ।
ହାରି ଜରାସନ୍ଧ ଦେଲ ଦୁହିତାକୁ ବିଭା
ପୁଣି ଧନ ଥୋଇ କଂସ ଆଗହେଲେ ଉଭା ।
ମଣ୍ଡିଣି ଅଶ୍ୱକୁ କଂସ ଆଗରେ ଚଳାଇ
ସକଳ ସଇନ ପଛେ ଅଛନ୍ତି ଗୋଡ଼ାଇ ।
ଅତିବେଗେ ସେହି ଅଶ୍ୱ ଗୋଟି ଚଳିଗଲ
ସୌଦାସ ନୃପତି ଗଡ଼ ନିକଟେ ମିଳିଲ ।
ପ୍ରତାପୀ ସେ ମହାରାଜା ଅଟଇ ନିର୍ଭୟ
ବ୍ରହ୍ମାରୁଦ୍ର ଇନ୍ଦ୍ରକୁ ଯେ ନାହିଁ ତାର ଭୟ ।
ବାରତା ପାଇ ସୌଦାସ ନୃପତି ଜ୍ୱଳଇ
ଏମନ୍ତ ସମୟେ ଯାଇଁ ମନ୍ତ୍ରୀ ତା ଜଣାଇ ।
ମଥୁରା ନୃପତି କଂସ ଦିଗବିଜେ କଲ
ସବୁ ରାଜା ସାଧି ଜରାସନ୍ଧକୁ ଜିଣିଲ ।
ଜରାସନ୍ଧ ଆଦି ଯେତେ ବଳବନ୍ତ ରାଜା
ସମରେ ହାରି ସକଳେ କଲେ କଂସପୂଜା ।
ଲକ୍ଷଣବନ୍ତ ଅଶ୍ୱେକ ଆଗରେ ଚଳାଇ
ପଛେ ପଛେ ଅଛନ୍ତି ସେ ସମସ୍ତେ ଗୋଡ଼ାଇ
ପୃଥ୍ୱୀର ଭିତରେ ଯେତେ ରାଜାଙ୍କର ସୈନ୍ୟ
ସମାବେଶେ ଆସିଛନ୍ତି ସଙ୍ଗେ ଘେନ ଧନ ।

ଚୌରାଶୀ ସହସ୍ର ମାତ୍ର ଆସୁଅଛୁ ବଳ
ଧୂମଧାରେ ନ ଦିଶଇ ରବିଙ୍କ ମଣ୍ଡଳ ।
ସଙ୍ଗତେ ତୋ ଅଷ୍ଟମଲ୍ଲ ହୋଇଛନ୍ତି ସଖା
କିଜାଣି ସେ ବର୍ଷୁଛନ୍ତି ଅନଳର ଶିଖା ।
କୋଟି ଇନ୍ଦ୍ର ହେଲେ ତାଙ୍କୁ ନ ପାରିବ ଜିଣି
ଶୁଣି ରାଜା ମନ୍ତ୍ରୀ ବାଣୀ ମନେ ମନେ ଗୁଣି ।
ତୁ ଅଟୁ ମୋହର ମନ୍ତ୍ରୀ ରାଜ୍ୟକୁ କାରଣ
ବିଚାର ବୁଦ୍ଧି କହିବୁ ସିନା ଏହିକ୍ଷଣ ।
ମନ୍ତ୍ରୀ ବୋଇଲା ଛେଦେବ ହୃଦେ ତୋର ଇଚ୍ଛା
ସନ୍ଧି କରିବା ତା ସଙ୍ଗେ ରାଜ୍ୟ ହେଉ ରକ୍ଷା
କଂସାସୁର ସଙ୍ଗେ ବାଦ କଲେ ନାହିଁ ଯଶ
ଏଡ଼େ ସମ୍ପଦ ଅଳପେ ଯିବ ସିନା ନାଶ ।
ମନ୍ତ୍ରୀର ବଚନ ଯେଉଁ ରାଜା କରେ ହେଳ
ନିଶ୍ଚୟ ଜାଣିମ ତାକୁ ଘୋଟେ ଆସି କାଳ ।
ରାଜାକୁ ମନ୍ତ୍ରୀ ଯେବେ ନ କହଇ ସୁବୁଦ୍ଧି
ନଷ୍ଟେ ନାଶ ଯାଇ ତାର ଅର୍ଜିଲା ସମୃଦ୍ଧି ।
ମନ୍ତ୍ରୀବୋଲେ ରାଜା ମାନ୍ତି କଲେ ପ୍ରୀତିଯୋଗ
ଅଚଳାଚଳ ଲକ୍ଷ୍ମୀକି ଘେନି କରେ ଭୋଗ ।
ଶୁଣିଣ ରାଜାର ମନ ସନ୍ତୋଷ ହୋଇଲା
ସନ୍ଧାନ ଘେନି କଂସର ପଛେ ଗୋଡ଼ାଇଲା ।
ରାଜାର ବିଳମ୍ବ ଦେଖି କଂସର ସଇନ୍ୟ
ସମସ୍ତେ ଏକ ହୋଇଣ ଚଢ଼ାଇଲେ ଗୁଣ ।
ସଉଦାସ ପାଣିଦ୍ରବ୍ୟ ଲକ୍ଷେଶ୍ୱର ସାଜ
ସଙ୍ଗେ ଘେନି ଚଳେ ଦଶସସ୍ର ଲେଖାବାଜୀ ।
ତିନସସ୍ର ମତ୍ତହସ୍ତୀ ଅଳଙ୍କାରେ ରଞ୍ଜି
କଣ୍ଠକୁମ୍ଭମାନଙ୍କରେ ସ୍ୱର୍ଣ୍ଣ ଅଛି ଖଞ୍ଜି ।
ନେତପାଟର ଜାଲେଣି ସବୁଯାକ ନୂଆ
ମଡ଼ଆଳ ନ୍ୟନ୍ତ ଷାଠିସସ୍ର ଘରବୁହା ।
ଅନେକ ଯେ ଉପହାର ସଙ୍ଗେ ଘେନି ରସ୍ତେ
ଅଧିବାଟେ ପୂଜାକରେ ଯାଇଁ କଂସ ରସ୍ତେ ।
ଗଣ୍ଡକୀର କୂଳେ ମଣିକୁଣ୍ଡଳୀ ପର୍ବତ
ମଣିଭଦ୍ର ହସ୍ତୀ ତହିଁ ହୋଇଅଛି ଜାତ ।
ସେହି ପର୍ବତର ତଳେ ସଉଦାସ ରାଜା
ଅଧିବାଟେ ଉପହାର ଦେଇ କଲା ପୂଜା ।
ବେଳ ପାଞ୍ଚଘଡ଼ମାନେ କଂସ ଭେଟପାଇ
ଦେଖି କଂସରାଜା ବଡ଼ ଆନନ୍ଦିତ ହୋଇ ।

ସଉଦାସ ସଙ୍ଗେ କଂସ ହୋଇଲା ମଇତ୍ର
ମିତ୍ରପଣେ ବସିଲେ ସେ ହୋଇ ଏକଚିତ୍ତ ।
ଦେଶ କାଳ ବାକ୍ୟ ପଢ଼ି ନଗରେ ପଶିଲେ
ବେଜ୍ଞଜନ ବୋଲାବୋଲି ସମ୍ଭାଷଣ ହେଲେ ।
ପ୍ରାଣେ ପ୍ରାଣ ମିଶି ଏକ ଆତ୍ମା ସେହି କଲେ
ଆହାର ସାରି ସେ ଏକ ପଲଙ୍କେ ଶୁତିଲେ ।
ପାଞ୍ଚରାତ୍ର ରହି ତହିଁ କଂସାସୁର ଯାଇ
ଶୋଣିତ ନାମେ ପୁରରେ ପ୍ରବେଶ ହୁଅଇ ।
ବାଣାସୁର ନାମେ ତହିଁ ଅସୁର ରାଜନ
ସହସ୍ରେକ ଭୁଜ ଏକ ତନୁ ବଳବାନ ।
ଅଷ୍ଟାଦଶ ଅକ୍ଷୌହିଣୀ ବଳ ତ ଅଟଇ
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଜଣନ୍ତା କେ ନାହିଁ
ତାର ଦେହେ ଅଗ୍ନି ପାଣି ଶସ୍ତ୍ର ନ କାଟଇ
କୁମ୍ଭାଣ୍ଡକ ନାମେ ମନ୍ତ୍ରୀ ତାହାକୁ ଖଟଇ ।
ଭୂତ ଭବିଷ୍ୟତ ବର୍ତ୍ତମାନ ସେ ଜାଣଇ
ଏ ଘେନି ମନେ କାହାକୁ ହେତୁ ନ ଗଣଇ ।
କଂସ ବିଗଡରେ ରାଜା ବାରତା ପାଇଲା
ବାଟରୁ ତା ପାଟଅଶ୍ୱ ବାନ୍ଧି ଘେନିଗଲା ।
ଦୂତେ ଆସି ଜଣାଇଲେ କଂସର ଛାମୁର
ତୋର ବିଗଡରେ ଅଶ୍ୱ ନେଲା ବାଣାସୁର ।
ଅଶ୍ୱର ସଙ୍ଗେ ଛେଦେବ ଯେତେ ସୈନ୍ୟ ଥିଲେ
ଥୋକାଏ ମାରି ଥୋକାଏ ଧରି ଘେନିଗଲେ ।
ଶୁଣି କଂସାସୁର ରାଜା କୋପଭରି ହୋଇ
କାଳ ସର୍ପ ଜାଣିଣ ସେ ଗର୍ଜିଣ ଉଠଇ ।
ଅଧର ପୃଷ୍ଠ କରିଣ ଗୁଣ୍ଡେ ସିଂହରଡ଼
ବିନ୍ଧ୍ୟଗିରି ପର୍ବତ କି ପଡ଼ୁଅଛି ଝଡ଼ ।
କଂସାସୁର ବୋଇଲାରେ ପୂରିଲା ତୋ କାଳ
ସଂଯମନୀ ପୁରକୁ ସେ କଲା ଅନୁକୂଳ ।
ଏ ମୋହର ମହିମା କି ଶୁଣି ନାହିଁ କର୍ଣ୍ଣେ
କେଉଁ ବାପୁଡ଼ା ଗରବ ବହିଲା ତା ମନେ ।
ତାର ରାଜ୍ୟପାଟ ସବୁ କରିବଇଁ ଧ୍ୱଂସ
ତିଳ ପ୍ରମାଣ କରିଣ କାଟିବି ତା ମାଂସ ।
ଅଷ୍ଟମଲ୍ଲେ କହନ୍ତି କମ୍ପା ଭୂମି ହେଉଅଛି
ଉଗସି କହିଲା ଯାହା ପ୍ରତ୍ୟକ୍ଷେ ଶୁଣୁଛି ।
ତା ରାଜ୍ୟ ଉଜାଡ଼ି ଗଡ଼ ବେଢ଼ ବେଗ ହୋଇ
ଚଳେ ଉପ୍ରୋଧ ନ କର ରଙ୍ଗ ସବୁ ଯାଇ ।

ରଥ ଗଜ ଅଶ୍ୱ ପାଦା ପଡ଼ବରେ ଆଗେ
ଷଣେ ନ ରହି ମାରିବ ଧରି ତୁମ୍ଭେ ବେଗେ
ଯେତେକ ଯୋଦ୍ଧା ଦେଖିବ ତାହାଙ୍କୁ ମାରିବ
ଦୟା ଅପ୍ରୋଧ କାହାକୁ ତିଳେ ନ କରିବ ।
ଆଜ୍ଞା ପ୍ରମାଣେ ତାହାର ଅଷ୍ଟମଲ୍ଲେ ଗଲେ
ଶୋଣିତପୁର କରି ତାର କଟକ ବେଢ଼ିଲେ ।
ଅକଳ ମହାରାଜ୍ୟ ସେ ବହୁତ ପାଟଣା
ମଞ୍ଚ ଭୁବନକୁ ସେହି ପୁର ଜଗଜ୍ଜିଣା ।
ସେ ନଗ୍ର ଭିତରେ ଯେତେ ଲୋକ ପୁରିଛନ୍ତି
କାମଦେବ ପ୍ରାୟ ସେହି ସମସ୍ତେ ବସନ୍ତି ।
ନିଶ୍ଚିନ୍ତରେ ଅଛନ୍ତି ସେ ବଳ୍ୟସ୍ଥାନ ପାଇ
ରାଜ୍ୟ ଭିତରେ ତାଙ୍କର ଆନ ଭୟ ନାହିଁ ।
କଟକର ସ୍ୱର୍ଗ ପ୍ରାନ୍ତ ନ ମିଳଇ ଅନ୍ତ
ଆପେ ରକ୍ଷାଇ ଅଛନ୍ତି ତାହା ଉମାକାନ୍ତ ।
ଅଷ୍ଟାଦଶ ଯୋଜନ ତା ପୁର ଆୟତନ
ଏତେକ ବେଢ଼ି ରହିଲେ କଂସରାଜା ସୈନ୍ୟ
ଦ୍ୱାର ନରୋଧନ୍ତେ ଥାଟ ପଶିଲେ ଭିତରେ
ତିଳେ ଛଡ଼ାନାହିଁ ଥାଟ ରହିଲେ ନର୍ଭରେ ।
ଏଡ଼େ ପୁର ଶୋଣପୁର କଟଣ ବେଢ଼ିଲେ
ଦେହେ ଦେହ ଲଗାଲଗି ହୋଇ ନ ଗୁଞ୍ଜିଲେ
ସୁଯୋଗେ ବାହାରେଯେତେସୈନ୍ୟରହିଥିଲେ
ସେଠାରେ ଜୀବନ୍ତ ଧରି ତାଙ୍କୁ ଶୂଳୀ ଦେଲେ
କଟକେ ପଶିଲେ ଯାଇଁ ଯଦୁବଳ ବଳେ
ହାଟ ବାଟ ଜୁରି କରି ଧନ ବସ୍ତ ନେଲେ ।
କଂସାସୁର ପ୍ରସାଦେ ସେ ଅଟନ୍ତି ନିଃଶଙ୍କା
ଘରେ ଘରେ ପଶି ସବୁ କରାଇଲେ ଡକା ।
କେତେ ଅନ୍ୟୋନ୍ୟ ହୋଇ ବାଟ ଜଗିଛନ୍ତି
ବାହାର ଗଡ଼ଦ୍ୱାର ସେ ପକାଇଲେ ମନ୍ଥି ।
ତାର ରାଜ୍ୟସାକ ସବୁ ହେଲା ହାଲହୋଳ
କଟକ ପାକେ ସବୁର ପଡ଼ିଲା କୋହାଳ ।
ବାଣାସୁର ଆଗେ ଯାଇଁ ଗୁର ଜଣାଇଲା
ତୋହର ରାଜ୍ୟ କୁ ଏବେ ସମ୍ଭାଳ ହୋଇଲା
ମଥୁରା ଦେଶ ନୃପତି ଉଗ୍ରସେନ ବଶ୍ର
କଂସ ନାମ ତାର ତାକୁ ନାହିଁ ସମକକ୍ଷ ।
ଅକଳିତ ଯୋଦ୍ଧା ସେହି ରଣେ ରଣରଙ୍କା
ବ୍ରହ୍ମା ରୁଦ୍ର ଇନ୍ଦ୍ରକୁହିଁ ନାହିଁ ତାର ଶଙ୍କା ।

ଦିଗବିଜେ କରୁଛି ସେ ସମଦଣ୍ଡ ବନ୍ଧି
ନବଖଣ୍ଡ ମେଦିନୀରେ ଜଣନ୍ତା କେ ନାହିଁ ।
ଅଷ୍ଟମଲ୍ଲ ଆଦି କରି ଯେତେକ ସଇନ
ଅନେକ ରାଜାଙ୍କ ସୈନ୍ୟ ସଙ୍ଗତରେ ଘେନ
ସହସ୍ରେ ପୁର କରି ତୋ କଟକ ବେଢ଼ିଲେ
ଘରଦ୍ୱାର ଗ୍ରାମ ସବୁ ରାଜ୍ୟ ଉଜାଡ଼ିଲେ ।
ଏହି ସଙ୍କଟୁ କପରି ଆମ୍ଭେ ହେବୁ ରକ୍ଷା
କହିଲୁ ଗୁମୁରେ କରି ଯେ ତୁମ୍ଭର ଇଚ୍ଛା ।
ଶୁଣି ବାଣାସୁର ରାଜା ପ୍ରଜ୍ୱଳିତ ରାଗେ
ମୋହର ସୈନ୍ୟସାଜରେ ବୋଇଲାକବେଗେ
ରଥ ଗଜ ପଦାତିକ ଅଛନ୍ତି ମୋ ଯେତେ
ସମସ୍ତେ ସଜ ହୁଅନ୍ତୁ ଯେ ଯାହାର ମତେ ।
ପାର୍ବତୀର କାନ୍ତ ମୋତେ ବର ଦେଇଛନ୍ତି
କେବଣ ଶତ୍ରୁକୁ ମୋର ଅଛଇ ରେ ଖିତି ।
ହରପାର୍ବତୀ ଯେ ଦୁହେଁ ମୋତେ ବରଦେଲେ
କରେ ଧନୁ ଦେଇ ପୁତ୍ର ବୋଲିଣ ବୋଇଲେ
ଅଲୌକିତ ବର ମୋତେ ଦେଲେ ଦେବରାଜ
ଏକ ଶରୀରେ ମୋ ହେଲା ସହସ୍ରେକ ଭୁଜ ।
ପୁତ୍ର ନାତି କୁଟୁମ୍ବିହିଁ ଅଛନ୍ତି ମୋ ଯେତେ
ଅସଂଖ୍ୟ ଅଗୋଚର ତା କହିବଇଁ କେତେ ।
ମନ୍ତ୍ରୀ ବୋଇଲା ଶ୍ରୀଦେବ ମୋର ବୋଲ ଶୁଣ
ଶିବ ବର ଦେଲେ ତୋତେ ଏକଥା ପ୍ରମାଣ
ନ ବିଚାରି କର୍ମ । ତୁମ୍ଭେ କରି ଏଡ଼େ ରୋଷ
ଅବିଚାର ଯୁଦ୍ଧକଲେ ନାହିଁ ରହିଁ ଯଶ ।
କଂସାସୁର ସଙ୍ଗେ ଯେବେ କରିବୁ ତୁ ଯୁଦ୍ଧ
ଜିଣି ପାରିବୁକ ରାଜା ଭଲକରି ବୁଝ ।
ଯେ କାଳନେମି ବ୍ରହ୍ମାଙ୍କୁ କଲା ବନେ ମାୟା
ସେ ଜନ୍ମ ହୋଇଛି ଧରି କଂସାସୁର କାୟା ।
ସବୁ ଦେଶରେ ହେଲାଣି ସେହି ଅଧିକାରୀ
ବସ୍ତୁ ବନା ଆନ କେହି ନ ପାରିବ ମାରି
ତୁମ୍ଭଙ୍କୁ ବର ଦେଇଛି ଯେଉଁ ଶୂଳପାଣି
ତାହାଙ୍କ ବରେ କି କଂସ ନୃପତିକି ଜିଣି ।
ପୁଣି ଅଷ୍ଟମଲ୍ଲ ତାର ହୋଇଛନ୍ତି ସଖା
କୋଟି ଇନ୍ଦ୍ର ହେଲେ କିଣି ପାରିବ ସେ ଏକା
ସ୍ୱର୍ଗପୁର ସୁରପତି ପାତାଳେ ବାସୁକି
କାହାର ହସ୍ତରେ କଂସ କେବେ ମରଇକି ।

ଅଟନ୍ତି ଯେବଣ ଅଷ୍ଟମଲ୍ଲେ ରଣରଙ୍ଗା
ଚନ୍ଦ୍ର ସୂର୍ଯ୍ୟ ରୁଦ୍ର ଇନ୍ଦ୍ର ରଣରେ ନିଃଶଙ୍କା ।
ସାତବଂଶ ଯାଦବବର୍ଗ ଅଛନ୍ତି ତା ସଙ୍ଗେ
ଇନ୍ଦ୍ର ବଜ୍ର ନ କାଟଇ ସେମାନଙ୍କ ଅଙ୍ଗେ
ନବଦ୍ୱୀପ ମଧ୍ୟେ ଯେତେ ରାଜାଙ୍କ ସଇନ୍ୟ
ସଂଗ୍ରାମେ ଜୟ କଲାଣି ସେ କଂସ ରାଜନ ।
ରଥ ଗଜ ଅଶ୍ୱ ସେନ ସଙ୍ଗେ ସବୁ ରାଜ୍ୟେ
ଶ୍ରୀଦେବ ତୁମ୍ଭ ବଳେକ ତାକୁ କରି ଜୟେ ।
ହୃତାସନ ମଧ୍ୟେ ତୁମ୍ଭେ ପଶ କସପାଇଁ
ସମାଧୀ କରିବା କିମ୍ବା ସଇନ ମଗାଇ ।
ନିଶ୍ଚୟ କହୁଛି ମୁଁ ଜାଣିଥା ଗୋସାଇଁ
ମୋ କଥା ନ କଲେ ଯଶ ତୁମ୍ଭର ଯେ ନାହିଁ
ମୋ ବୋଲତୁମ୍ଭଙ୍କୁ ଯେବେ ନପାଇ ଶ୍ରୀନାଥ
ଲୋକ ମୁଖେ ଲଜ୍ଜା ନିଶ୍ଚେ ପାଇବ ପଶ୍ଚାତ ।
ବାଣା ବୋଲଇ ଈଶ୍ୱର ଦେଇଛନ୍ତି ବର
ସଦାଶିବ ପରସାଦେ କାହାକୁ ମୋ ଡର ।
ପାର୍ବତୀଙ୍କ ଠାରୁ ମୁଣ୍ଡି କ୍ଷୀର ପାନ କଲି
ତେଣୁ ଯେ ମୁଣ୍ଡି ଅଜର ଅମର ହୋଇଲି ।
ବିଶ୍ୱନାଥ ମହାପ୍ରଭୁ ଆଜ୍ଞା ଦେଇଛନ୍ତି
ମୋର ଅଙ୍ଗେ ଶସ୍ତ୍ରମାନ ନ ଭେଦିବ ଯାନ୍ତି ।
ମନ୍ତ୍ରୀ ବୋଇଲା ଶ୍ରୀଦେବ କହିଲ ଯେ କଥା
ସମର ଭୂମିରେ କାଳେ ହୁଅଇ ଅନ୍ୟଥା ।
ଅସତ ମାର୍ଗେ କ ଦେଖୁଁ ଦେଖୁଁ ପ୍ରାଣୀ ଯିବ
ଆଜ୍ଞା ଅବଜ୍ଞା ହେଲେକ ଦେବଙ୍କୁ କହିବ ।
ତୁମ୍ଭେ ଯେ ବୋଇଲନୋହେ ସମରେମୁଁ ବଧ
ଈଶ୍ୱର ବରେ ଏ କଥା ହୁହଇକ ସାଧ ।
ଅଛନ୍ତି ଯେ କୃଷ୍ଣ ପୁତ୍ର ନାତି ପ୍ରାଣ ସଖା
ଏମାନେ ମଲେ ତୁମ୍ଭଙ୍କୁ କେ କରିବ ରକ୍ଷା ।
ରଥ ଗଜ ପଦାତିକ ହେଲେ ନିସୂଦନ
ଏକା ଜଣେ ଥାଇଁ କିସ କରିବ ରାଜନ ।
ଆବର କଥାଏ ରାଜା କହିବା ମଣାଇ
କେତେ ନାଶ ଯାଇଛନ୍ତି ଶିବ ବର ପାଇ ।
ପୂର୍ବେ ଲବଣ ଅସୁର ବର ପାଇଥିଲା
ଶତ୍ରୁଘ୍ନ ରୂପେ ତାହାକୁ ଶ୍ରୀହରି ମାଇଲା ।
ଅନ୍ୟଥା ହୋଇଲା ତେତେ ବଡ଼ ବର ପୁଣି
ବାଳକ ରୂପେ ମାଇଲେ ତାକୁ ଚକ୍ରପାଣି ।
ତାରକା ସୁରକୁ ବର ଦେଲେକ ଈଶ୍ୱର
ସେ ବର ଅନ୍ୟଥା କଲା କାର୍ତ୍ତିକ କୁମର ।
ସଦାଶିବ ବରଦେଲେ ଶମ୍ଭୁ ନିଶୁମ୍ଭକୁ
ବନା ଯୁଦ୍ଧରେ ଶ୍ରୀହରି ମାଇଲେ ତାହାଙ୍କୁ ।
ମହିଷା ସୁରକୁ ବର ଦେଲେ ତ୍ରିପୁରାରି
ତାହାକୁ ମାଇଲେ ଦୁର୍ଗା ଘୋର ଯୁଦ୍ଧକରି ।
ରକ୍ତଲୋଚନକୁ ବର ଦେଲେ କାଶୀବାସୀ
ମାଇଲେ ମାଳତୀ କନ୍ୟା ରୂପେ ବ୍ରହ୍ମରାଶି ।
ବଶ୍ରବା ଋଷିର ପୁତ୍ର ରାବଣ ଅସୁର
ଈଶ୍ୱରୁ ସେତ ପାଇଲା ଅକ୍ଷୟ ଯେ ବର ।
ଚ଼ପନ ଦଣ୍ଡା ଯୁଗକୁ ବରଦେଲେ ଧାତା
ରାଜା ରାଜେଶ୍ୱର ହୋଇଥିଲା ଦଶମଥା ।
ଏତେ ବଡ଼ ବର ଗଲା ଅଳପେକ ନାଶ
ମଝିରେ ଗଡ଼ ସମୁଦ୍ର ଖାଇ ଚଉପାଶ ।
ଲଙ୍କା ବିଧ୍ୱଂସି ମାଇଲେ ଯାଙ୍କୁ ରାମରାୟେ
ଚ଼ପନ ଦଣ୍ଡା ଯୁଗର ଆୟୁଗଲା କ୍ଷୟେ ।
ଅତି ଉଗ୍ର ହୁଅନ୍ତେ ସେ ଧର୍ମ ନ ସହିଲା
ବିଷ୍ଣୁ ଦେବତା ତାହାକୁ ଅଖଣ୍ଡେ ମାଇଲା ।
ନମ୍ରତା ଗୁଣଟି ଥିଲେ ନାହିଁ କେବେ ନାଶ
ଇହ ପରଲୋକେ ଯଶ ଅନ୍ତେ ସ୍ୱର୍ଗବାସ ।
ଧନବନ୍ତ ପ୍ରାଣୀ ଯେବେ ନମ୍ରତା ହୁଅଇ
ଅଚଳାଚଳ ଲକ୍ଷ୍ମୀ ସେ ସୁଖରେ ଭୁଞ୍ଜଇ ।
ଇହଲୋକେ ତୃପ୍ତ ତାର ପରେ କ୍ଷୟ ନାହିଁ
ଜୀବ ଥିବାଯାକେ ତାର ଐଶ୍ୱର୍ଯ୍ୟ ଥାଇ ।
କେହି ରିପୁ ବିନାଶ ନ କରଇ ତା ଦେହ
ଶ୍ରୀଦେବ ତୁ ପୁଣ୍ୟବନ୍ତ ବାରେ ଏହା ସତ ।
ଆପଣାର ଅନ୍ତର୍ଗତେ ବିଚାର ତୁ ଏହା
ଧାନବନ୍ତର ଥାଇ ଯେ ତାଠାରେ ସୁବର୍ଯ୍ୟା ।
ନବୁଝି କାର୍ଯ୍ୟ କଲେଟି ହେବ ସର୍ବ ନାଶ
ତୁମ୍ଭରତ ମହାଭାଗ୍ୟ ଅଟେ ହେ ନରେଶ ।
କଂସ ଅଶ୍ୱ ସନ୍ନିଧିକ ଅଣାଅ ଆବର
ଅଷ୍ଟରତ୍ନ ଅଶ୍ୱ ହସ୍ତୀ ରଥ ଉପହାର ।
ପଣ୍ଡିତ ହୋଇ ଆମ୍ଭେ ଯେ ନ୍ୟାୟପଥେ ଥିବା
ଅନ୍ୟାୟ କରି ସମ୍ପଦ କିପାଁ ହରାଇବା ।
ବାଣାସୁର ବୋଇଲା ମୁଁ କରିଅଛି ରୋଷ
ଗ୍ରାମକୁ ଗଲେ କରିବ ଲୋକ ମୋତେ ଦୋଷ ।

ଏତେବେଳେ ପାଟଘୋଡ଼ା ଅଣାଇଲ ଧରି
ଅଶ୍ୱଶାଳେ ବନ୍ଧାଇଲ ଅତିଯତ୍ନ କରି ।
ତାଙ୍କ ପାଖକୁ ଯିବାକୁ ମୋର ମୁହଁ ନାହିଁ
ଧନ ରତ୍ନ ଅଶ୍ୱ ନେଇ ସନ୍ଧି କର ଯାଇଁ ।
ମନ୍ତ୍ରୀ ଶିରୋମଣି ତୁ ଯେ ଅଟୁ ପୁଣ୍ୟମନ୍ତ
ତୋର ବୁଦ୍ଧିବଳେ ମୋର ରାଜ୍ୟ ଯେ ଅଜସ୍ତ୍ର
ଅଇଶ୍ୱର୍ଯ୍ୟ ଭୋଗ କରି ଥିବଇଁ ନିଶ୍ଚିନ୍ତେ
ରାଜ୍ୟ ହାନି ଲଭ ଭାରୁ ଦେଇ ତୋର ହସ୍ତେ
ରାଜା ହୋଇ ଯେବେ ମନ୍ତ୍ରୀ କଥାକୁ ନ ଶୁଣି
ମନ୍ତ୍ରୀ ହୋଇଣ ଲଙ୍ଘଇ ଯେବେ ରାଜା ବାଣୀ
ଧନବନ୍ତ ହୋଇ ଯେବେ ବାଦେ କରେ ଇଚ୍ଛା
ସେବକ ହୋଇ ଲଙ୍ଘଇ ଯେବେ ସ୍ୱାମୀଶିକ୍ଷା ।
ଅହଙ୍କା ଭାବେ ପରକୁ କରଇ ଯେ ନାଶ
କୋଟି କୋଟି ଲକ୍ଷ୍ମୀଥିଲେ ଅଳପକେ ଧ୍ୱଂସ
ତୁହି ମହାମନ୍ତ୍ରୀ ମୋର ରାଜ୍ୟର କରତା
ତୋତେ ନ ଭସ୍ୱର ମୋର ଅଛି କେଉଁ କଥା
ତୋହର ମନକୁ ଯାହା ଆସଇ ତା କରି
ସେ କଥାରେ ଉରୋଧ ଯେ ନାହିଁଟି ମୋହର
ରାଜାର ବଚନେ ସେହି ମନ୍ତ୍ରୀ ଯେ କୁମ୍ଭାଣ୍ଡ
ପ୍ରବୋଧ କରି ରଖାଇ ନିଜ ସମଦଣ୍ଡ ।
ଅନେକ ହାତୀ ରଥୀଙ୍କି ଘେନି ସଙ୍ଗତରେ
ଅଜ୍ୟ ଯୁବତୀ ରତନ ଧନ ଶତେଭାରେ ।
ଦଣ୍ଡ ସିଂହାସନ ଦେବ ଅଙ୍ଗ ବସ୍ତ୍ର ଘେନି
ଉପହାର ବହି ନେଲେ ଅବ୍ଦ ଦେ ସଇନ ।
ଧନ ରତ୍ନ ଘେନି ଚଳିଯାଏ ମନ୍ତ୍ରୀ ବେଗେ
ବାଗ ଧରି ଅଶ୍ୱକୁ ଯେ ଚଳାଇଲ ଆଗେ ।
କଂସର ସମ୍ମୁଖେ ନେଇ ସବୁଦ୍ରବ୍ୟ ଦେଲ
ବିନମ୍ରୀ ହୋଇ ତା ପାଶେ ପଡ଼ିଣ ଶୋଇଲ ।
କୃତାଞ୍ଜଳି ହୋଇ ପୁଣି ବିନୟରେ କହି
ବାଣାସୁରକୁ ଶରଣ ରଖ ନରସାଇଁ ।
ଗୁଣବନ୍ତ ମନ୍ତ୍ରୀ ଏହି ବଚନ ବୋଇଲ
ମନ୍ତ୍ରୀର ବଚନେ କଂସ ପ୍ରବୋଧ ହୋଇଲ ।
କଂସ ବୋଇଲ କେବଣ ରାଜ୍ୟ ରାଜା ଏହି
କେଶୀ ବୋଲେ ବାଣାସୁର ମନ୍ତ୍ରୀ ଏ ଅଟଇ
ବାଣାସୁର ରାଜା ଜାଣି ଦୋରହା ହୋଇଲ
ତେଣୁ ସେ ତୁମ୍ଭ ସମ୍ମୁଖକୁ ଡରେ ନ ଅଇଲ ।

ମନ୍ତ୍ରୀକି ବରଗିଲ ସେ ସମାଧାନ ପାଇଁ
ଆଜ୍ଞା ଦେବା ଆମ୍ଭେ ଏବେ ଆସୁ ନରସାଇଁ ।
କଂସାସୁର ବୋଲେ ଯେବେ ମନ୍ତ୍ରୀଯୋଗା ଥିବ
ସେହି ରାଜ୍ୟକୁ ବାନ୍ଧି ଯେ ପ୍ରମାଦ ପଡ଼ିବ ।
ମନ୍ତ୍ରୀର ବଚନେ ଆମ୍ଭେ ଛାଡ଼ିଲୁ ପ୍ରମାଦ
ସୁଖେଥାଉ ବାଣାସୁର ନ ପାଉ ବିଷାଦ ।
ଏତେକ ବୋଲି ଅଶ୍ୱକୁ ଦେଲକ ମେଲଇ
ଧାଡିକାରେ କଂସ ବେଗେ ଦଣ୍ଡକୁ ଚଳାଇ ।
ଜୟ ଗଗନର ଜୟ ଗଗନର ଲିଙ୍ଗ
ଜୟ ତୁ ଦେବ ସହସ୍ର କରଣ ତୋ ଅଙ୍ଗ ।
ସପ୍ତାଂଶୁ ମୁକୁଟ ତୋର ଉଠେ ସପ୍ତଶିଖା
ଅନନ୍ତ ବ୍ରହ୍ମାଣ୍ଡ ମଧ୍ୟେ ପୂରିଅଛି ରେଖା ।
ଅଲେଖ ଅବ୍ୟାହତ ତୁ ବ୍ରହ୍ମାଣ୍ଡର ସ୍ୱାମୀ
ଜୀବ ବ୍ରହ୍ମ ପରିଯନ୍ତେ ତୁ ଅନ୍ତରଯାମୀ ।
ନବକୋଟି ମାଖୁଡ଼ାରେ ଶୋଭା ପଦ୍ମଦଣ୍ଡ
ନିମିଷକେ ବୁଲୁ ନାଥ କୋଡ଼ିଏ ବ୍ରହ୍ମାଣ୍ଡ ।
ସକଳ ଜୀବର ତୁହି ଅଟୁ ଚକ୍ଷୁଦାମ
ବିହନ୍ତା ପୁରୁଷ ତୁହି କରୁ ଲଭ ହାନ ।
କାଳାନ୍ତକ ଯୁଗାନ୍ତକ ପ୍ରଳୟ ତୋ କର୍ମ
ତୋର କଉ ନାଥ ଦେବ ମନ୍ତ୍ର ଧ୍ୟାନ ଧର୍ମ ।
ଏକଚକ ରଥ ଗୃଳ ଶୋଭା ନବ ସୃଷ୍ଟି
ତୋରଆହ୍ଲାଦେ ଥାନ୍ତି ଜୀବ କୋଟି କୋଟି ।
ସମୁଦ୍ରମନ୍ଥନୁ ସପ୍ତ ଅଶ୍ୱ ଉପୁଜିଲେ
ତୋର ରଥେ ଥାଇଁ ସପ୍ତ ବ୍ରହ୍ମାଣ୍ଡ ଭ୍ରମିଲେ
ଛାୟା ମାୟା କାନ୍ତ ନାଥ ତୁ ଅତି ନିର୍ମଳ ।
ତୋର ଜ୍ୱଳନ୍ତ ତେଜେ ଶଶାଙ୍କ ମଣ୍ଡଳ ।
ପ୍ରଚଣ୍ଡ ଚଣ୍ଡ ତୋ ଜ୍ୟୋତି ଅତ୍ୟନ୍ତ ଚପଳା
କ୍ଷଣକରେ ଭ୍ରମିପାରୁ ତୁ ମେରୁ ମେଖଳା ।
ଯେ ସପତ ଅଶ୍ୱ ତୋର ରଥେ ଥାଇ ଯୋଗ
ଜନମ ମରଣ ବାଧା ନ ଜାଣନ୍ତି କିଛି ।
ଜଳ ସ୍ଥଳ ଅନଳର ନାଥ ତୁ କାରେଣି
ନିରାଧାର ପୁରୁଷ ତୁ ଦେବ ଅନ୍ତର୍ଯ୍ୟାମୀ ।
ବିନତାନନ୍ଦନ ବୀର ସାରଥି ତୋ ରଥେ
ନିମିଷକେ ଭ୍ରମୁ ନାଥ ତୁ ଯେ ଶୂନ୍ୟପଥେ ।
ତୁହି ଯେବେ ନାଥ ଉଦେ ନୋହିବୁ ଗଗନ
ବ୍ରହ୍ମାର ସୃଷ୍ଟି ସରିବ ନ ପାଇ ଜୀବନ ।

ତୁମ୍ଭେ ଯେବେ ଗଗନରେ ଉଦେ ନ ହୁଅନ୍ତ
ସବୁ ଜନା ଦିନ ଆଉ ହୁଅନ୍ତା କେମନ୍ତ ।
ତୁ ଉଦେ ନୋହିଲେ ହେବ ସଂସାରଅନ୍ଧାର
ନିରଞ୍ଜନ ଦେବତା ତୁ ନିତ୍ୟ ନିରାକାର ।
ଦେବଙ୍କ ଉପରେ ଅଛୁ ତୁହି ଦେବ ସ୍ୱାମୀ
ତୋର ମହିମା ଅଜଣା ତୁହି ଅନ୍ତର୍ଯ୍ୟାମୀ ।
ଅକାରଣ କାରଣ ତୁ ଅନାଥର ନାଥ
ପବନହୁଁ ବ୍ୟଗ୍ର ତୋର ଏକଚକ୍ର ରଥ ।
ତୋ ଅଶ୍ୱକୁ ଏକ ଘୋଡ଼ା ଷାଠିସହସ୍ର ଗୁଣ
ପ୍ରଥମରେ ଅଷ୍ଟକୋଟି ଉଦେ ତୋ କିରଣ ।
ସେ କିରଣ ଜ୍ୱାଳା ଦେବ ନ ପାରିଲେ ସହି
ଚଉଦଶ ବ୍ରହ୍ମାଣ୍ଡର ଲୋକେ ହେଲେ ଦହି ।
ଜୀବଜନ୍ତୁମାନ ଯେତେ ସବୁ ଗଲେ କ୍ଷୟ
ସପତ ସମୁଦ୍ର ଯାକ ହେଲା ଅଗ୍ନିମୟ ।
ବ୍ରହ୍ମାବିଷ୍ଣୁ ଈଶ୍ୱର ଯେ କଲେ ତୋତେ ସ୍ତୁତି
ପ୍ରସନ୍ନ ହୋଇଲୁ ତୁହି ଧରି ଶାନ୍ତ ମୂର୍ତ୍ତି ।
ସଂସାର ରଖିବା ପାଇଁ କଲୁ ତୁହି ଦୟା
ତୁହି ଯେ ଛେଦନ କଲୁ ଆପଣାର କାୟା ।
କୁନ୍ଦରେ ବସି କିରଣମାନ କଟାଇଲୁ
ସକଳ ଜୀବଜନ୍ତୁଙ୍କ ସ୍ୱାମୀ ତୁ ରଖିଲୁ ।
ସହସ୍ରେ କିରଣ ଷଡ଼ଭାଗ କରି ବାଣ୍ଟି
ଷଡ଼ଋତୁ ଆଚଯାଚ କରି ନବସୃଷ୍ଟି ।
ବସନ୍ତ ଶରତ୍ ଶିଶିର ହିମ ଗ୍ରୀଷ୍ମ ବର୍ଷା
ଏ ଷଡ଼ ଋତୁରେ ସବୁ କିରଣ ତୋ ମିଶା ।
ଶରଦଋତୁରେ ଦୁଇ ଶତ ତୋ କିରଣ
ହିମଋତୁରେ ଯେ ଶତେ ବାଅସ୍ତରି ଜାଣ
ଶିଶିରେ ତୋର କିରଣ ଶତ ପଞ୍ଚବଂଶ
ବସନ୍ତେ କିରଣେ ତୋର ଦଶାଶେ ପ୍ରକାଶ ।
ଗ୍ରୀଷ୍ମେ ଦୁଇଶ ସତୁରି କିରଣ ହୁଅଇ
ବରଷାରେ ଦୁଇଶତ ଦଶ ବିକାଶଇ ।
ଏମନ୍ତେ ଏ ଷଡ଼ଋତୁ କିରଣ ବିଭାଗ
ଦିବସେ ଭ୍ରମିଣ ତୋର ମୃଦୁଶୈକ ଯୋଗ ।
ଅଶେଷ ମହିମା ନାଥ କହନ୍ତେ ନ ସରେ
ସୁଧାରସ ଭୋଗୀ ତୁହି କରତେ ସଂସାରେ ।
ଅନ୍ଧକାର ନଷ୍ଟି ଏକା ତୁହି ଦିବାପାରୁ
ଉପୁଜି ଧରଣୀ ତୁହି ବାଞ୍ଛା କଳ୍ପତରୁ ।

ଜଳ ଚନ୍ଦନ ଦେଇ ଯେ କରେ ତୋର ପୂଜା
ସପ୍ତଦ୍ୱୀପା ପୃଥିବୀରେ ହୁଅଇ ସେ ରାଜା ।
ମନବାକ୍ୟେ ସ୍ମରଣଯେ କରେ ତୋର ନାମ
ଧନ ପୁତ୍ର ଲଭଇ ସେ ପୂରଇ ତା କାମ
ରୋଗ ଶୋକ ବାଧା ଆଦି ସବୁ କରୁ ନାଶ
ଯାହାର ଯେ ମନ ବାଞ୍ଛା ଲଭଇ ଅବଶ୍ୟ ।
ଅନେକ ପୁଣ୍ୟରବଳେ ଯେ ତୋତେ ସେବନ୍ତି
ଶତେ ଜନ୍ମ ପର୍ଯ୍ୟନ୍ତେ ନ ଲଭେ ଦୁର୍ଗତି ।
ତୋହର ମହିମା ନାଥ କହିବେ ବିବୁଧ
ଅବିକାର ନାଥ ତୋର ସବୁ କାର୍ଯ୍ୟ ସିଦ୍ଧ ।
ମୋର ଦୋଷ ଆହେ ନାଥ କରିବା ଉପେକ୍ଷା
ସର୍ବଭୂତ ଅନ୍ତର୍ଯ୍ୟାମୀ କର ତୁମ୍ଭେ ରକ୍ଷା ।
ନଲଗୁ ଯେ କିଛୁ ଯମଦଣ୍ଡ ବାଧାଭୟ
ଅନୁଗ୍ରହ ସାଗର ହେ ହୋଇବା ସଦୟ ।
ସଂସାର ସାଗରୁ ନାଥ କର ମୋତେ ପାର
ଅତି ଗହନ ଶାସ୍ତ୍ର ଏ ଗମ୍ଭୀର ସାଗର ।
ଅମିତ ଅକୀର୍ତ୍ତି କରେ ସଙ୍ଗଦୋଷ ପଶି
ମାନବ ଶରୀର ନାଥ ପାଇଅଛୁ ଆସି ।
ତୁମ୍ଭେ ଜାଣ ନାଥ ମୋର ପୂର୍ବ ଜନ୍ମକଥା
ନିଜଭୂମି ନ ପାଇ ମୁଁ ପାଉଅଛୁ ବ୍ୟଥା ।
ପାପ ଜ୍ଞାନ ଖଣ୍ଡି ବହେ ସଦଜ୍ଞାନ ଦେଇ
ଯେ ମୋହର ନିଜସ୍ଥାନ ପାଇବ ଯେ ମୁକ୍ତି ।
ଭକତ ଯେମନ ହୋ ନାଥ ମାଗୁଅଛୁ ବର
ଦିନକର ନାଥ ମୋତେ ଅନୁଗ୍ରହ କର ।
ତୁମ୍ଭେ ଯେବେ ଆଜ୍ଞା ନ କରିବ ଦେବସ୍ୱାମୀ
ସହସ୍ର ବାର ତୁମ୍ଭଙ୍କୁ କହୁଛୁ ପ୍ରଣମି ।
ସ୍ତୁତି କରୁଅଛୁ ଉଭାହୋଇ ତୋ ସମ୍ମୁଖରେ
ଦଇମା ହେଉଛୁ ରଖ ଗୁପ୍ତସାଇଁ ବାରେ ।
ମୋହର ନାମ ଅଚ୍ୟୁତ ମୁଁ ଅତି ପାମର
କେବଳ ଭରସା କରିଅଛୁ ତୋ ପୟର ।

—o—

## କଂସ ସହିତ ଭୀଷ୍ମଙ୍କର ଯୁଦ୍ଧ ଓ ମିତ୍ରତା

ଶୁକମୁନି କହନ୍ତି ହୋ ପରୀକ୍ଷ ତୁ ଶୁଣ
ଆଦ୍ୟଖଣ୍ଡ ବାଣୀ ହରିବଂଶ ଯେ ପୁରାଣ ।
ବାଣାସୁର ମନ୍ତ୍ରୀ ମୁଖ ଶୁଣି ବୋଲେ କଂସ
ତୋ ରାଜାକୁ ଡାକ ଯେନଆସ ମୋର ପାଶ ।

କଂସ ମୁଖୁଁ ଶୁଣି ମନ୍ତ୍ରୀ ବେଗେ ଗଲା ଧାଇଁ
ବାଣାସୁରକୁ କହିଲା ସକଳ ମଣାଇ ।
ଅଇଲା ସେ ବାଣାସୁର ମନ୍ତ୍ରୀର ସଙ୍ଗତ
ସହସ୍ର ଭୁଜେ କଂସକୁ କଲା ଦଣ୍ଡବତ ।
ଆପେ କଂସ ଉଠି ତାକୁ ଧରି କଲା କୋଳ
ଆସନେ ବସାଇ ବୋଲେ ଆହୋ ମହୀପାଳ
ସହସ୍ର ଭୁଜ ତୁମ୍ଭର ହୋଇଲା କେମନ୍ତେ
ବାଣାସୁର ବୋଲେ ହର ବରଦେଲେମୋତେ
ବହୁତ କଷ୍ଟେ ସେବିଲି ମୁଁ ହର ପାର୍ବତୀ
ଅନେକ କାଳେ ପ୍ରସନ୍ନ ହେଲେ ପଶୁପତି ।
କରେ ଡମ୍ବରୁ ବଜାଇ ବୃଷଭ ପିଠିରେ
ଗଙ୍ଗାଦେବୀ ମଣ୍ଡଳରେ ଜଟାର ଭିତରେ ।
ବାମାଙ୍ଗେ ପାର୍ବତୀଦେବୀ ପାଉଛନ୍ତି ଶୋଭା
ବୋଇଲେ ରେ ବାଣାସୁର ବରମାଗ ଦେବା
ମୁଁ ବୋଇଲି ନାଥ ମୋତେ କରିବା ଅମର
ଅସ୍ତୁ ହେଉ ବୋଇଲେ ସେ ଭୋଳାମହେଶ୍ୱର
ସନ୍ତୋଷେ ପାର୍ବତୀଦେବୀ କଲେ କ୍ଷୀରଦାନ
ସହସ୍ରେ ଭୁଜ ତୋହର ହେଉ ଅରେ ବାଣ ।
ଆଜଠାରୁ ଆମ୍ଭର ତୁ ହୋଇଲୁ ତନୟ
ତିନି ଭୁବନରେ ତୁହି ହୋଇବୁ ଅଜୟ ।
ସହସ୍ର ହାତେ ସହସ୍ର ଶସ୍ତ୍ର ତୁ ଧରିବୁ
ଏକାଥରକରେ ତାହା ତୁ ମାରି ପାରିବୁ ।
ଏମନ୍ତ କହି ଅନ୍ତର ହେଲେ ଦେବ ଦେବୀ
ତେଣୁ ତିନି ପୁର ଲୋକେ ମୋର ପାଦ ସେବି
ନଜାଣି ମୁଁ ତୁମ୍ଭ ଅଶ୍ୱ ନେଲି ଆହୋ ରାୟେ ।
ପଛେ ଜାଣି ମନ୍ତ୍ରୀସଙ୍ଗେ ପଠାଇଲି ହୟେ ।
ଲଜ୍ଜାଭରେ ନ ଆସିଲି ତୁମ୍ଭର ପାଶକୁ
ତୁମ୍ଭ ଆଜ୍ଞା ପାଇଣ ମୁଁ ଅଇଲି ଏଠାକୁ
କଂସ ବୋଇଲା ଆମ୍ଭେ ଯେ ହୋଇଲୁ ପ୍ରସନ୍ନ
ସୁଖେ ରହି ରାଜ୍ୟ ତୋର କର ତୁ ରାଜନ ।
ଏମନ୍ତ କହି ମେଲାଣି ଦେଇ କଂସରାୟ
ମେଲିଦେଲା ସେ ଲକ୍ଷଣବନ୍ତ ପାଟହୟ ।
ହସ୍ତିନା ପୁର ମଧ୍ୟରେ ସେ ଅଶ୍ୱ ପଶିଲା
ବଚିତ୍ର ବୀର୍ଯ୍ୟ ନାମେ ସେ ରାଜ୍ୟେ ରାଜାଥିଲା
ଖବର ଜଣାଇଲା ଯାଇଁ ନୃପତି ସମ୍ମୁଖରେ
କଂସ ନାମରେ ନୃପତି ମଥୁରା ନଗରେ ।
ଉଗ୍ରସେନ ରାଜାର ସେ ଅଟଇ ନନ୍ଦନ
ଦିଗବିଜେ କରୁଅଛି ସଙ୍ଗେ ଘେନି ସୈନ୍ୟ ।
ପାଟଅଶ୍ୱ ମେଲି ଅଛି ଆଗରେ ତାହାର
ପଛରେ ଗୋଡ଼ାଇଛନ୍ତି ସଇନ୍ୟ ଅପାର ।
ଜରାସନ୍ଧ ସମ୍ବନ୍ଧ ସେ ନୃପତି ଜାଣିଲା
ବାଣାସୁରକୁ ଜିଣିଣ ଏପୁରେ ପଶିଲା ।
ଅଶ୍ୱ ଗୋଟି ଆମ୍ଭପୁରେ ଅଛଇ ମହିମା
ନୃପତି ବୋଇଲା ତାକୁ ଧରି ହୋ ଜାଣିମା
ଅଶ୍ୱଶାଳେ ବାନ୍ଧି ରଖ ଅତି ଯତ୍ନ କରି
ଦେଖିବା ତାହାର କେତେସୈନ୍ୟସେ କପରି
ମନ୍ତ୍ରୀକି କହଇ ଯାଇଁ ସାଜୁ ମୋର ସୈନ୍ୟ
ସାତ ଅକ୍ଷୌହିଣୀ ମୋର ବଳ ବିଦ୍ୟମାନ
ନ ଜାଣେ କି ମୋର ନାମ ଉଗ୍ରସେନ ସୁତ
ବିଚିତ୍ରବୀର୍ଯ୍ୟ ନୃପତି ହସ୍ତିନାର ନାଥ ।
ରାଜାଙ୍କ ମଣ୍ଡଳମଣି ସାରଥିର ଯେନା
ସାରଥିକି କହ ରଥ ସାଜି ଆଣୁ ବନା ।
ଏମନ୍ତ କହୁଣ ଖପେ ହୋଇଲେକ ସଜ
ଡଗର ଜଣାଇଲା ଯେ ଶୁଣ ଭୋଜରାଜ ।
ହସ୍ତିନାପୁର ନୃପତି ବାନ୍ଧିଲା ତୋ ହୟ
ବହୁତ ପୁଣି ପ୍ରତିଜ୍ଞା କଲା ସେହି ରାୟ ।
ଯୁଦ୍ଧର ନିମନ୍ତେ ଆଟ କରୁଅଛି ସଜ
ବିଚାରିଣ କାର୍ଯ୍ୟକର ତୁହେ ଦେବରାଜ ।
କୋପେ କଂସାସୁର ଆଖି କଲା ରକ୍ତବର୍ଣ୍ଣ
ଅଷ୍ଟମଲ୍ଲଙ୍କୁ ବୋଇଲା କି ବିଚାର ପୁଣ ।
କେଶୀ ବୋଇଲା ବେଢ଼ିବା ଯାଇଁ ତାର ପୁର
କବାଟ ଭାଙ୍ଗି ପଶିବା ଗଡ଼ରେ ତାହାର ।
କଂସ ବୋଇଲା ବିଳମ୍ବ ନକର ଯା ବେଗେ
ହାଟ ବାଟ ଘର ଦ୍ୱାର ଭାଙ୍ଗ ଯାଇଁ ଆଗେ ।
ଧାଇଁଲେ ସେ ଯଦୁବଳ ରାଜାଆଜ୍ଞା ପାଇ
ହସ୍ତିନା ପୁର ବେଢ଼ିଲେ ତିଳେ ଭୟ ନାହିଁ ।
ଅଷ୍ଟମଲ୍ଲ ଗଡ଼ଭାଙ୍ଗି ପଶିଲେ ଭିତରେ
ଡଗର ଯାଇ ଜଣାଏ ନୃପତି ସମ୍ମୁଖରେ ।
ଶୁଣିଣ ବଚିତ୍ରବୀର୍ଯ୍ୟ କ୍ରୋଧରେ ଧାଇଁଲା
ଅଷ୍ଟମଲ୍ଲଙ୍କ ଉପରେ ବାଣ ବରଷିଲା ।
କକଡ଼ାମାସରେ ଯେସନ୍ତେ ପଡ଼େ ଜଳଧାର
ତେସନେ ଗଗନୁ ଶର ପଡ଼େ ନିରନ୍ତର ।

ତିଳେ ନ ଭେଦ ଅଙ୍ଗରେ ପଡ଼ଇ ଉପୁଡ଼ି
କେଶୀର ରଡ଼ ସାକ୍ଷାତେ ମେଘ ଘଡ଼ଘଡ଼ି ।
ଏମନ୍ତ ଦେଖିଣ ସ୍ୱର ଗଲା ବେଗେ ଧାଇଁ
କେଶ ମୁକୁଳା କଟୀରେ ବସ୍ତ୍ର ନ ରହଇ ।
ଭୀଷ୍ମଦେବଙ୍କ ଗ୍ରାମରେ ପଡ଼ି ଗଣ୍ଡଗୋଳ
ଉଠି ଭଗ୍ନ ହୋଇ ଉଚ୍ଚ ପାରଇ ବୋବାଳି ।
ଗଙ୍ଗାର ନନ୍ଦନ ଶୁଣି ବୋଇଲେ କି ହେଲା
ବେଦନ କରୁ କପାଇଁ କି ଦୁଃଖ ପଡ଼ିଲା ।
ଗଦଗଦସ୍ୱରେ ସ୍ୱର କରଇ ଉତ୍ତର
ରାଜା ପଠାଇଲେ ମୋତେ ତୁମ୍ଭର ଗ୍ରାମର ।
ଉଗ୍ରସେନର ନନ୍ଦନ କଂସ ମହାରାଜା
ଜଗବଜେ କରୁଅଛୁ ବଜାଇଣ ବାଜା ।
ମଥୁରା କଟକ ଗୋଟା ତା ରାଜ୍ୟ ଅଟଇ
ପାଞ୍ଚ ଅଶ୍ୱ ଦେଇଅଛୁ ଆଗରେ ଚଳାଇ ।
ନୃପତି ଶୁଣି କୋପରେ ସେ ଅଶ୍ୱ ଆଣିଲେ
ଯତ୍ନକରି ଅଶ୍ୱଶାଳେ ବାନ୍ଧିଣ ରଖିଲେ ।
ଶୁଣି କଂସ ରାଜା କୋପେ ସଇନ୍ୟ ପଠାଇ
ଶତେପୁର କରି ଗଡ଼ ବେଢ଼ିଣ ଅଛଇ ।
ଅଙ୍କଳିତ ଆଠ ଚାରି ବଳ ଅପ୍ରମିତ
କବାଟ ଲର୍ଗି ଗଡ଼ରେ ପଶନ୍ତେ ବହୁତ ।
ସ୍ୱର ମୁଖୁଁ ଶୁଣି ରାଜା ପଶିଲେ ସମରେ
ଦେଖି ତାହା ଅଷ୍ଟମଲ୍ଲେ ମହାରୋଷଭରେ ।
ଆଗଭର ହେଲେ ରଥ ଗଜ ପତ୍ତି କରି
ନୃପତି ଆଗରେ ଉଭାହେଲେ ଶସ୍ତ୍ର ଧରି ।
ଧନୁଧରି ନୃପବର ଅର୍ଦ୍ଧଚନ୍ଦ୍ର ବାଣ
ତିଳେ ନ ଭେଦଇ ଅଙ୍ଗ ବଜ୍ରଠାରୁ ଟାଣ ।
ଦେଖି ଭୀଷ୍ମ ନୃପତିଙ୍କି କଣ୍ଠୁ ନ ସ୍ପୁରଇ
ତୁମ୍ଭ ନିକଟକୁ ମୋତେ ପଠାଇଲେ କହି ।
ବେଗହୋଇ ଆସ ତେବେ ବିଳମ୍ବ ନ କର
ଶୁଣି ମହାକୋପ କଲେ ଗଙ୍ଗାର କୁମର ।
ରଥେକ ଆରୋହି ବେଗେ ମିଳିଲେ ସମରେ
ବିଚିତ୍ରବୀର୍ଯ୍ୟ ଯେ ଶର ମାରେ ନିରନ୍ତରେ ।
ଶେଲ ଚକ୍ର କୁନ୍ତ ଯଷ୍ଟି ଗଦା ମୁଦ୍ଗର
ଅଷ୍ଟମଲ୍ଲଙ୍କ ଉପରେ ପଡ଼ି ହୁଏ ଚୂର ।
ପର୍ବତେ କୁଆ ପଥର ପଡ଼ଇ ଯେସନ
ଅଷ୍ଟମଲ୍ଲ ଅଷ୍ଟକୁଳ ପର୍ବତ ସମାନ ।

ରହିଛନ୍ତି ତିଳେମାତ୍ର ମନେ ନାହିଁ ଶଙ୍କା
ଦେହେ ପଡ଼ି ନାରାଚର ମୁନ ହୋଏ ବଙ୍କା ।
ହସନ୍ତି ସେ ଟହ ଟହ ହୋଇ ଆଠବୀର
ବୋଲନ୍ତି ମୂଢ଼ା ବୁଦ୍ଧି ନାହିଁ ଯେ ତୋହର ।
ସୃତମ୍ଭେ ପର୍ବତକୁ ଟାଳି ନେଉଁ ଭୁଜ
ଏହିକ୍ଷଣି ଯମପୁର ଦେଖିବୁରେ ଯାଇଁ ।
ତିନିଭୁବନ ସାଧିଲୁ ଆମ୍ଭେ ଅଷ୍ଟମଲ୍ଲ
ଆମ୍ଭ ପାଦଭରେ ପୃଥ୍ୱୀ ହୁଏ ଦଲ ଦଲ ।
ନାମ ଶୁଣି ଇନ୍ଦ୍ରହସ୍ତୁ ବଜ୍ର ପଡେ ଖସି
ଯମଦେବତାର କାଳଦଣ୍ଡ ଛୁଟି ପଡ଼େ ।
ଜରାସନ୍ଧ ମହାରାଜା ଡରେ ଦେଲା ଝିଅ
ଯେଉଁ କଂସ ମହାରାଜା ଉଗ୍ରସେନ ପୁଅ ।
ଦ୍ୱିମିଳ ଦାନବ ମାରି ସାଧିଲୁ ମସ୍ତକ
ଧନୁଶରେ ସେ ବାଳକୁ ଜିଣି ପାରୁ ତୁ କି ।
ଆମ୍ଭଙ୍କୁ ତ ଜିଣିପାରୁନାହୁଁ ତୁ ସମରେ
ଭୀଷ୍ମଦେବ ଶୁଣି ଆଗେ ହେଲେ କୋପଭରେ
ଗଙ୍ଗାନନ୍ଦନ ଅତ୍ୟନ୍ତ ମହା ଧନୁର୍ଦ୍ଧର
ପରମ ବୈଷ୍ଣବ ବିଷ୍ଣୁ ଭକତ ଆବର ।
ଆଠଗୋଟା ବାଣ ବାଛୁ ବନ୍ଧିଲେ କ୍ରୋଧରେ
ଧନୁରୁ ସେ ବାଣ ଯାଇଁ ମିଳି ଗଗନରେ ।
ଭସ୍ମଙ୍କର ମୂର୍ତ୍ତିଧରି ଅଇଲେକ ଧାଇଁ
ବଜ୍ରଠାରୁ ଅଧିକ ତେଜ ବିକାଶଇ ।
ଛୁରୀ କାତି ଖଣ୍ଡା ଶର ଶକତି ତୋମର
କୋଟି କୋଟି ତା ଭିତରୁ ହୁଅଇ ବାହାର ।
ଯେସନ ହାବେଳିହୋଇ ବାଣ ପଡ଼େ ଯାଇଁ
ତେସନ ବାହାର ସୈନ୍ୟଉପରେ ପଡ଼ଇ ।
କାହାର ଛିଡ଼ଇ ହାତ କାହା ଗୋଡ଼ ଛିଡ଼େ
ହସ୍ତି କୁମ୍ଭସ୍ଥଳେ ଚକ୍ର ମୁଦ୍ଗର ପଡ଼େ ।
ଗର୍ଜନ କରି ପଡ଼ନ୍ତି ପଳାନ୍ତି କେ ଡରେ
ଅଶ୍ୱଙ୍କର ଶିର ଛିଡ଼ି ପଡ଼ଇ ଭୂମିରେ ।
ରଥୀଙ୍କ ହସ୍ତରୁ ଶସ୍ତ୍ର ହୁଏ ଖଣ୍ଡ ଖଣ୍ଡ
ଭୀଷ୍ମରେ ଯାଦବବୀର ହେଲେ ଲଣ୍ଡଭଣ୍ଡ ।
କଂସ ନୃପତିର ପାଦେ ପଶିଲେ ଶରଣ
ବୋଇଲେ ଗଙ୍ଗାନନ୍ଦନ ବାଣ ଗରୁଟାଣ ।
ପର୍ଶୁରାମ ପରି କ୍ଷତ୍ରୀ ଯାକୁ ଗଲା ହାରି
ଯାର ଇଚ୍ଛାମୃତ୍ୟୁ ସେହି ବୀର ଧନୁ ଧରି ।

ବାଣେ ଦେଖ ଆକାଶକୁ ଜଳନ୍ତୁ ଉଜ୍ଜ୍ୱଳ
ଗଗନରେ ଦିଶୁନାହିଁ ମାର୍ତ୍ତଣ୍ଡମଣ୍ଡଳ ।
ଭୀଷ୍ମ ପ୍ରତିଜ୍ଞା ବୋଲି ଯେ ଜଗତେ ବିଖ୍ୟାତ
ଆଠଗୋଟି ଶରେ ତିନିପୁର ଚମତ୍କୃତ ।
ମହାବୀର କଂସ ଶୂନ୍ୟ ମଣ୍ଡଳକୁ ଚାହିଁ
କ୍ରୋଧଭରେ ରଥପରୁ ପଡ଼ିଲାକ ଡେଇଁ ।
ପକ୍ଷୀପ୍ରାୟ ଉଡ଼ିଗଲା ବାଣ ନିକଟକୁ
ଧରିବାପାଇଁ ସେ ହସ୍ତ ବଢ଼ାଇଲା ତାକୁ ।
ମହାମନ୍ତ୍ରବଳେ ବାଣ ମହାବଳବନ୍ତ
ବରଷନ୍ତି ଶକ୍ତିଶୂଳ ଆଦି ନାନାଅସ୍ତ୍ର ।
ବାଣକୁ ନ ଧରିପାରି ଲାଜପାଇ କଂସ
ମନେ ବିଚାରିଲା ଅଷ୍ଟମଲ୍ଲ ଗଲେ ନାଶ ।
କି ବୁଦ୍ଧି କରିବି ମୋତେ ବୁଦ୍ଧି ଦିଶୁନାହିଁ
ଦେବଗଣଙ୍କ ଆନନ୍ଦ କେ ପାରିବ କହି ।
ଧନ୍ୟ ଧନ୍ୟ ବୀର ଭୀଷ୍ମ ଗଙ୍ଗାର ନନ୍ଦନ
ଧନ୍ୟ ତୋର ଅସ୍ତ୍ରଶିକ୍ଷା ଧନ୍ୟ ତୋ ସନ୍ଧାନ
ଆଠଗୋଟା ବାଣେ ତୋର କମ୍ପେ ତିନିପୁର
ଏମନ୍ତେ ପ୍ରଶଂସା କଲେ ଭୀଷ୍ମକୁ ଅମର ।
ଅଷ୍ଟମଲ୍ଲଙ୍କ ଉପରେ ପଡ଼ିଲା ସେ ଆସି
ସିଂହ ଯେସନ ଗଜକୁ ବଳେ ମାଡ଼ି ବସି ।
ଅଚେତନହୋଇ ଭୂମି ଉପରେ ଶୋଇଲେ
ଉଭୟରେ ଯାଦବବଳ ସଂଗ୍ରାମ ତେଜିଲେ ।
ଦେଖି କଂସ ରଥଚଢ଼ି ହେଲା ଆଗୁସାର
ତାହାରମୂରତି ଦେଖି ଗଙ୍ଗାର କୁମର ।
ମନେ ବିଚାରିଲେ ଏ ତ ଅଜେୟ ସଂସାରେ
ଚଉକୁ ରଖିଲେ ନେଇ ଶ୍ରୀହରି ଉଭୟରେ ।
ନାରଦ ମୁନି ଏକାକେ ହୋଇଲେ ପ୍ରବେଶ
ମୁନିଙ୍କ ଦେଖି ରଥରୁ ଓହ୍ଲାଇଲା କଂସ ।
ପ୍ରଣମି ବୋଇଲା ମୁନି ମଲେ ଅଷ୍ଟମଲ୍ଲ
ଏ ମୂଢ଼ା ହୋଇଲା ମୋର ହୃଦୟକୁ ଶଲ ।
ଏହାକୁ ମାଇଲେ ମୋର ସିନା ପଉରୁଷ
ଏ ମୂଢ଼ାଯୋଗୁଁ ସରିଲା ମୋର କେତେ ଯଶ
ନାରଦ ବୋଇଲେ ତୁହେ ଶୁଣ ଭୋଜପତି
ଏ ଭୀଷ୍ମ ସଙ୍ଗେ ତୋହର କରାଇବା ପ୍ରୀତି ।
କଂସ ବୋଇଲା ପୀରତି କଲେ କି ମୋହର
ଜୀବନ ପାଇବେ ଅଷ୍ଟମଲ୍ଲ ମୁନିବର ।
ନାରଦ ବୋଇଲେ ଏହିକ୍ଷଣି ସେ ଉଠିବେ
ଏମନ୍ତ ପ୍ରବୋଧି ମୁନି ଗଲେ ତହିଁ ଜବେ ।
ଗଙ୍ଗାନନ୍ଦନର ପାଶେ ହୋଇଲେ ପ୍ରବେଶ
ଦୂରୁ ଦେଖିଣ ମୁନିଙ୍କି ଶାନ୍ତନୁର ଶିଷ ।
ରଥରୁ ଓହ୍ଲାଇ ମୁନି ଚରଣ ବନ୍ଦିଲେ
ଗଙ୍ଗାନନ୍ଦନକୁ ମୁନି ସୁକଲ୍ୟାଣ କଲେ
ଭୀଷ୍ମ ବୋଇଲେ ହେ ମୁନି ପଡ଼ିଲା ସଙ୍କଟ
ଅନର୍ଥ କରୁଛି ଆସି ଉଗ୍ରସେନ ସୁତ ।
ନାରଦ ବୋଇଲେ ଆମ୍ଭେ କରାଇବା ପ୍ରୀତି
କଂସରୂପେ କାଳନେମି ଦୈତ୍ୟ ଉତପତ୍ତି ।
ଶ୍ରୀକୃଷ୍ଣ ବିନା କାହାର ହସ୍ତେ ନ ମରିବ
ପ୍ରତାପୀ ହୋଇ ଏ ତିନିଭୁବନ ଜିଣିବ ।
ତୁହି ସାଧୁ ବଇଷ୍ଣବକୁଳ ଚୂଡ଼ାମଣି
ମହାଦୁଷ୍ଟ ଦୁଷ୍କୃତ ଏ ରାଜା ଉଗ୍ରସେନ ।
ପିତାଠାରୁ ବଳେ ରାଜ୍ୟ ନେଲା ଏହି ମୂଢ଼
କାମଦେବ ସଖା ଅଷ୍ଟମଲ୍ଲ ଅନ୍ତଗଡ଼ ।
ସାଧୁଲୋକ ଦୁଷ୍ଟଲୋକ ଦେଖି କରେ ଭୟ
ଧନ ଦେଇ ପାରେ ପଞ୍ଚୁ ହସ୍ତିନାର ରାୟ ।
ତୋହର ସଙ୍ଗେ କଂସର ରହିଥାଉ ପ୍ରୀତି
ବିଚିତ୍ରବୀର୍ଯ୍ୟକୁ ରାଇ ବୋଇଲେକ ଯତି ।
ଧନଦେଇ ସନ୍ଧିକର ଯାଉ ତୁନି ହୋଇ
ମୁନି ବଚନେ ନୃପତି ଗଲା ଧନ ନେଇ ।
ସନ୍ଧିକଲା କଂସସଙ୍ଗେ ହୋଇଲା ସେ ତୋଷ
ମୁନି ବୋଇଲେ ଏ ଭୀଷ୍ମ ଗଙ୍ଗାଦେବୀ ଶିଷ
ପ୍ରତିଜ୍ଞାବନ୍ତ କ୍ଷତ୍ରୀ ଏ ରାଜ୍ୟକଲା ତ୍ୟାଜ୍ୟ
ସାନ ଭାଇ ହେଲା ଏହି ପୁରେ ମହାରାଜା ।
ଏହାଙ୍କ ମାତା ଜାହ୍ନବୀ ଜାତକରି ଗଲେ
ପିତା ଶାନ୍ତନୁ ଏହାଙ୍କୁ ଯତନେ ପାଳିଲେ ।
ଦାସ ରାଜା ଦୁହିତାକୁ ବରିଲା ଶାନ୍ତନୁ
ଦାସରାଜା ବୋଇଲା ଯେ ଅଛି ତୋର ସୂନୁ
ମହାବୀର ଗଙ୍ଗାସୁତ ଜଗତେ ବିଖ୍ୟାତ
ମୋହର ଦୁହିତା ବିଭାହେଲେ ନରନାଥ ।
ତାର ପୁତ୍ର ରାଜ୍ୟେ ରାଜା ହୋଇ ନ ପାରିବ
ଜ୍ୟେଷ୍ଠ ଥାଉଁ କନିଷ୍ଠ କି ନରପତି ହେବ ।
ଏମନ୍ତ ଶୁଣି ଶାନ୍ତନୁ ମୁଖ ଗଲା ଶୁଖି
ଏହି ଭୀଷ୍ମ ପିତାଙ୍କର ମନଦୁଃଖ ଦେଖି ।

ବାସବରାଜା ନିକଟରେ ହୋଇଲେ ପ୍ରବେଶ
ବୋଇଲେ ପ୍ରତିଜ୍ଞା ମୋର ନୋହିବ ନରେଶ
ଦଶଦିଗପାଳଙ୍କୁ ମୁଁ କହେ ସାକ୍ଷୀକରି ।
ସତ୍ୟବନ୍ତି ପୁତ୍ର ନିଷ୍ଟେ ହେବ ଦଣ୍ଡଧାରୀ ।
ବାସବରାଜା ଶୁଣି ପୁଣ ଏମନ୍ତ ବୋଇଲେ
ତୁମ୍ଭର ପ୍ରତିଜ୍ଞା ତୁମ୍ଭେ ରଖିପାର ଭଲେ ।
ତୁମ୍ଭର ପୁତ୍ର କି ତୁମ୍ଭ ପ୍ରତିଜ୍ଞା ରଖିବ
ଶାସ୍ତ୍ର ଅନୁସାରେ ନିଷ୍ଟେ ରାଜ୍ୟ ରାଜା ହେବ
ଏହା ଶୁଣି ଏହି ଗାଙ୍ଗେୟ ସଭାମଧ୍ୟେ ଉଠି
ବୋଇଲେ ଗାଙ୍ଗେୟର କଥା ଆନ ନୋହିବଟି
ଆଜଠାରୁ ଦାର ତ୍ୟାଗକଲି ଏ ମୋ ପଣ
ଛାଡ଼ିଯା ସିନା ଅଟଇ ପୁତ୍ରର କାରଣ ।
ଏମନ୍ତ ଘୋର ପ୍ରତିଜ୍ଞା ଶୁଣି ଶୂନ୍ୟବାସୀ
ଧନ୍ୟ ଧନ୍ୟ ଗାଙ୍ଗେୟ ବୋଲି ବହୁତ ପ୍ରଶଂସି ।
ପରମ ବୈଷ୍ଣବ ଏହି ଗଙ୍ଗାର ନନ୍ଦନ
ଏହାର ସଙ୍ଗେ ପୀରତି କର ତୁ ରାଜନ ।
ଏହାରସଙ୍ଗେ ଗାଙ୍ଗେୟଙ୍କ ଚରଣ ବନ୍ଦିଲି
ମେଲାଣି ଦେଇ ବହୁତ ପୁଣି ପ୍ରଶଂସିଲି ।
ଏ ସମୟେ ଅଷ୍ଟମଲ୍ଲେ ପାଇଲେ ଚେତନ
ଦେଖିଣ ଆନନ୍ଦ ଇନ୍ଦୁମତୀର ନନ୍ଦନ ।
ମୁନିଙ୍କି ବୋଇଲା ତିନିପୁର କଲି ଜୟ
ଏ ଜମ୍ବୁ ଦ୍ୱୀପକୁ କିଏ ଧରିଅଛି କହ ।
ନାରଦ ବୋଇଲେ ମେରୁଗିରି ଶୁଭଙ୍କର
ଶୁଣି କୋପେ ସେ ପ୍ରତାପୀ କଂସ କରି ଦମ୍ଭ
ବୋଇଲା ମେରୁ ଗିରିକି ପକାଇବି ତାଡ଼ି
ବଳବନ୍ତ ବୋଲାଇଛି ପୃଥିବୀକି ଧରି ।
ଏମନ୍ତ ବୋଲି ଚଢ଼ିକି ଦଣ୍ଡ ଚଳାଇଲା
ମେରୁଗିରି ନିକଟରେ ପ୍ରବେଶ ହୋଇଲା ।
ଅଣ୍ଟୁ ଭିଡ଼ି ହୋଇ କରେ ଧଇଲା ମେରୁକୁ
ହୁଁକାର କରି ଉଠାନ୍ତେ ଧରି ଉପରକୁ ।
ଟଳେ ନ ଉଠିଲା ଗିରି କର୍ମାଳିକ ମଲ୍ଲ
ଅଚେତ ହୋଇ ପଡ଼ିଲା କଂସରାଜା ତହିଁ
ଚେତାପାଇ ବୋଲେ ଧନ୍ୟ ତୁହେ ଗିରିବର
ଏ ମହୀକି ବହିବାର ଶକ୍ତି ଅଛି ତୋର ।
ଏମନ୍ତେ ପ୍ରଶଂସି ରମ୍ୟସ୍ଥାନ ଦେଖି ତହିଁ
ପଥଶ୍ରମ ନିବାରିଲା ଦନା ସ୍ଥିର ରହି ।

ଜୟ ତୁ ନାଥ ଅନନ୍ତ ମୁରାରି ଅଚ୍ୟୁତ
ଜୟ ତୁ ଜୟ ଅନାଦି ନାଥ ଆଦିଭୂତ ।
ଶୂନ୍ୟମଣ୍ଡଳରେ ତୋର ଘର ଠୂଳ ଶୂନ୍ୟ
ଅନାଦି ଆଦିମୂଳ ତୁ ଟିଅଁ ଚଇତନ୍ୟ ।
ଅପାର ମହିମା ତୋର ବେଦେ ଅଗୋଚର
ଜ୍ଞାନୀକି କେବଳ ଏକା ତୋରୂପ ଗୋଚର ।
ଦୃଶ୍ୟକୁ ଅଦୃଶ୍ୟ ତୁହି ଅଦୃଶ୍ୟକୁ ଦୃଶ୍ୟ
ଭାବଗ୍ରାହୀ ନାଥ ଏକା ବର ତୁ ଅବଶ୍ୟ
ଅଚ୍ୟୁତାନନ୍ଦ ଦାସ ମୁଁ ନରତେ ତୋ ଦାସ
ଦୟାକରି ପାଦତଳେ ଦେବୁ ମୋତେ ବାସ

———

## ଦେବକୀ ବିବାହ

ଏଥୁ ଅନନ୍ତରେ ଶୁଣ ପରୀକ୍ଷିତ ରାୟେ
ଇନ୍ଦୁମତୀ ଉଗ୍ରସେନର ନୃପତିକି କହେ ।
ହେ ନାଥ ଦେବକୀ ପାଇଁ ନ ଖୋଜିଲ ବର
କେତେକାଳ ରହିଥିବ ସେ ଆମ୍ଭର ଘର ।
ଆମ୍ଭ ହସ୍ତେ ପିତୃଲୋକେ ନ ପାଇବେ ଜଳ
ପ୍ରୋଢ଼ା କନ୍ୟା ରଖିବାର ନୋହେ ମହୀପାଳ
ରାଣୀ କଥା ଶୁଣି କହେ ରାଜା ଉଗ୍ରସେନ
ଦୁଷ୍ଟ ପ୍ରତାପୀ ତୋହର ଜ୍ୟେଷ୍ଠ ଯେ ନନ୍ଦନ
ଡରେ ତାକୁ ରାଜ୍ୟଭାର ଦେଲି ମହ ଦେଇ
ବର ଖୋଜିବି କେମନ୍ତେ ତାକୁ ନ ଜଣାଇ ।
ଇନ୍ଦୁମତୀ ବୋଇଲା ସେ ନାହିଁତ ରାଜ୍ୟରେ
କେବେ ଆସିବ ଜାଣିବା ଆମ୍ଭେ କି ପ୍ରକାରେ
ତାକୁ ସ୍ୱର୍ଣ୍ଣ ୨ କନ୍ୟା ଭ୍ରଷ୍ଟା ହୋଇ ଯେବେ
କି ବୁଦ୍ଧି କରିବା ନାଥ କହ ଆମ୍ଭେ ତେବେ
ମହା ଦେଈ କଥା ରାଜା ବିଚାରିଲା ମନେ
ଗର୍ଗ ମୁନିଙ୍କି ଡକାଇ ବସାଇ ଆସନେ ।
ବୋଇଲା ହେ ଗୁରୁ କହ କବୁଦ୍ଧି କରିବି
ଦୁହିତା ଗୋଟି କାହାକୁ କହ ବିଭା ଦେବି ।
କୁଳଶ୍ରେଷ୍ଠ ଗୁଣବନ୍ତ ଆବର ସୁନ୍ଦର
ଏମନ୍ତ ମୋତେ ଗୋଟିଏ ଆଣି ଦିଅ ବର ।
ଗର୍ଗମୁନି ବୋଇଲେ ତୁ ଶୁଣହେ ରାଜନ
ବସୁଦେବ ଅଟଇ ଯେ ସୁଦେବ ନନ୍ଦନ ।
ଗୁଣବନ୍ତ ରୂପବନ୍ତ କୁଳବନ୍ତ ସେହି
ଦୁହିତା ଗୋଟି ପ୍ରଦାନ କର ତାକୁ ତୁହି ।

ମୁନଙ୍କ କଥା ନୃପତି ମନକୁ ଆଇଲା
ଇନ୍ଦ୍ରମନ୍ତ୍ରୀ ରାଣୀ ଆଗେ ବୁଝାଇ କହିଲା ।
ରାଣୀ ବୋଇଲା ହେ ନାଥ ପିତାଦତ୍ତ କନ୍ୟା
ତୁମ୍ଭର ମନ ଯାହାକୁ ତାକୁ ଦିଅ ଜନା ।
ମତେ କି ପଚାର ନାଥ ମୁଁ ତୁମ୍ଭର ଦାସୀ
ଶୁଭଦିନ ବୁଝି ଦେନ ବର କନ୍ୟା ରାଶି ।
ଏମନ୍ତ ଶୁଣି ନୃପତି ମୁନଙ୍କି ପଚାରି
ବର କନ୍ୟା ରାଶି ଧରି ବୁଝି ତପସ୍ୱୀ ।
ମୁନି ଖଡ଼ୀ ଧରି ଗାର କାଟିଣ ବୁଝିଲେ
ଏକରାଶି ଦୁହିଙ୍କର ପଡ଼ିଲା ବୋଇଲେ ।
ରାଜଯୋଟକ ହୋଇଲା ନାହିଁ କିଛି ଦୋଷ
ବର୍ଣ୍ଣରେ ପୁଣି ହୋଇଲେ ବରକନ୍ୟା ବୈଶ୍ୟ
ଗଣରେ ଯେ ଦେବଗଣ ହୋଇଲାଏ ଶୁଭ
ନାଗନାଡ଼ୀ ନାହିଁ ନଷ୍ଟେ ବିଭାଘର ହେବ ।
ବିଭାଯୋଗ ଦୁହିଙ୍କର ଫିଟିଛି ଆବର
ବାରମାସରେ ଉତ୍ତମ ମାସ ମାର୍ଗଶିର ।
ତୃତୀୟାତିଥି ଶୁକଳ ପକ୍ଷ ଶୁକ୍ରବାରେ
କନ୍ୟା ଲଗ୍ନ ପଡ଼ିବ ଯେ ରାତ୍ରାର୍ଦ୍ଧ ପ୍ରହରେ ।
ତାରା ଚନ୍ଦ୍ର ଯୋଗ ଶୁଭ ହୋଇଛି ରାଜନ
ବିଘ୍ନ ସଂକ୍ରାନ୍ତରେ ଯେ ଭୋଗ ଦଶଦିନ ।
ଏମନ୍ତ ଯୋଗରେ ତୁମ୍ଭେ କର ବିଭାଘର
ଉଗ୍ରସେନ ନୃପତିର ଆନନ୍ଦ ଅପାର ।
ପୁର ମଣ୍ଡାଇଣ ବିଭା ବେଦୀ ତିଆଇଲା
ବିଭାଘରର ସାମଗ୍ରି ମାନ ଅଣାଇଲା ।
ସୁଦେବର ପୁତ୍ରକୁ ସେ ଆଣିଲେ ବରି
ପୁରୋହିତ ଅଟନ୍ତି ସେ ଗର୍ଗ ତପସ୍ୱୀ ।
ବେଦୀରେ ବସିଣ ବର କନ୍ୟାକୁ ଅଣାଇ
ଶଙ୍ଖେ ଜଳ ତିଳ ଭରି ଆସେ ନରସାଇଁ ।
ବର ହସ୍ତେ ଦେଇ କନ୍ୟା ଦେଲେ ସମର୍ପଣ
ଯଉତୁକ ଦେଲେ ବାସ ଦାସୀ ଧନ ରତ୍ନ ।
କନ୍ୟା ଘେନି ବସୁଦେବ ଗଲା ନିଜପୁରେ
ଶୁକଦେବ କହନ୍ତି ଯେ ପରୀକ୍ଷ ଆଗରେ ।
ମେରୁ ପରବତେ କଂସ ରହି କିଛିଦିନ
ଅଷ୍ଟମଲ୍ଲଙ୍କୁ ବଧାଇ ଆପଣା ଆୟନ ।
ସତ୍ରାଜିତ ଅନାଧୃଷ୍ଟ ଉଦ୍ଧବ ଅକ୍ରୂର
ଏହାଙ୍କୁ ଆଦି ଯେତେକ ଥିଲେ ଯଦୁବୀର ।

ସମସ୍ତଙ୍କୁ ବସାଇଣ ବୋଲେ କଂସରାୟ
ପୃଥିବୀ ରାଜାଙ୍କୁ ଏବେ କଲି ମୁଁ ତ ଜୟ ।
ମଥୁରାକୁ ଯିବା ରାଜ୍ୟ ଖବର ବୁଝିବା
ରାଜ୍ୟଭୋଗ ଛାଡ଼ି ଏଥେ କେତେଦିନ ଥିବା ।
ସକଳେ ବୋଇଲେ ଦେବ ବିଜୟ ସରିଲା
ପୃଥିବୀଯାକ ଆମ୍ଭର ବଶରେ ରହିଲା ।
ଆଉ କାହିଁପାଇଁ ଥିବା ମଥୁରାକୁ ଯିବା
କଂସ ବୋଇଲା ଆହୁରି କଥାଏ କହିବା ।
ମଗଧ ରାଜ୍ୟକୁ ଚାଲ ଯିବା ଥାଟ ବାନ୍ଧି
ଦୁଇରାଣୀ ଅଛନ୍ତି ଯେ ବାପଘରେ ରହି ।
ତାହାଙ୍କୁ ଘେନି ପୁରକୁ ଯିବା ସିନା ଆମ୍ଭେ
ଥାଟ ମୋର ସଜକର ବହୁତ ଆରମ୍ଭେ ।
କଂସ ଆଜ୍ଞାପାଇ ଥାଟ ହୋଇଲେକ ସଜ
ମାହୁନ୍ତମାନେ ମଣ୍ଡାଇ ଆଗେ କଲେ ଗଜ ।
ରାଉତେ ଅଶ୍ୱ ସଜାଇ ଦେଲେ ତାର ପଛେ
ପଦାତି ବଳ ରହିଲେ ତାର କଛେ କଛେ ।
ରଥୀଏ ରଥ ସଜାଇ ତା ପଛରେ ଗଲେ
ଅଷ୍ଟମଲ୍ଲେ ତାହାଙ୍କର ପଛରେ ରହିଲେ ।
ସେନା ବଷୋଇ କରଣ ରାଜା ଚଉପାଶେ
ଦିବ୍ୟ ରଥ ଉପରେ କଂସ ଯାଇ ବସେ ।
ସମସ୍ତଙ୍କ ଆଗରେ ଯେ ବାଜୁ ଅଛି ବାଜା
ଗଗନରେ ଉଡ଼ୁ ଅଛି ବଗବଜେ ଧ୍ୱଜା ।
ଛତ୍ର ଚାମର ଝାଞ୍ଜଣୀ ଉଡ଼ଇ ତରାସ
ମଣିମା ମଣିମା ଡାକ ପଡ଼େ ଚଉପାଶ ।
ଗଣିକାଗଣ ନାଚନ୍ତି ନୃପତି ଛାମୁରେ
ସ୍ତୁତି ପାଠ କରୁଛନ୍ତି ଭାଟ କଏବାରେ ।
ଜଉତିଷ ପାଞ୍ଜି ଧରି ଦେଉଛନ୍ତି ଦିନ
ମଙ୍ଗଳ ଅଷ୍ଟକ ପାଠକଲେ ଦ୍ୱିଜଗଣ ।
ଗହଣରେ କଂସ ଚଳେ ଶ୍ୱଶୁର ଘରକୁ
ଦେଖାଉରେ ଧାଇଁ ଯାଇଁ ରାଜାର ଛାମୁକୁ ।
ବୋଇଲେ ତୁମ୍ଭ ଜୁଆଇଁ ଦିଗବିଜେ ସାରି
ଗହଣରେ ଆସୁଛନ୍ତି ପୁରକୁ ଆମ୍ଭରି ।
ଶୁଣି ମଗଧ ଈଶ୍ୱର ମଣ୍ଡାଇଲା ପୁର
ତୋଳାଇଲା ସ୍ଥାନେ ସ୍ଥାନେ ନାନାବିଧ ଘର
ହାତିଶାଳ ଘୋଡ଼ାଶାଳ ମନ୍ତ୍ରୀଙ୍କ ଉଆସ
ରାଜାଙ୍କ ପାଇଁ ନବର ପାଇକଙ୍କ ବାସ ।

ଘରେ ଘରେ ପୂର୍ଣ୍ଣକୁମ୍ଭ ସୁନାର କଳଶ
ଧବଳମସ୍ତ ହୋଇଲା ସେ ମଗଧ ଦେଶ ।
ହାଟ ବଜାର ପୂରିଛି ବିବିଧ ଦ୍ରବ୍ୟରେ
ପାଛୋଟି ନେବାପାଇଁ ଯେ ଅଇଲେ କୁମରେ ।
ସହଦେବ ନାମେ ପୁତ୍ର ମଗଧ ରାଜାର
ସଙ୍ଗତେ ଘେନି ଅନେକ ରାଜାର କୁମର ।
ତତକ୍ଷଣେ ଆସି ପାଛୋଟି ନେଲା ସେ କଂସକୁ
ତତ୍ତ୍ୱ କଲେ ମନ୍ତ୍ରୀଏ ନୃପତିମାନଙ୍କୁ ।
ସୂପକାରମାନେ ଅନ୍ନ ବ୍ୟଞ୍ଜନ ପରଷ
ସନ୍ତୋଷ ହେଲେ ସକଳେ ଭୋଜନରେ ବସି
ମଗଧଦେଶ ଉତ୍ସବ ଶୋଭାମାନ ଦେଖି
ପ୍ରଶଂସା କଲେ ନୃପତିମାନେ ହୋଇ ସୁଖୀ ।
ବୋଇଲେ ଧନ୍ୟ ଧନ୍ୟ ତୁ ମଗଧଈଶ୍ୱର
କେମନ୍ତେ ଅଳପ ଦିନେ କଲୁ ଏତେ ଘର ।
ଏତେଲୋକଙ୍କ ତତ୍ତ୍ୱ କଲୁ ଭଲକରି
ଶୁଣି ଆନନ୍ଦ ହୋଇଲା କଂସ ଦଣ୍ଡଧାରୀ ।
ଶଳାଙ୍କ ସାଙ୍ଗରେ ହୁଏ ନାନା ପରିହାସ
ରହିଲା ସୁଖେ ଶ୍ୱଶୁରଘରେ ଦିନାଦଶ ।
ଯିବାପାଇଁ ମଥୁରାକୁ ହେଲା ଉଦବେଗ
ମନ୍ତ୍ରୀଙ୍କି ଚାହିଁ ବୋଇଲା ହୁଅ ବେଗ ବେଗ
ଥାଟ ସଜ କରି ଯିବା ମଥୁରା ପୁରକୁ
ଦୂତ ପଠାଇଣ ଦିଅ ପିତାଙ୍କ ଛାମୁକୁ ।
ମଥୁରାପୁରେ ଉତ୍ସବ ହେବ ଘରେ ଘରେ
ରାଜାମାନଙ୍କ ତତ୍ତ୍ୱହେବ ଯେ ବିଧିରେ ।
ସବୁ ଯୋଗାଡ଼ ଖଞ୍ଜାଇ ରଖିଥିଲେ ପୁଣି
ରହିବା ଘର ତୋଳିବେ ଡକାଇ ବଢ଼ାଣି ।
କଂସ ଆଜ୍ଞାପାଇ ମନ୍ତ୍ରୀ ଲେଖା ଏକ ଲେଖି
ଦୂତଙ୍କ ହାତେ ପଠାଇ ଦେଲା ରଖି ସାକ୍ଷୀ ।
ପନ୍ଥେ ପନ୍ଥେ ଆନ ଦୂତ ଗଲେ କହିବାକୁ
ଲେଖାପାଇ ଉଗ୍ରସେନ ଡାକିଲା ପାତ୍ରଙ୍କୁ ।
ପୁତ୍ର ମୋର ବାହା ହୋଇ ଆସୁଛି ତତକ୍ଷଣେ
ଦେଖିବି ପୁତ୍ର ବଧୂଙ୍କୁ ଏ ବେନି ନୟନେ ।
ପବିତ୍ର ହେବ ମୋ ପୁର ପାଇବନା ଶୋଭା
ଜରାସନ୍ଧ ଦୁହିତାଙ୍କୁ କଂସ କଲା ବିଭା ।
ହେତ ପ୍ରହେତ ନାମରେ ବେନିକନ୍ୟା ତାର
ରୂପଗୁଣେ ସୁଲକ୍ଷଣୀ ଯୁବତୀ ଆବର ।

ବଳିକ ରାଜା ସେ ପୁଣି ମଗଧ ଈଶ୍ୱର
ଲକ୍ଷେ ରାଜାଙ୍କ ମଉଡ଼ମଣି ମହାବୀର ।
ତାକୁ ସମ୍ବନ୍ଧି ପାଇଲି ସିନା ଭାଗ୍ୟବଳେ
ଏବେ ମୋ ପୁର ମଣ୍ଡନ କର ଶୁଭବେଳେ ।
ଘରେ ଘରେ ପୁରେ ପୁରେ ହୋଇବ ଉତ୍ସବ
ଖାଇବା ସାମଗ୍ରୀମାନ ଭିଆଇ ରଖିବ ।
ତତ୍ତ୍ୱରେ ଅସନ୍ତୋଷ ନୋହିବେ ଯେପରି
ଏମନ୍ତ କହି ଘରକୁ ଗଲେ ଦଣ୍ଡଧାରୀ ।
ଇନ୍ଦୁମତୀ ରାଣୀଆଗେ କହିଲେ ସକଳ
ରାଣୀହଂସ ପୁରେ ଉଠେ ଆନନ୍ଦ ଚହଳ ।
ପୁରଲୋକ ଶୁଣି ହେଲେ ଆନନ୍ଦ ଅପାର
ସ୍ଥାନେ ସ୍ଥାନେ ବସାଇଲେ ହାଟ ଯେ ବଜାର
ବଢ଼ାଣୀମାନେ ଯେ ଲାଗି ତୋଳିଦେଲେ ଘର
ଖାଇବା ସାମଗ୍ରୀମାନ ରଖିଲେ ଅପାର ।
ଦାଣ୍ଡ ପହଁରଣ ଦେଲେ ଚନ୍ଦନର ଛେରା
ଲମ୍ବାନ୍ତି ଯେ ନାନା ପୁଷ୍ପ ଗୁନ୍ଥି କେରା କେରା
ସୁବାସ କୁସୁମମାନ ଲମ୍ବାଇଲେ ଟାଣି
ଦାଣ୍ଡଦ୍ୱାରେ ପକାଇଲେ ଗନ୍ଧ ଛରାପାଣି ।
କର୍ପୂର ଚନ୍ଦନଗୋଳ ଅଗଣାରେ ଦେଇ
ଇନ୍ଦ୍ର ଗୋବନ୍ଦ ଚାନ୍ଦୁଆ ଉପରେ ଟଣାଇ ।
ବହୁ ଆନନ୍ଦ ମଥୁରା ପୁର ନରନାରୀ
ଦେଖିବାକୁ ଶ୍ରଦ୍ଧା କରି ହାଟ ଦାଣ୍ଡ ପୂରି ।
ସୁବର୍ଣ୍ଣ ଥାଳୀରେ ଅର୍ଘ୍ୟମାନ ଯେ ପୂରାଇ
ସୁବର୍ଣ୍ଣ ଘଟେ ବଳିତା ଗୁଆ ଘୃତ ଦେଇ ।
ବସ୍ତ୍ରଉପରଣ ଦେଇ ହୋଇଣ ସୁବେଶ
କୁଳବଧୂମାନେ ଆସି ନଗରେ ପ୍ରବେଶ ।
କଂସ ଆସିବାକୁ ବାଟ ଚାହିଁଛନ୍ତି ମିଳି
ଅନେକ ନବବାଳୀଙ୍କ କରେ ଅର୍ଘ୍ୟଥାଳୀ ।
ମଥୁରାସମ୍ପଦ ଘେନି ଉଗ୍ରସେନ ରାୟେ
ବାଟକୁ ପାଛୋଟି ଗଲେ ପାଞ୍ଚଯୁଣ ଯାଏ ।
ଟମକ ନିଶାଣ ଢୋଲ ମୃଦଙ୍ଗ ବଜାଇ
ବାଟେ କଂସକୁ ଭେଟିଲେ ଉଗ୍ରସେନ ଯାଇଁ ।
ଦନ୍ତାବଳନପାକୁଳେ ହେଲେ ଉଗ୍ରସେନ
କଂସ ଆଗରେ ବାରତା ଦେଲେ ଚରଗଣ ।
ଶୁକଦେବ ତୁ ସାବଧାନେ ଶୁଣ ଜଗଜ୍ଜେଠି
ପିତା କୁମର ଅଇଲେ ବାଟକୁ ପାଛୋଟି ।

ଥୋକାଏ ଦୂରେ ଅଛନ୍ତି ଆସି ସେହୁ ଭକ୍ତ
ଆଜ୍ଞା ହେଲେ ସ୍ଥମୁକୁ ସେ ଆସିବେ ଗୋସାଇଁ
କଂସ ବୋଇଲା ପିତାଙ୍କୁ ଘେନି ବେଗେ ଆସ
ଶ୍ୱରେ କହୁଁ ଯାଇ ଉଗ୍ରସେନ ରାଜାପାଶ ।
ଝୀନ ବସ୍ତ୍ର ଘେନି କଂସ ପାଦ ପୋଛୁଦେଲା
ଚରଣରେଣୁ ଆଣିଣ ଶିରେ ଲଗାଇଲା ।
କରପଦ ଯୋଡ଼ି କରି ପାଦେ ପଡ଼ି ଶୋଇ
ଉଠି ପୁଣି ଉଭାହୋଇ ଶିରେ କର ଦେଇ ।
ବେନିକର ଯୋଡ଼ି ଉଭା ହୋଇଲା ସ୍ଥମୁରେ
ପୁରଃସର ବଚନ ସେ କହଇ ଅନ୍ତରେ ।
ବୋଇଲା ହେ ତାତ ବଗଢଳେ କରି ଗଲି
ଅନେକ ଅସାଧ୍ୟ ରାଜା ସାଧ୍ୟ ମୁହିଁ କଲି ।
ଅନେକ ଧନରତ୍ନ ମୁଁ ଦେଇଛି ତୋ ସ୍ଥମୁ
ସୁଖ ବିଳସ ହେ ତାତ ଭସ୍ମ ତେଜ ମନୁ ।
ଅଷ୍ଟମଲ୍ଲ ମୂଳେ ଯେତେ ଯଦୁବୀର ଥିଲେ
ଗଡ଼ିବାଲି ଉଗ୍ରସେନ ପାଦରେ ଶୁଭିଲେ ।
ପୁତ୍ରର ସମ୍ପଦ ଦେଖି ନୟନେ ନୃପତି
ଆନନ୍ଦେ ମନ ଉଲ୍ଲାସ ପ୍ରଫୁଲ୍ଲ ତା ଚିତ୍ତ ।
ବେନି ପୁତ୍ରଙ୍କୁ ସେ ବେନି ପାରୁଶେ ବସାଇ ।
ମସ୍ତକ ଆଘ୍ରାଣି ଦେଇ ବହୁ ପ୍ରଶଂସଇ ।
ମୁଖେ ଚୁମ୍ବନ ଦେଇଣ ଆଶ୍ୱାସିଣ କହି
କଂସ ବଦନ ନିରୂପି ପୁଣ ପୁଣ ଚାହିଁ ।
ଆନନ୍ଦରେ ଅଶ୍ରୁଜଳ ବହେ ନୟନରୁ
ଏ ମହାଭାବ ବାବୁରେ ତୁହି ବହିପାରୁ ।
ତୁ ମୋହର ବାବୁ ଆ‌ର କୁଳର ଚନ୍ଦ୍ରମା
ଧନ୍ୟ ଆଶ୍ଚର୍ଯ୍ୟ ଶୁଣିଲି ତୋହର ମହିମା ।
ଧନ୍ୟ ପିତାମାତା ତୋତେ ଧଇଲେ ଯେ କୋଳେ
ଏଡ଼େ ଭାଗ୍ୟବନ୍ତ ପୁତ୍ର ପାଇ ପୁଣ୍ୟଫଳେ ।
ଯଶ କୀରତି ବଖ୍ୟାତ ହେଲା ରବିତଳ
ଧନ୍ୟ ତୋର ରଥ ଗଜ ଚତୁରଙ୍ଗ ବଳ ।
ମଥୁରା କଟକେ ଆସି ପଶିଲେ ସକଳ
ରାଜାଙ୍କର ଦେଶକୁ ଯେ ଚଳିଗଲେ ବଳ ।
ସିଂହଦ୍ୱାରେ ସମଦଣ୍ଡ ଦେଇକି ଚଳାଇ
ଆପଣା ନଗରେ ବୀର ପ୍ରବେଶିଲା ଯାଇ ।
ବେନି ପୁତ୍ର ଘେନି ରାଜା ନଗରେ ପ୍ରବେଶ
ବନ୍ଦାପନା କରିବାକୁ ମିଳି ରାଣୀହଂସ ।

ହେତ୍ତି ଯେ ପ୍ରହେତି ବୋଲି ବେନି ମହାଦେଈ
ନବର ଭିତରେ କଂସ ଶିରେ ଅର୍ଘ୍ୟ ଦେଇ ।
ଜରା ଆଦି କରି ଯେତେ ରାଜା ଆସିଥିଲେ
ରାଜାଙ୍କୁ ଜଣାଇ ସେହୁ ଯେଝାପୁରେ ଗଲେ
ନିଜପୁରେ ରହିଲା ସେ କଂସାସୁର ବୀର
ରାଜାମାନଙ୍କୁ ଡକାଇ ଆଣଇ ଉଗର ।
ଆମ୍ଭସଙ୍ଗତେ ଥିଲ ତୁମ୍ଭ ସୈନ୍ୟ ଘେନି
ଏବେ ନିଶ୍ଚିନ୍ତେ ଯାଅ ଯା ତୁମ୍ଭ ରାଜଧାନୀ ।
ରାଜା ରାଜାଙ୍କେ ସେ ଧନ ସନମାନ ଦେଲା
ଆକଟରେ ଦୂତ ଗଲେ ଆସିବ ବୋଇଲା ।
ଆମ୍ଭଙ୍କୁ ଯେ ଷଡ଼ଅଂଶ ଦେଉଥିବ ଆଣି
ଅମାନିଆ ହେଲେ ଶିର ପକାଇବ ହାଣି ।
କାର୍ଯ୍ୟକାଳେ ସମଦଣ୍ଡ ଘେନିଣ ଆସିବ
ଆଜ୍ଞାଭ୍ରଷ୍ଟ ହେଲେ ଜାଣ ନିଶ୍ଚେ ନାଶଯିବ ।
ମେଳାଣି ଦେଲା ଯେ ଯାହା ରାଜ୍ୟେ ତୁମ୍ଭେ ଯାଅ
ମୋହର ଆଜ୍ଞା ପ୍ରମାଣେ ରାଜ୍ୟ କରୁଥାଅ ।
ରାଜାଏ ବୋଇଲେ ଆମ୍ଭେ ତୁମ୍ଭର ହେଲୁଟି
ଯେତେବେଳେ ବୋଲ ସେତେବେଳେ ଆସିଛୁଟି
ଏତେକ ବୋଲି ମଥାରେ ନେଇ ହସ୍ତେ ହେଲେ
ମେଳାଣି ହୋଇଣ ନିଜରାଜ୍ୟେ ଚଳିଗଲେ ।
ନମାମି ନୀଳଗିରି ହେ ଶ୍ରୀପୁରୁଷୋତ୍ତମ
ସକଳ ବେଦ ପୁରାଣେ ଅଧିକ ତୋ ନାମ
ଦେବ ଉପରେ ଦେବାଧିରାଜ ଶିରୋମଣି
ଅଶେଷ ବ୍ରହ୍ମାଣ୍ଡପାଳ ଯାର ନାମ ଗୁଣି
ଅବ୍ୟକ୍ତ ନିରାକାର ତୁ ଅନନ୍ତ ତୋ ମାୟା
ଅଲେଖ ଅଗୋଚର ଯାର ଅଗୋଚର କାୟା
କୀଟରୁ ବ୍ରହ୍ମ ପର୍ଯ୍ୟନ୍ତେ ସବୁରି ତୁ ଜୀବ
ପାଦୋଦକ ନ ପାଇଲେ ଯାର ବ୍ରହ୍ମା ଶିବ
ଅପାରୁ ଅପାର ତୁହି ମହିମାରେ ମେରୁ
ଭକତଜନ ବାନ୍ଧବ ବାଞ୍ଛା କଳ୍ପତରୁ ।
ତୁହି ଦେବଙ୍କ ଉପରେ ଅଟୁ ଦେବରାଜା
ନିରାକାର ତୁ ଚତୁର୍ଦ୍ଧା ରୂପେ ପାଉ ପୂଜା ।
ଭକତଜନମାନଙ୍କୁ ମୁକ୍ତି ଗତି ଦେଇ
ସଂସାର ନିସ୍ତାର ପାଇଁ ନୀଳାଚଳେ ରହି ।
ନମସ୍ତେ ହେ ନୀଳାଚଳପତି ଜଗନ୍ନାଥ
ତୁମ୍ଭର ପାଦପଦ୍ମରେ ଲଗୁ ମୋର ମାଥ ।

ବନସ୍ତୁ ସର୍ବେ ଯେ ପଦ୍ମପାଦରେ ଶରଣ
ଶ୍ରୀରାମ ନାମ ଗୋଟି ଯେ ଜଗତ କାରଣ ।
ଜଗନ୍ନାଥ ଶ୍ରୀମୁଖରେ ମୋ ନିରନ୍ତର ସେବା
ଅଚ୍ୟୁତ ଦାସ ମୁଁ ମୋତେ ଗତିମୁକ୍ତି ଦେବା

—o—

## କଂସର ରାଜତ୍ୱ ଓ ଦେବକୀର ପ୍ରଥମ ପୁତ୍ର ବଧ

ଏଥୁଅନନ୍ତରେ ଶୁଣ ପରୀକ୍ଷିତ ରାୟ
ଭାଗ୍ୟେ ହରିବଂଶ ଶୁଣି ପାପ କର କ୍ଷୟ ।
ଆଦ୍ୟଖଣ୍ଡର ଗହନ କଥା ମହାମେରୁ
ଏକଥା ସଂକ୍ଷେପି ତୋତେ କେବା କହିପାରୁ ।
ଅଷ୍ଟମଲ୍ଲ ସେନ ସଙ୍ଗେ ରହି ବୀର କଂସ
ଖଟନ୍ତି ସେ ଯାହା ଅନୁରୂପେ ସାତବଂଶ ।
ସତ୍ରାଜିତ ଅନାଧୃଷ୍ଟି ସାତ୍ୟକି ଉଦ୍ଧବ
ଅକ୍ରୂର ଆବର ଷଷ୍ଟ ମନ୍ତ୍ରୀ ବସୁଦେବ ।
ଏ ସମସ୍ତେ ଭୃତ୍ୟପଣେ ଖଟନ୍ତି କଂସକୁ
ଏକାଙ୍ଗଚକ୍ରବର୍ତ୍ତୀ ସେ ହେଲା ସଂସାରକୁ ।
ପୁରମଧ୍ୟେ ଦେବକୀକି ନ ଦେଖିଣ କଂସ
ଉଗ୍ରସେନକୁ ଗୁପତେ ଡକାଇଣ ପାଶ ।
ବୋଇଲା ଦେବକୀ କାହିଁ ଅଛି କହ ତାତ
ଉଗ୍ରସେନ ବୋଇଲା ଯେ ଭୟରେ ତରସ୍ତ ।
ବୋଇଲା ଦେବକୀ ଯହୁଁ ପ୍ରୌଢ଼ାକନ୍ୟା ହେଲା
ମାତା ତୋହର ମୋ ଆଗେ ବୁଝାଇ କହିଲା
ବୋଇଲା ପ୍ରୌଢ଼ାକନ୍ୟାକୁ ରଖିଲେ ଗୃହରେ
ପିତୃଲୋକେ ନ ପାନ୍ତି ଯେ ଜଳ ତା ହସ୍ତରେ
ମୁଁ ବୋଇଲି ପୁତ୍ରେ ମୋର ଗୃହରେ ନାହାନ୍ତି
କେମନ୍ତେ କହ ମୁଁ ବିଭା ଦେବଇଁ ଦୁହିତା ।
ତୋ ମାତା ବୋଇଲା ଦିଗବିଜେ କରୁଛନ୍ତି
ପୃଥ୍ବୀରାଜ ଜିଣି ସିନା ପୁରକୁ ଆସନ୍ତି ।
ତେତେକାଳ ଯାଏ ଝିଅ ଥିବ ପ୍ରୌଢ଼ାହୋଇ
କୁଳ ରୂପ ଦେଖି ବର ଖୋଜିଆଣ ଯାଇଁ ।
ଗର୍ଗମୁନିଙ୍କି ଡକାଇ ଦିନବାର ଧରି
ଦୁହିତା ଗୋଟିକ ତୁମ୍ଭେ ଦିଅ ବିଭାକରି ।
ସୁଦେବର ପୁତ୍ରନାମ ଅଟେ ବସୁଦେବ
ସରି ନୋହିବ ତାହାକୁ ରୂପେ କାମଦେବ ।

କୁଳବନ୍ତରେ ସବୁରିଠାରୁ ଅଟେ ଶ୍ରେଷ୍ଠ
ବରିଷ୍ଠ ଗୁଣବନ୍ତ ପଣରେ ଗରିଷ୍ଠ ।
ଶୁଭଲଗ୍ନ ଦିନ ବାର ଧରି ଦେଲି ବିଭା
ଚନ୍ଦ୍ରରୋହିଣୀ ପରାୟେ ଦିଶିଲେ ସେ ଶୋଭା ।
ଶୁଣି କଂସାସୁର କୋପେ ହୋଇ ତମତମ
ବୋଇଲା ଯେ ନ ବିଚାରି କଲ ଏଡ଼େ କର୍ମ ।
ଶୁଣି ରାଜାମାନେ ମୋତେ ବୋଲିବେ ଯେ କିସ
ଉଗ୍ରସେନ ନୃପତିର ପୁତ୍ର ରାଜା କଂସ ।
ଦେବକୀ ନାମେ ଯେ ଥିଲା ତାହାର ଭଗିନୀ
ରାଜାଙ୍କୁ ଦେଇଥିଲେ ସେ ହୋଇଥାନ୍ତା ରାଣୀ
ଗରିବକୁ ଦେଲ ଧନ ସଞ୍ଚିପିବ ବୋଲି
ମୋ ଆସିବା ଯାଏ ତୁମ୍ଭେ ନୋହିଲ ସମ୍ଭାଳି
ରାଜା ହୋଇଣ କେମନ୍ତେ ଅବିଚାର କଲ
ଏଡ଼େବଡ଼ କୁଳକୁ ଯେ ଲଜ୍ଜା କରାଇଲ ।
ଏମନ୍ତବେଳେ ପ୍ରବେଶ ହୋଇଲେ ନାରଦ
ଦେଖିଲେ ସେ କଂସାସୁର ମନରେ ବିଷାଦ ।
ମୁନିଙ୍କି ପ୍ରଣାମ କଲେ ପିତା ପୁତ୍ର ଦୁଇ
ଆସନ ଦେଲେ ମୁନିଙ୍କି ବସିବାର ପାଇଁ ।
ମୁନି ବୋଇଲେ ହେ ରାଜା ଦିଗବିଜେ କରି
ମଥୁରାପୁରେ ପ୍ରବେଶ ହେଲୁ ଦଣ୍ଡଧାରୀ ।
ତ୍ରଇଲୋକ୍ୟ ଈଶ୍ୱର ତୁ ହେଲୁ ଭୋଜପତି
ଏମନ୍ତେ କେହି ନୃପତି ନ ଥିଲେ ଏ ପୃଥ୍ୱୀ ।
ଉଗ୍ରସେନ ପୂର୍ବଭାଗ୍ୟେ ପାଇଲାକି ତୋତେ
ରାଜ୍ୟଦେଇ ଏବେ ସୁଖେ ଥାଉ ସେ ନିଶ୍ଚିନ୍ତେ
ନାରଦ ମୁନି ବଚନେ କଂସ ତୋଷ ହୋଇ
ବୋଇଲା ଏ ଉଗ୍ରସେନ ମୋ ପିତା ଅଟଇ ।
ମୁହିଁ ଯେ ନଥିଲି ଗଲି ଦିଗବିଜେ କରି
ଦେବକୀ ନାମେ ଭଗିନୀ ଅଟଇ ମୋହର ।
ପିତା ମାତା ବିସ୍ତରିଣ ଦେଲେ ତାକୁ ବିଭା
ଏହିକଥା ଗୋଟା ମୋତେ କି ପାଇଲା ଶୋଭା
ରାଜାର ଝିଅ ସିନା ସେ ହୋଇଥାନ୍ତା ରାଣୀ
ବାଛିଦେଇଥାନ୍ତି ମୁହିଁ ବରଖୋଜ ଆଣି ।
ଇନ୍ଦ୍ରବରେ ପୂରିଥାନ୍ତା ଏ ମଥୁରା ଭୂଇଁ
ସୁଦେବ ବୋଲି କେ ତାକୁ କେହି ନ ଜାଣଇ
ତାହାର ପୁତ୍ର ତା ନାମ ଅଟେ ବସୁଦେବ
ମୋର ପାଦେ ଭୃତ୍ୟପଣେ ଥାଇ ସଂସେବ ।

ଧନବନ୍ତ ନୁହଇ ସେ ନୃପତି ନୁହଇ
ତାକୁ ଝିଅ ବିଭା ହେଲେ ପିତା ମାତା ଦୁଇ ।
କହ ମୁନି ତୋ ମନକୁ କେମନ୍ତେ ଆଇଲା
ପିତା ହୋଇ ମୋର ମୁଖେ କାଳି ଲଗାଇଲା ।
ନାରଦ ବୋଇଲେ ରାଜା ନୁହ ତୁ ବିମୁଖ
ଗଲା କଥାରେ ଶୋଚନା କଲେ ପାଇ ଦୁଃଖ
ଏକଥାରେ ପିତା ମାତା ଅଟନ୍ତି ଅନ୍ଧ
ପରଝିଅ ପର ଧୂଅ ବିଧି ନିର୍ବନ୍ଧ ।
ଦେବକୀ କରମେ ଯାହା ଥିଲା ସେ ପାଇଲା
ପିତାମାତା କଲେ ଯେବେ ତୋହର କି ଗଲା
ତୁ ଥାଇଁ ଯେବେ ଏମନ୍ତ କରିଥାନ୍ତି ରାଜ୍ୟେ
ତୋ ଆଗରେ କେହି କହି ନପାରନ୍ତେ ଭୟେ
ପଛେ ନିନ୍ଦା କରୁଥାନ୍ତେ ତୃଣତାନ ହୋଇ
ଭଲ ହେ ଇଚ୍ଛୁ ରାଜ୍ୟେ ନ ଥିଲୁ ନୃପସାଇଁ ।
ଏ କଥା ଗୋଟାକ ତୁହୋ କି ଜାଣୁଛୁ ବସି
ତୁ ଭଲେ ଥିଲେ ଆମ୍ଭେ ଯେ ହେଉଥାଉଁ ଖୁସି
ଆମ୍ଭର କଥାରୁ ଏବେ ଶୁଣ ଦେଇ ମନ
ଦେବକୀର ଉପୁଜିବ ଯେବଣ ନନ୍ଦନ ।
ତାହାର ହସ୍ତେ ତୋହର ମରଣ ନିଶ୍ଚିତ
ଏଥିକି ତୁ ସାବଧାନ ହୁଅ ନରନାଥ ।
ଏମନ୍ତ କହି ନାରଦ ଗଲେ ତହୁଁ ଚଳି
ମୁନିର ବଚନ କଂସ ମନେ ମନେ ଜ୍ୱଳି ।
ଦେବକୀ ବସୁଦେବଙ୍କୁ ଧରାଇ ଆଣିଲା
ଅଷ୍ଟମଲ୍ଲଙ୍କ ପାଶରେ ବସାଇ ରଖିଲା ।
ବୋଇଲା ନାରଦ ମୁନି କହିଗଲେ ମୋତେ
ତୋହର ମୃତ୍ୟୁ ଦେବକୀ ଜାତ ପୁତ୍ର ହସ୍ତେ ।
ମୂଳ ଥିଲେ ସିନା ଡାଳ ପତ୍ର ଜଅଁଳିବ
କଢ଼ ଫୁଲ ହୋଇ ମୂଳ ତର୍ଣ୍ଣିରେ ଫଳିବ ।
ବସୁଦେବ ଦେବକୀକି ପକାଇଲେ ମାରି
କଣ୍ଟା ଗୁଡ଼ିପିବ ନାଶ ଗଲେ ମୋ ବଇରୀ ।
ଏମନ୍ତ ବିଚାରି କଂସ କୋପେ ଗୁରୁତର
ବୋଇଲା ତୁ ବସୁଦେବ ବଇରୀ ମୋହର ।
ତୁହି ଲୋ ଦେବକୀ ମୋର ନୋହୁତ ଭଉଣୀ
ତୁମ୍ଭଙ୍କୁ ମାରିଲେ ସୁଖେ ରହିବି ମୁଁ ପୁଣି ।
କଂସ କୋପ ଦେଖି କାନ୍ଦି ଦେବକୀ କହଇ
ଡରେ ବସୁଦେବର ଯେ ସର୍ବାଙ୍ଗ ଥରଇ ।

ଦେବକୀ ବୋଇଲେ ଆମ୍ଭେ କଲୁ କେଉଁ ଦୋଷ
ଆମ୍ଭଠାରେ ନୃପମଣି ତୋର ଏତେ ରୋଷ ।
କଂସ ବୋଇଲାରେ ପୁତ୍ରହସ୍ତେ ମୃତ୍ୟୁ ମୋର
ନାରଦ ମୁନି ଯେ କହିଗଲେ ମୋ ଆଗର ।
ତୁମ୍ଭେ ଥିଲେ ସିନା ପୁତ୍ର ହୋଇବ ତୁମ୍ଭର
ଏଣୁ ତୁମ୍ଭଙ୍କୁ ମାରିବି ଏ ସତ୍ୟ ମୋହର ।
ବସୁଦେବ କର ଯୋଡ଼ି ବୋଲଇ ହେ ରାୟ
ମାର ପଛକେ ଆମ୍ଭର ନାହିଁ କିଛି ଭୟ ।
ଆମ୍ଭ ଭଳି ଲୋକ ଏଥେ ମଲେ କୋଟି ୨
ମଥୁରା ରାଜ୍ୟରୁ ତୁଲେ କୋଣ୍ଡକ ତୁଟି ।
ତୁମ୍ଭ ଭଳି ଲୋକ ଜଣେ ଯିବ ଯେବେ ନାଶ
ଅନାଥ ହୋଇ ମଥୁରା ରାଜ୍ୟ ହେବ ଧ୍ୱଂସ ।
କଥାଏ କହୁଛୁଁ ମନ ମଧ୍ୟରେ ବିଚାର
ମନକୁ ତା ନ ଆସିଲେ ଆମ୍ଭଙ୍କୁ ଯେ ମାର ।
ସ୍ତ୍ରୀ ହତ୍ୟା ଦେ ଷଗୋଷ୍ଠୀ ଲାଗିବ ଯେ ତୋତେ
ନରକେ ପଡ଼ିବୁ ସିନା ଏହି ଜୀବ ଅନ୍ତେ ।
ଦୋଷକାରୀ ବୋଲି ତୋତେ ନ ଛୁଇଁବେ କେହି
ଏବେ ମୋର ବୋଲ କର କହୁଛି ଯା ମୁହିଁ ।
ନିୟମ କରୁଛୁ ଆମ୍ଭେ ଛୁଇଁ ତୋ ଚରଣ
ଆମ୍ଭଠାରୁ ଜନମିବେ ଯେବଣ ନନ୍ଦନ ।
ଜାତହେଲା ମାତ୍ରେ ଆଣିଦେବୁଁ ତୋର ପାଶ
ତୋହର ଶତ୍ରୁକୁ ତୁହି କରୁ କିନା ନାଶ ।
ପୁତ୍ର ମଲେ ମରୁ ତୁହି ସୁଖେ ଥାଅ ବର୍ତ୍ତି
ତୁ ଥିଲେ ଅଛଇ ସବୁ ଆମ୍ଭର ସମ୍ପତ୍ତି ।
ଆମ୍ଭେ ନୋହୁ ତୋ ବଇରୀ ମାରିବୁ କପାଇଁ
ନିର୍ଦ୍ଦୋଷୀ ପ୍ରାଣୀ ବିନାଶ କଲେ ଯଶ ନାହିଁ ।
ବସୁଦେବ କଥା କଂସ ମନକୁ ଆଇଲା
କୋପ ଶାନ୍ତ କରି ତାଙ୍କୁ ପ୍ରବୋଧି କହିଲା ।
ଗୁପତେ ପାଶେ ବସାଇ ବିଶ୍ୱାସୀ ଡଗର
ବୋଲେ ବସୁଦେବ ଘରେ ହେବ ଯେ ପହରା
ପୁତ୍ର ଜାତ ହେଲାକ୍ଷଣି ଜଣାଇବ ବେଗେ
ଏମନ୍ତ କହି ତାହାଙ୍କୁ କଂସ ଅନ୍ତରାଗେ ।
ଉଗ୍ରସେନକୁ ବୋଇଲା ଶୁଣ ତୁ ପିଅର
ମଥୁରାପୁରେ ପାଇଲୁ ସମ୍ପଦ ଅପାର ।
ମୋତେ ନ ବିଚାରି ଏତେ କର୍ମ ତୁହି କଲୁ
ଜନମ କରି ତୁ ମୋତେ ସ୍ୱହସ୍ତେ ବଧିଲୁ ।

ଏଣୁ କହୁଅଛି ଶୁଣ ଦେଲି ଆଜ୍ଞା ତୋତେ
ଦିବସେ ଗୁହାରିମାନ ବୁଝୁଥିବୁ ନିତ୍ୟେ ।
ରାତିଯାକ ବୁଲୁଥିବୁ ହୋଇ ଜଗାଳି
ଅନ୍ୟଥା କଲେ କାଟିବି ନିଶ୍ଚେ ତୋର ଶିର
ଏମନ୍ତ କହି ସ୍ୱହସ୍ତେ ଶାଢ଼ୀ ବାନ୍ଧି ଶିରେ
ଦେବକୀକି ବୋଇଲା ତୁ ଯାଅ ତୋ ମନ୍ଦିରେ
ସୁନାସ ନାମେ ଅଟେ ଯେ କଂସ ସାନଭାଇ
ତାକୁ ସଙ୍ଗତରେ ଘେନି ରାଜ୍ୟ ଚଳାଇ ।
ଅତିସୁଖେ ରହି ରାଜ୍ୟ କରଇ ସେ ରାୟ
ମହୀ ମଣ୍ଡଳେ କାହାକୁ ନାହିଁ ତାର ଭୟ ।
ଏଥୁ ଅନନ୍ତରେ ତହିଁ କେତେଦିନ ଗଲା
ବିଶ୍ୱାସୀ ଡଗର କଂସ ଛାମୁରେ କହିଲା ।
ଭୋ ଦେବ ଦେବକୀ ବୋଲି ବସୁଦେବ ନାରୀ
ଆଦ୍ୟଗର୍ଭ ତିନିମାସ ହୋଇଲା ତାହାର
ଯେବଣ ଆଜ୍ଞାରେ ପୂର୍ବେ ଦେଇଥିଲ ମୋତେ
ଜଣାଇଲି ଆସି ଛାମୁ ଜାଣିବା ନିମନ୍ତେ ।
ଏହା ଶୁଣି କଂସରାଜା ସ୍ତମ୍ଭୀଭୂତ ହେଲା
କେବଣ ଉପାୟ ଏବେ କରିବି ବୋଇଲା ।
ଏକଥା ଆଗ ତଦନ୍ତ କରିଣ ଜାଣିବା
ସମାଚାର ଦେବକୀକି ପଚାରି ବୁଝିବା ।
ଆଜ୍ଞା ଦେଲା କଂସରାଜା ମୃଦୁସୁଲୀ ରଇ
ମୋ ପାଶକୁ ଦେବକୀକି ଡାକି ଆଣ ଯାଇଁ ।
ଆଜ୍ଞା ପାଇ ମୃଦୁସୁଲୀ ଧାତକାରେ ଗଲା
ବସୁଦେବର ଆଗରେ ଯାଇଁ ଜଣାଇଲା ।
ଦେବକୀ ଆଗେ କହନ୍ତି କରି ସବିସ୍ତର
ରାଜାଙ୍କର ଆଜ୍ଞା ତୁମ୍ଭେ ବେଗ ହୋଇ ଯିବ ।
ବସୁଦେବର ସହିତେ ଏହିକ୍ଷଣି ଆସ
ରାଜାଙ୍କର ତୁମ୍ଭ ଯିବା ଯାଏ ଅବକାଶ ।
ଏ ବାଣୀ ଶୁଣି ଦେବକୀ ତୁରିତେ ଉଠିଲେ
ବସୁଦେବ ସଙ୍ଗେ କଂସ ଛାମୁକୁ ଆଇଲେ ।
ଭୋଜବଂଶ ରଜା ବିଜେ କରିଛନ୍ତି ଯହିଁ
ଦେବକୀ ଯେ ବସୁଦେବ ମିଳିଲେକ ତହିଁ ।
ଦେଖାଦରଶନ ହେଲେ ଶ୍ରୀଛାମୁରେ ଥୋଇ
ନଉଗୁଳ ଉଭାହେଲେ କାଖେ ହସ୍ତ ଦେଇ ।
ଭଣୋଇ ଭଉଣୀ ଦେଖି କଂସ ମହାରଜା ।
ବସ୍ତ୍ର ଅଳଙ୍କାର ଦେଇ କରେ ତାଙ୍କୁ ପୂଜା ।

କୃତାଞ୍ଜଳି ହୋଇ ତାଙ୍କୁ ବୋଲେ କଂସବୀର
ତୁମ୍ଭେ ଆମ୍ଭର ଭଉଣୀ ଭଣୋଇ ନିକର ।
ଦେବକୀ ଦୈବକୀ କଂସ ସୁନାସ ଏ ଚାରି
ଇନ୍ଦୁମତୀ ମହାଦେଈଙ୍କ ଗର୍ଭ ଅବତରି ।
ଦଇବର ଘଟସୂତ୍ର କେ କରିବ ଆନ
ବିଧାତା ପୁରୁଷ ଏହା କରିଛି ବିଆଣ ।
ଦେବକୀ ଦୈବକୀ ତୁମ୍ଭେ ଅଟ ଦୁଇଭଗ୍ନୀ
କଂସ ସୁନାସ ଆମ୍ଭେ ଯେ ଅଟୁ ଭାଇବେନି ।
ଆମ୍ଭେ ଯେ ଏକ ସୋଦର ନୋହୁ ଭିନ୍ନ ଭିନ୍ନ
କପାଳଲେଖନ କଥା କେ କରିବ ଆନ ।
ବିଧାତା ଯୋଗେ ଆମ୍ଭର ହେଲା ଭିନ୍ନକଥା
ନବଦ୍ୱୀପ ସପ୍ତସିନ୍ଧୁ ମଧ୍ୟେ ମହାରଥା ।
ଦେବ ଦାନବ ମାନବ କଲେ ମୋତେ ପୂଜା
ତ୍ରିଭୁବନେ ମୁଁ ଦେବାଧିଦେବ ମହାରାଜା ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ମୁଁ ଜିଣିଲଇଁ ସବୁ
ମୁଁ ତୋର ସୋଦର ଯେବେ କଥାଏ ତୁ ଦେବୁ
ଆପଣା ସୋଦର ବୋଲି କରିବୁନା ଦୟା
ଯୁଗେ ଯୁଗେ ଅଜରାମର ହେବ ମୋର କାୟା
ମୋହପଣ ଭାଇ ଯେବେ ହୋଇବ ବିନାଶ
ଏଥି ଉପରେ ପୁଣ ଗୋ ଅଛି ଆଉ କସ ।
ଯେତେକାଳ ପର୍ଯ୍ୟନ୍ତ ଗୋ ଥିବ ମୋର ଦେହି
ଇନ୍ଦ୍ରପଦ ସମ୍ପଦ ଗୋ ଦେଇପାରେ ମୁହିଁ ।
ଦେବକୀ ବୋଇଲା ବାବୁ ଏହା କିପାଁ କହୁ
ସାତବଂଶକୁ କାରଣ ତୁହି ମହାବାହୁ ।
ମତେ ତୁ କିପାଁ ବାବୁରେ ବିନୟୀ ହେଉଛୁ
ଆମ୍ଭେ ଯେ ସମସ୍ତେ ଅଛୁ ତୁହି ବଶ୍ୟଚକ୍ଷୁ
ତୋର ଭୁଜବଳେ ବାବୁ ଅର୍ଜିଲୁ ଏ ଶିରୀ
ଇନ୍ଦ୍ରକୁ ନ ଡରୁ ଆମ୍ଭେ ତୋତେ ଆଶ୍ରାକରି
କେଉଁ ଛାର କଥାକୁ ଯେ ତୋର ଏତେ ଶଙ୍କା
ଏହା ଦେଖିଣ ହେଉଛୁ ମୁଁ ବଡ଼ ଚାଟକା ।
ସେକଥା ସଂକ୍ଷେପି କହ ତୁହି ମୋର ଆଗେ
ଦେବକୀ ଯେ ବସୁଦେବ କହନ୍ତି ସରାଗେ ।
ଦେବକୀ ମୁଖରୁ ବାକ୍ୟ ଏସନକ ଶୁଣି
ଭଉଣୀ ମୁଖକୁ ଚାହିଁ କହେ ନୃପମଣି ।
ଯାବତକାଳ ମୁଁ ସେବା କରିଥିବି ତୋତେ
ମୋର ମନବାଞ୍ଛା ଯେବେ ଦେଇପାରୁ ମୋତେ

ଅନେକ କାକୁସ୍ଥ ଯହୁଁ ହେଲା କଂସ ରାସ୍ତେ
ପରମ ଆନନ୍ଦ ହୋଇ ବାସୁଦେବ କହେ ।
ଯେବଣ କଂସକୁ ଯେବେ କରୁଥାନ୍ତି ସ୍ତୁତି
ବସୁଦେବ ଦେବକୀ କ ନୋହିବେ ତୃପତ ।
ତୁ ଆମ୍ଭର ପଞ୍ଚଭୂତ ଆତ୍ମାକୁ କାରେଣି
ତୋହର ପ୍ରସାଦେ ଆମ୍ଭେ ଜଗତ ବରଣି ।
କାହିଁକ ବନସ୍ତି ହେଉ କହୁ କନା ମୋତେ
ସଚରାଚର ଭିତରେ ଅପୂର୍ବ କ ତୋତେ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତୁ ଜିଣି ଭୁଜବଳେ
ତୁମ୍ଭଙ୍କୁ କ ଅପ୍ରାପତ ହେଲା ଉଦ୍ଧତଳେ ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ଦେବ ଦାନବ ଯେ ହୋଇ
କେ ତୁମ୍ଭ ଆଜ୍ଞା ଲଙ୍ଘିବ ମଣ୍ଡେ ଦେହ ବହି ।
ପଞ୍ଚଭୂତ ଆତ୍ମା ତୁହି ପିଣ୍ଡ ଆମେ ସବୁ
ମୋତେ ତୁ ଏତେ ବିନୟେ କହୁ କମ୍ପା ବାବୁ
ଏକା ଗର୍ଭରୁ ଯେ ଆମ୍ଭେ ହୋଇଥାଇଁ ଜାତ
ଉଗ୍ରସେନ ଆମ୍ଭ ପିତା ଇନ୍ଦୁମୁଖୀ ମାତ ।
ତାହାର ତହୁଁ ଜନ୍ମିଛୁ ଆମ୍ଭେ ସର୍ବେ ସୁଖେ
ରାଜଜେମା ବୋଲାଉଛୁ ଆମ୍ଭେ ଜନମୁଖେ ।
ଏଥୁ ବଡ଼ପଣ ଆଉ ଅର୍ଜିବୁ ବା କେତେ
ଯାହା ମାଗିବୁ ତା ବାବୁ ଦେବଇଁ ତୁରିତେ ।
କଂସ ବୋଇଲା ଭଗିନୀ ସଙ୍କଟ ଏ କଥା
ତୁମ୍ଭ ମନକୁ ଲାଗିବ ଏଣେ ବଡ ବ୍ୟଥା ।
ସୁହୃଦରେ ଦ୍ରୋହ ମୁଁ ଗୋ କେମନ୍ତେ କରିବ
ସେହି କଥା ନ କଲେ ମୁଁ ନିଷ୍ଟୟ ମରିବ ।
ଦେବକୀ ବୋଇଲା ବାବୁ ତୋର ବର୍ତ୍ତିଥିଲେ
ଆମ୍ଭେ ଇଚ୍ଛା କରିବୁ କ ତୋର ମନ୍ଦହେଲେ ।
କଂସ ବୋଲଇ ଭଗିନୀ ମାଗିବି ମୁଁ ଯାହା
ନିଷ୍ଟୟ ମହାତ୍ମାଣି ଗୋ ଦେବୁ ମୋତେ ତାହା
ଦେବକୀ ବୋଲେ ଜୀବନ ମାଗିଲେ ମୁଁ ଦେବି
ତୋହ ପ୍ରାପ୍ୟ ଛାଇ କେଉଁ ଜନମେ ପାଇବି
କଂସ ବୋଲେମାଗେ ଯେବେତୋରଦେବାସତ
ଧର୍ମ ସାକ୍ଷୀ କରି କର ତିନିବାର ସତ୍ୟ ।
ଏହା ଶୁଣିଣ ଦେବକୀ ଧର୍ମସାକ୍ଷୀ କଲା
କହୁଅଛୁ ଦେବି ଦେବି ଦେବି ଯେ ବୋଇଲା ।
ଦେବକୀ ମୁଖରୁ କଂସ ଶୁଣି ଦୃଢ଼ବାଣୀ
ବିନୟେ ଭାବେ କହଇ କଂସ ପାରମଣି ।
ନାରଦ ମୁନି ଯେ ମୋତେ ବୋଲିଛନ୍ତି ସତ୍ୟ
ତୋହର ଉଣ୍ଡଳା ହାତେ ତୋ ମୃତ୍ୟୁ ନିଶ୍ଚିତ ।
ଜାହାରହିଁ ବଳେ ମୋତେ ଜୁହଇ ଯେ ମାରି
ତୋହର ପୁତ୍ରର ହସ୍ତେ ନିଷ୍ଟେ ମୁହିଁ ମରି ।
ସ୍ୱହସ୍ତେ ବଧ କରିବି ତାକୁ ଆଗେ ମୁହିଁ
ଏକଥା ଗୋଟି ନାରଦ ମୁନି ମୋତେ କହି ।
ଦଶମାସ ପର୍ଯ୍ୟନ୍ତ ମୋ ଅନ୍ତଃପୁରେ ଥିବୁ
ଜନ୍ମ ହେଲେ ପୁତ୍ର ତୋର ମୋତେ ସମର୍ପିବୁ
ତୋହର ସଙ୍ଗେ ମୋହର ଉଣୋଇ ଯେ ଥିବ
ପ୍ରସବ କଲାବା ଯାଏଁ କାହିଁ ସେ ନଯିବ ।
ଏ କଥାକୁ ତୁମ୍ଭେ କେଟଣ ନ କରିବ ନାହିଁ
ମୋତେ ନ ଦେଖି ମନ୍ଦବ ସବ କଷ୍ଟ ପାଇ ।
ପୁତ୍ର ଦେଇ ତୁମ୍ଭେ ଦୁଇ ତୃପ୍ତି ମୋତେ କର
ପରିରକ୍ଷଣରେ ଥିବ ସର୍ବଦା ଗୋ ତୋର ।
ମୋହ ବର୍ତ୍ତିଥିବା ଯଦୁ ଭୋଜବଂଶ ଆଶା
ମୋହର ମଲେ ଗୋ ତୁମ୍ଭେ ହେବ ନିରସା
ଏମନ୍ତେ ଯେ ବୋଲନ୍ତେକଂସ ଆତ୍ମାଧ୍ୟାନହେଲା
ହାଇର ବଚନେ ଦେବୀ ଦେବକୀ ବୋଇଲା ।
ଆପଣାର ଅନ୍ତରେ ସେ ଭାଳି ପୁଣି ଧ୍ୟାଣି
ଦୁଃସହ ସଙ୍କଟ କଂସ ଦେଇଅଛି ଆଣି ।
ଧର୍ମ ବଳେ ସିନା ପୁତ୍ର ପୁତ୍ରୀ ଜାତ କରି
ଶତ୍ରୁହସ୍ତେ ଦେବା ଚିତ୍ତ ବଳିବ କାହାରି ।
ଆମ୍ଭର ସୋଦର ପୁଣି ଅଟେ କଂସ ରାୟ
ବ୍ରହ୍ମା ଇନ୍ଦ୍ର ରୁଦ୍ରକୁ ଯେ ନାହିଁ ତାର ଭୟ ।
ଏହାର ଆଜ୍ଞା ମୁଁ ଭ୍ରଷ୍ଟ କରିବି କେମନ୍ତେ
ଯାର ପ୍ରସାଦେ ବିପୁଳ ଲକ୍ଷ୍ମୀଭୋଗ ମୋତେ ।
ଆବର ବିଶେଷ ସେହି ବିନୟେ କହିଲା
ଧର୍ମକୁ ସାକ୍ଷୀ କରିଣ ସତ୍ୟ ମନାଇଲା ।
ନ ଦେବି ବୋଲି ଯେ ମୁହିଁ ବୋଲିବିକେମନ୍ତେ
ତିନିବାର ସତ୍ୟ ପୁଣି କରାଇଛି ମୋତେ ।
କଂସକୁ ଛାଡ଼ିଲେ ଧର୍ମ ନ ରହିବ ସତ୍ୟେ
ସେ କୋପ କଲେ ରଖିବ ମୋତେକେ ଜଗତେ
ଯାହାର କୋପ କଲେ ମୁଁ କ୍ଷଣେ ବର୍ତ୍ତିନାହିଁ
ସ୍ୱର୍ଗମର୍ତ୍ତ୍ୟ ପାତାଳରେ ଠାବ ଅଛି କାହିଁ ।
ଅସନମତ କଲେ ସେ ବନ୍ଧରେ ରଖିବ
ଅନେକ ଶାସ୍ତି ଦେଇଣ ପ୍ରାଣରେ ମାରିବ ।

ଏକ ମାତା ଗର୍ଭରୁ ତ ହୋଇଛନ୍ତି ଜନ୍ମ
ଦଇବ ବଞ୍ଚିଲ ଆଣି ଏସନକ କର୍ମ ।
ଏମନ୍ତ ଅଛଇ ଯେବେ ପୂର୍ବର ଭବିଷ୍ୟ
ସେ କଥା ଆମ୍ଭେ କହିଲେ ହେବ ଆଉ କସ
ଭଗବାନ ସମାନେତ ମୋର କଂସ ଭାଇ
ତାହାକୁ ଛାଡ଼ିଲେ ମୋତେ ଧର୍ମ ନ ସହଇ ।
ଦେହ ଥିଲେତ ଅର୍ଜିବ ପୁଣ ପୁତ୍ର ମୁହିଁ
ରାଜାର ଆଜ୍ଞା ଅବଜ୍ଞା କରି ନ ପାରଇ ।
ସର୍ବ ଗୁଣେ ସୁଲକ୍ଷଣ ଅଟେ କଂସ କାର୍ଯ୍ୟ
ସତେକ ଛାଡ଼ିବ ମୋତେ ହୃଦରୁ ସେ ଦୟା ।
ଏତେ ଭାଳ ଦେବ ବୋଲି ମନମତ କଲେ
ତୁ ଯାହା ମାଗିଲୁ ତାହା ଦେବଇଁ ବୋଇଲେ
ତୁ ସୁସ୍ଥ ଥିଲେ ସକଳ ସୁସ୍ଥ ଅଛୁ ମୋତେ
ତୁମ୍ଭ କଥା ନାସ୍ତି ଅବା କରିବି କେମନ୍ତେ ।
କଂସ ବୋଇଲା ତୁମ୍ଭେ ଗୋ ମୋର ପ୍ରାଣପାଇଁ
ସୁଖେ ରାଜ୍ୟ ଥାଅ ମୋତେ ଅଷ୍ଟପୁତ୍ର ଦେଇ ।
ତୁମ୍ଭକୁ ମୋହର ଆଗେ ନିରନ୍ତର ସେବା
ଏ କଷ୍ଟରୁ ଭଗିନୀ ତୁ ରଖି ପାରୁ ଅବା ।
ଏ ଅନୁକୂଳେ ଗୋ ଅନ୍ତଃପୁରେ ବଜେକର
ପୁତ୍ର ଜନ୍ମହେଲେ ଆଣି ଦେବୁ ମୋ ହସ୍ତର ।
ଦେବକୀ ଯେ ରାଣୀ କଂସ ପୁରେ ବଜେକଲେ
ପାଞ୍ଚଲକ୍ଷ ଯେ ପାହାରି ତାଙ୍କ ପଛେ ଗଲେ ।
ଧାଈ ମୁଦୁସୁଲି ଦେଲା ଅନେକ ନାୟିକା
ତାର ମନ ରଞ୍ଜିଣ ଏ ହୋଇଥିବେ ସାଖୀ ।
ନବର ପାରୁଶେ ଆନ ନବର ଭିଆଇ
ଯତ୍ନରେ ଥୋଇଲା ତହିଁ ଭଗିନୀକ ନେଇ ।
ନବଡ ଇନ୍ଦ୍ରପାଷାଣେ ନିର୍ମାଣ ଯେ ପୁର
ବଜ୍ର ହୁଡ଼ି ଆଣି କରିଣ ବଢ଼ାଇ ଅସୁର ।
ଶଙ୍ଖନାଭି ପାଷାଣରେ ନିର୍ମାଣିଲା ଘରେ
ଯେ ଦେଖିବ ସେ ଜାଣିବ ପଥର ଗୋଟିଏ ।
କାଉ ଅନ୍ତରେ ପାହାରି ଜଗି ନିରନ୍ତରେ
ଦିନ ଗଣୁଛନ୍ତି ବସି ଲେଖନ ପତରେ ।
କ୍ଷଣେ ନ ଛାଡ଼ନ୍ତି ରାତ୍ର ଦିନ ଜଗିଥାନ୍ତି
ଆଧି ଉପାଧି ବାରତା ଘମୁଟରେ ବିଶ୍ରାନ୍ତି ।
ପ୍ରଥମେ ସେ କନ୍ୟା ମାସେ ହେଲେ ଗର୍ଭବତୀ
ମିଥୁନ ପକ୍ଷନ୍ତେ ପୂର୍ଣ୍ଣ ଦଶମାସ ହୁଅନ୍ତି ।

ଆଷାଢ଼ ଶୁକ୍ଳ ଦଶମୀ ତିଥି ଗୁରୁବାର
ମଘା ନାମରେ ନକ୍ଷତ୍ର ଅଟେ ସେ ଦିନର ।
ବାଣିଜ୍ୟ ନାମେ କରଣ ବଜ୍ରନାମେ ଯୋଗ
ଶେଷ କରଣରୁ ଦଣ୍ଡ ଏକାଦଶ ଭୋଗ ।
ସେ ଦିନ ଦେବକୀ ଦେବୀ ପୁତ୍ରକଲେ ଜାତ
ଅମଙ୍ଗଳ ମଣିଲେ ସେ ଦେଖି ଉତପାତ ।
ଡଗରମାନେ ରାଜାଙ୍କୁ ଯାଇ ଜଣାଇଲେ
ଦେବକୀ ଦେବୀର ପୁତ୍ର ହୋଇଲା ବୋଇଲେ ।
ଶ୍ରୀ ଦେବ ତୁ ସାବଧାନ ଶୁଣ ଭୋଜନାଥ
ଦେବକୀ ଦେବୀର ପୁତ୍ର ଆଜ ହେଲା ଜାତ ।
ଶୁଣିଣ କଂସ ଆସ୍ଥାନୁ ପଡ଼ିଲାକ ଡେଇଁ
ଦେବକୀର ସନ୍ନିଧିରେ ପ୍ରବେଶିଲା ଯାଇଁ ।
କେଶ ବାସ ଅସମ୍ଭାଳ ବହେ ଶ୍ରମଜାଳ
ପ୍ରଚଣ୍ଡ ମୁରତି ବଶେ ହୋଇ କୋପାନଳ ।
କରେ ଖଡ୍ଗ ଧରି ଖର ଉଭାହେଲା ଆଗେ
ଦେବକୀକ ବୋଲେ ଭଗ୍ନି ପୁତ୍ରଦିଅ ବେଗେ ।
ଭାଇକ ଦେଖି ଦେବକୀ ଶୋକଭର ହୋଇ
ଧାତାକୁ ସୁମରି ପୁତ୍ର ଦେଲାକ କଢ଼ାଇ ।
ପୁତ୍ରର ନିଧନେ ଜାଣ ନେତ୍ରୁ ବହେ ଲୁହ
ତକ୍ଷଣ ପଡ଼ିଲା ତଳେ ଅସାଷ୍ଟମ ଦେହ ।
ଧାଈ ମୁଦୁସୁଲି ତାକୁ ତୋଳିଣ ଧଇଲେ
ଜଳ ସିଞ୍ଚି କାନ ଫୁଙ୍କି ଚେତା କରାଇଲେ
ବାଳକକୁ ଘେନି କଂସ ବେଗେ ଚଳିଗଲା
ଦର୍ପଣ ଶିଳା ଉପରେ ନେଇ କଚାଡ଼ିଲା
ବେନିପାଦ ଧରି କଂସ ଗରଜନ କରି
ମନ୍ଦର ପର୍ବତ ନାଦେ ପଡ଼ିଲା କ ଛାଡ଼ି ।
ଯୁକତେ ବାଳକ ସେହି ଜନ୍ମ ହେଲା ପିଣ୍ଡ
ପାଷାଣ ଉପରେ ପଡ଼ି ହେଲା ସାତଖଣ୍ଡ ।
କରଚରଣ ତାହାର ହାଡ଼ ମାଂସ ମୂଳେ
ଖଣ୍ଡ ଖଣ୍ଡ ହୋଇ ସବୁ ପଡ଼େ ମହୀତଳେ ।
ରକତ ହାଡ଼ ମାଂସ ଯେ ନ ଦିଶଇ କିଛି
ଧୂଳିହୋଇ ଯାଇ ସବୁ ଗଗନେ ଉଡ଼ୁଛି
କାଳାନ୍ତକ ଦୂତମାନେ ସେ ନିଜପୁରେ ଗଲେ
ଯହିଁ ସେ ଅମର ପୁରେ ଅଦୃଶ୍ୟ ହୋଇଲା ।
ଦେବକୀ ଦେବୀ ଅନେକ ମତେ ଶୋକ କଲେ
ବସୁଦେବର ବଚନ କହନ୍ତେ ନ ସରେ ।

ଘନ ଘନ ନୟନରୁ ବହେ ଅଶ୍ରୁ ଜଳ
ଦେବକୀ ବସୁଦେବ ଏ ବେନି ଯେ ବିକଳ ।
କେବଣ ବିଧାତା ମୋତେ ଏ କଷଣ ଦେଲା
ବାଳକ ପୁତ୍ର ମୋହର କଂସ କଲ୍ଲଡ଼ିଲା ।
ମାତୁଳ ହୋଇ ସେ ପୁଣ ଭଣଜା ମାରଇ
ଏମନ୍ତ କହିତ୍ର ଦେଖା ତ୍ରଳଣ ସ୍ତଉଇ ।
ପୁଣି ସଚେତ ହୋଇଣ ସେ ବେନିଯଶଣୀ
ହାହା ବିଧାତାରେ ବୋଲି କରନ୍ତି ଘନେଣି
ଜୟ ଜୟ ଜଗନ୍ନାଥ ଜଗତତାରଣ
ଜୟ ଜୟ ଜଗନ୍ନାଥ ପରମ କାରଣ ।
ଜୟ ଜୟ ଜଗନ୍ନାଥ ତୁ ପରମାନନ୍ଦ
ଜୟ ଜୟ ଜଗନ୍ନାଥ ଅଟୁ ଆନନ୍ଦକନ୍ଦ ।
ଜୟ ଜୟ ଜଗନ୍ନାଥ ଦୀନଜନବନ୍ଧୁ
ଜୟ ଜୟ ଜଗନ୍ନାଥ କୃପାଜଳ ସିନ୍ଧୁ ।
ଜୟ ଜୟ ଜଗନ୍ନାଥ କରୁଣା ବାରିଧି
ଜୟ ଜୟ ଜଗନ୍ନାଥ ଅନାଦି ତୁ ଆଦି ।
ଜୟ ଜୟ ଜଗନ୍ନାଥ ପରମ ପୁରୁଷ
ଜୟ ଜୟ ଜଗନ୍ନାଥ କମଳାବିଳାସ ।
ଜୟ ଜୟ ଜଗନ୍ନାଥ ନୀଳଗିରିବାସୀ
ଜୟ ଜୟ ଜଗନ୍ନାଥ ପରଂବ୍ରହ୍ମରାଶି ।
ଜୟ ଜୟ ଜଗନ୍ନାଥ ଚତୁର୍ଦ୍ଧା ମୂରତି
ଅଚ୍ୟୁତାନନ୍ଦ ଦାସ ତୋ ଦାସ ବିନତି ।

—୪୦୪—

## ଦେବଗଣର ବନ୍ଦୀ

ଏଥୁଅନନ୍ତରେ ପୁଣି ପରୀକ୍ଷିତରାୟେ
ଦଣ୍ଡବତ ହୋଇ ପଡେ ଶୁକ ମୁନି ପାୟେ ।
ଶ୍ରୀଦେବ କଂସର ବିରତକେ ମୁଁ ଶୁଣିଲି
ଦେବଙ୍କ ମୁଖ୍ୟ ବୋଲି ମୁଁ କଂସକୁ ଜାଣିଲି ।
ମଞ୍ଚରାଜା ହୋଇ ବଳେ ସ୍ୱର୍ଗପୁରେ ଗଲା
ଦେବତାମାନଙ୍କୁ ଧରି କେତେ ଦୁଃଖ ଦେଲା ।
ସ୍ୱର୍ଗ ମଣ୍ଡଳେ ପଶିଣ ଜିଣି ସୁରପତି
ତାର ପାଦତଳେ ଥାଇ କମ୍ପେ ବସୁମତୀ ।
ଏଥିକୁ ଦେବତାମାନେ ବିଗ୍ରହିଲେ କିସ
ସଂକ୍ଷେପି କହିବା ମୋତେ ବ୍ୟାସମୁନି ଶିଷ୍ୟ
ପରୀକ୍ଷିତ ପଚାରନ୍ତେ ଏସନକ ବାଣୀ
ବୋଲନ୍ତି ଯେ ଶୁକମୁନି ଶୁଣ ନୃପମଣି ।

ସାବଧ ନେ ଶୁଣ ତୁହେ ପରୀକ୍ଷିତ ରାୟେ
ଯେତେବେଳେ କଂସାସୁର ସ୍ୱର୍ଗକଲା ଜୟ ।
ସୁଧର୍ମାସଭରେ ବସିଥିଲେ ସୁରପତି
ତେତିଶକୋଟି ଦେବତା ସ୍ୱର୍ଗରେ ଅଛନ୍ତି ।
ଚନ୍ଦ୍ର ସୂର୍ଯ୍ୟ ବୈଶ୍ୱାନର ବରୁଣ କୁବେର
ପବନ ନୈଋତ ବିଶ୍ୱକର୍ମା ନିଶାକର ।
ଗ୍ରହଙ୍କ ମୂଳେ ଅଛନ୍ତି ଯେ ଗୁରୁ ବୃହସ୍ପତି
ଶିବଗଣ ସଙ୍ଗତରେ ଦେବ ପଶୁପତି ।
ତାର ବାର ଯୋଗ ମୂଳେ ନକ୍ଷତ୍ର କରଣ
ଅଷ୍ଟବସୁ ବିଦ୍ୟାଧର ସୁରସିଦ୍ଧ ଜନ ।
ଯକ୍ଷ ଗନ୍ଧର୍ବ କିନ୍ନରଗଣ ବ୍ରହ୍ମବେତ୍ତା
ଦେବଋଷି ବ୍ରହ୍ମଋଷି ଷେନଣ ବିଧାତା ।
ଆବର୍ତ୍ତକ ସମ୍ବର୍ତ୍ତକ ଦ୍ରୋଣ ଯେ ପୁଷ୍କର
ଜୟ ବିଜୟ ଯେ ନନ୍ଦିଭୃଙ୍ଗି ଆଦିକରି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଯେତେ ଦେବାଥିଲେ
ଚଣ୍ଡୀ ଭଇରବୀ ଆଦି ସମସ୍ତେ ମିଳିଲେ ।
ଅନନ୍ତ ନାଗ ସହିତେ ବାସୁକି ଯେ ସ୍ଥିତ
କହନ୍ତି ସେ ସମସ୍ତଙ୍କୁ ଗୁର୍ବୀ ସୁରପତି ।
ସକଳ ଦେବ ଦେବୀଯେ ଶୁଣ ମୋର ବାଣୀ
ଆହେ ଦିଗପାଳ ତୁମ୍ଭେ ସ୍ୱର୍ଗକୁ କାରଣୀ
ସ୍ୱର୍ଗକୁ ଲାଗିଲା ଏବେ ଆସି ବଡ଼ଭୟ
ଏଥିକୁ କରିବ ତୁମ୍ଭେ କେବଣ ଉପାୟ ।
କେଉଁ ପ୍ରକାରେ ଅମର ପୁର ହେବ ରକ୍ଷା
ଏକଥା ବିଚାରି ସର୍ବେ ଦିଅ ମୋତେ ଶିକ୍ଷା ।
ବୃହସ୍ପତି ବୋଇଲେ ତୁ ସ୍ୱର୍ଗକୁ କାରଣି
ଦେବଙ୍କ ଉପରେ ଅଟୁ ଦେବ ଶିରୋମଣି ।
ଏ ସ୍ୱର୍ଗ ଭୁବନର ତୁ ସିନା ରକ୍ଷାପାଳ
ଆମ୍ଭଙ୍କୁ କି ବିଚାରି ହୋ ମାଗୁ ଆଖଣ୍ଡଳ ।
ତୋର ବିଚାରକୁ ଯାହା ଆସେ ତାହା କର
ଏଥେ ସନମତ ହେଲା ସବୁରି ଆମ୍ଭର ।
ଇନ୍ଦ୍ର ବୋଇଲେ କଂସକୁ ଆମ୍ଭେ କେହୁ ସର
ବୁଦ୍ଧି ବଳ ଉପାୟରେ ଅବା ଜିଣି ପାର ।
ସମ୍ମୁଖ ସଂଗ୍ରାମେ ଆମ୍ଭେ ଜିଣି ନ ପାରିବା
କୋଟି କୋଟି ଏକ ହେଲେ କଂସକୁ ହାରିବା
ଦୁର୍ବାର ଦାନବ ସେହି କଂସ ମହାମଲ୍ଲ
ତିନି ଭୁବନର ହୋଇ ଅଛି ବଡ ଶଲ୍ୟ ।

ବଳେ ନ ପାର ବୁଦ୍ଧିରେ ଜିଣି ପାର ତାହା
ଏମନ୍ତ ବୋଲି ଜଳ୍ପିଲ ସତ୍ଵେଁ ଶଚୀନାହା ।
ଉପାୟେ କଣ୍ଠ ଈଶ୍ୱର ତ୍ରିପୁର ଜିଣିଲେ
ଉପାୟରେ ଭଗୀରଥ ଗଙ୍ଗା ଦେବନଗଲେ ।
ଉପାୟରେ କ୍ଷେତ୍ରପାଳ ଉଚ୍ଚୈଃଶ୍ରବା ଆଣି
ଉପାୟେ କର କୁବେର ଅଷ୍ଟନିଧି ଜିଣି ।
ମନ୍ତ୍ର ବିଦ୍ୟା ଉଦ୍ୟମରେ ସାଧି ସବୁ କାର୍ଯ୍ୟ
ବୋଲନ୍ତି ସେ ଏମନେକ ବାଣୀ ସୁରରାଜ ।
ବଳରେ ନ ପାର ଯେବେ ବୁଦ୍ଧି ବଳ କର
ବୁଦ୍ଧି ବଳ ଗୋଟାକୁ ଯେ ବଳ ନୋହେ ସର
ଏତେ ବୋଲି ସୁରପତି ଆସ୍ଥାନୁ ଉଠିଲେ
ଶାର୍ଙ୍ଗୀ ଚନ୍ଦନ ଘେନ ଶ୍ରୀମୁଖେ ଆଜ୍ଞା ଦେଲେ
ଆହେ ଦେବଗଣ ତୁମ୍ଭେ ଶୁଣ ଆମ୍ଭ ବାଣୀ
ଜଣେ ଜଣେ ଅଟ ତୁମ୍ଭେ ସଂସାର କାରଣି ।
ଆହେ ସମ୍ବର୍ତ୍ତମେଘ ଆହେ ଦଶଦିଗପାଳେ
କଂସ ରାଜ୍ୟେ ଜଳବୃଷ୍ଟି ନ କରିବ କାଳେ ।
ଏ ମୋର ବଚନ ତୁମ୍ଭେ ଥିବ ପରମାଣି
ଏମନ୍ତ ଆଜ୍ଞା ଦେଲେ ଯେ ଦେବ ଶିରୋମଣି ।
କଂସକୁ ମାନ ଆପଣେ ଖଟେ ଯେତେ ସୃଷ୍ଟି
ତେତେଦୂର ଯାଏ ତୁମ୍ଭେ ନ କରିବ ବୃଷ୍ଟି ।
ଜାଣି ବା ନ ଜାଣି ଯେବେ ବରଷିବେ ଜଳ
ପୃଥ୍ୱୀକି ବୋଇଲେ ତୁ ନ ଦେବୁ ଶସ୍ୟଫଳ ।
କୃଷିର ନିମନ୍ତେ ଯେବେ କରିବେ ସେ କୃଷି
ବୁଣିଲେ ସେ ନ ଉଠିବ ସବୁ ଯିବ ନାଶ ।
ବାସୁକୀକି ଗୃହୀଁ ପୁଣି ବୋଲେ ଦେବରାଜେ
ଯେତେ ଧନ ପୋତିଛନ୍ତି କଂସରାଜା ରାଜ୍ୟେ ।
ସେ ଧନମାନ ତୁମ୍ଭେ ଯେ ବଳେ ନିଅ ହର
ଦ୍ରବ୍ୟହୀନ ହୋଇ ଲୋକ ଥୋକେ ଯିବେ ମର
ଅଗ୍ନିକି ବୋଇଲେ ଯେତେ କରିଥିବେ ପକ୍ୱା
ରାନ୍ଧିଲା ପାକମାନ ସେ ସବୁ ହେବ କଞ୍ଚା ।
ପବନକୁ ବୋଇଲେ ତୁ ଜୀବନର ମଣି
ପ୍ରଚଣ୍ଡ ହୋଇ ବହିବୁ ରଥ ଧ୍ୱଜା ଟାଣି ।
ମେଘେ ମାରିବେ ବିଜୁଳୀ ବଜ୍ର ଘଡ଼ଘଡ଼
ମେଡ଼ ମଣ୍ଡପ ଜଗତି ପଡୁ ସବୁ ଝଡ଼ ।
ପାଣି ପାକ ସବୁ ଯେହ୍ନେ ହେବ କଷାପିତା
ଚନ୍ଦ୍ରକୁ ବୋଇଲେ ତୁହେ କର ମୋ ଏକଥା
ଖାଇବା ପଦାର୍ଥ ପିତା ଦଇସିଥା ହେବ
ସୂର୍ଯ୍ୟଙ୍କୁ ବୋଇଲେ ତୁମ୍ଭେ କିରଣ ନଦେବ
ଅଶ୍ୱିନୀକୁମାରେ ଗୃହୀଁ ବୋଇଲେ ବିଡ଼ୌଜା
ଚଉଷଠି ରୋଗଯାକ ପେଷି ଦିଅ ଯା ଯା
ଯମକୁ ବୋଇଲେ କାଳ ଦେବତାକୁ ଘଇ
ଜନ୍ତୁ ପଠାଇବ କଂସ ରାଜ୍ୟେ ଥିଲ ରହି ।
ଦୋଳଘୋଷିଲେ ଦଶିବେ ଥୋକେ ଅଲକ୍ଷଣ
ଶିଶୁ ତୁଟିଗଲେ ତନୁ ହେବ ଛପିବ କ୍ଷୀଣ ।
ଏହିରୂପେ କାହିବ ଯେ ସବୁ କଲ ବନ୍ଧ
ଗଳେ ମାଳ ଦେଇ ଶିରେ ଶାଢ଼ୀ ଦେଲ ବାନ୍ଧ
ସମସ୍ତଙ୍କୁ ବିଜୟରେ କହେ ସୁରପତି
ମଥୁରା ଦେଶରେ ତୁମ୍ଭେ କର ଯା ଅମାନ୍ତି ।
ଯେପରି କଷ୍ଟ ପାଇବ କଂସରାଜା ଦେଶ
ଏମନ୍ତ ଉପଦ୍ରବ୍ୟରେ ଥୋକେ ଯାଉ ନାଶ ।
କଂସ ଭଲେ ଥିଲେ ଆମ୍ଭେ ମରୁଥିବା ଡ଼ର
ସ୍ୱର୍ଗର ସମ୍ପଦବଳେ ନେବ ସିନା ହର ।
ଏମନ୍ତ ଆଜ୍ଞା ଶ୍ରୀମୁଖେ ସୁରପତି ଦେଲେ
ସଭା ମଣ୍ଡଳିଲ୍ଲ ଗୋଟି ଗୋଟି ଉଠିଗଲେ ।
ସୁରପତିର ଆଜ୍ଞାରେ ମିଳି ଦେବଗଣ
ମଥୁରା କୁଟେ ନାଶିବା ପାଇଁ ଦେଲେ ମନ ।
ଶୁକମୁନି ବୋଲନ୍ତି ଯେ ପରୀକ୍ଷା ଶୁଣନ୍ତୁ
ସମ୍ବର୍ତ୍ତମେଘ ମଥୁରାରେ ବୃଷ୍ଟି ନ କରନ୍ତୁ ।
ପାଣି ନ ପାଇ ପ୍ରଜାଏ ହୋଇଲେକ ଦଗ୍ଧ
ପ୍ରଚଣ୍ଡ ଆଦିତ୍ୟ ତେଜ ନ ପାରନ୍ତି ସହି ।
ଚଉଦିଗ ଅନ୍ଧକାର ଘୋଟେ ଦିଗଭାଗେ
ମେଘେ ନିର୍ଘାତ ବର୍ଷନ୍ତି ଅମଙ୍ଗଳ ଯୋଗେ ।
ପ୍ରଚଣ୍ଡ ହୋଇ ପବନ ବହଇ ଯେ ଟାଣି
ମେଡ଼ ମଣ୍ଡପ ଭାଙ୍ଗିଣ ପଡଇ ଧରଣୀ ।
ସବୁବେଳେ ପ୍ରାଣୀଙ୍କର ଦେହେ ରୋଗପୀଡ଼ା
କ୍ଷଣକ ବିଶ୍ରାମ ନାହିଁ ନିରନ୍ତର ମଡ଼ା ।
କେ ବୋଲନ୍ତି ଧନ ଘରୁ କେଉଁ କତି ଗଲା
କେ ବୋଲନ୍ତିଘରୁ ଚୋର କେଉଁବାଟେ ନେଲା
ଥୋକାଏ ବୋଲନ୍ତି ପୋତିଥିଲି ଯତ୍ନକରି
କେ ବୋଲଇ ନେଲା ତାହା ବାସୁକି ଯେ ହରି
ଏକକୁ ଆରେକ ତହିଁ ବିଚାର କରନ୍ତି
ମଥୁରା ଦେଶେ ହୋଇଲା କିବା କି ଅମାନ୍ତି ।

ମେଘମାନେ କମ୍ପାଇଁ ନ ବର୍ଷନ୍ତି ଜଳ
ତାଳେ ପୃଥ୍ୱୀ ଦେଖା ଯେ ନ ଦିଏ ଶସ୍ୟଫଳ ।
ବଡ଼ା ଗ୍ରୀଷ୍ମ ପବନତ ବହୁଅଛି ଟାଣି
ତପତ ମରୁତ ବହେ ନିରନ୍ତର ପୁଣି ।
ରାଜ୍ୟ ଯାକତ ଲୋକଙ୍କ ଦେହ ରୋଗମୟ
ଆମ୍ବ ପଣସ ଫଳତ ସବୁ ଗଲା କ୍ଷୟ ।
ଅନେକ ଲୋକତ ମଲେ ବଜ୍ର ସୂଚି ପଡ଼ି
ପୋତିଲ ଧନମାନ ତ ନ ପାଇଲୁ ଲୋଡ଼ି ।
ରାଜାଙ୍କର ହାତୀ ଘୋଡ଼ା ମରୁଛନ୍ତି ଯେତେ
ବିଧାତା ଅବଳ ହେଲା ଆସି ଏ ଜଗତେ ।
ସ୍ୱଭାବ ଏ ଦେଶରେତ ଶୋକ ମୋହ ପୀଡ଼ା
କଂସରାଜାର ଅନେକ ମଲେ ହାତୀ ଘୋଡ଼ା ।
ପୁତ୍ର ସମାନ ଅଟନ୍ତି ତାର ଜନ ପ୍ରଜା
ପ୍ରଜା ନାଶ ଯାନ୍ତି କଲେ ଅନ୍ୟାୟ ଯେ ରାଜା ।
ରାଜା ହୋଇଣ ଅନ୍ୟାୟ କଲେ ଧର୍ମ ହାନି
ନିଶ୍ଚେ ନାଶ ଗଲା ଜାଣ ସକଳ ମେଦିନୀ ।
ଗଛମୂଳ କାଟିଲେ କି ଡାଳ ରହେ ଭଲେ
ପ୍ରଜା କାହୁଁ ରକ୍ଷହେବେ ରାଜା ମନ୍ଦ କଲେ ।
ରାଜାର ଅଧର୍ମେ ନାଶ ଯାଇ ପ୍ରଜାଜନ
ଧର୍ମ ଅଧର୍ମ କଥା ତ ଜାଣଇ ସୁଜନ ।
ପ୍ରଜା ନ ପାଳିଲେ ନାହିଁ ରାଜାକୁତ ଯଶ
କୋଟି ୨ ଯାଗ କଲେ ହୋଇବଟି କଷ ।
ମଥୁରା ଦେଶ ଯାକତ ଗଲା ଏବେ କ୍ଷୟ
ଏହା ଖବର କମା ନ କଲେ କଂସରାୟ ।
ଏସନ ଖଳ ହୁଅନ୍ତି ଲୋକେ ହାଲହାଲ
ସି ହାହାରେ ପ୍ରଜାମାନେ ଛାଡ଼ନ୍ତି କୋବାଳ ।
ଜଗଣପରେ ଥାଇଁ ତା ଦେଖେ କଂସରାଜା
କେଶୀ କି କହିଲା କଥ ବୋଷାଳ ଶୁଣ ଯା ।
ଆଜ୍ଞା ପ୍ରମାଣରେ କେଶୀ ଧାଡ଼ିକାରେ ଗଲା
ପ୍ରଜାଙ୍କର ଗୁହାରି ସେ ସକଳ ଶୁଣିଲା ।
ଯାବତ ବେଦନା ପ୍ରଜା କହିଲେ ମଣାଇ
କଂସର ସମ୍ମୁଖେ କେଶୀ କହିଲା ବୁଝାଇ ।
କେଶୀ ବୋଇଲା ଭୋଜଦେବ ଶୁଣ ମୋ ଉଦ୍ଦେଶ
ରାଜ୍ୟଯାକ ତୁମ୍ଭରତ ସବୁ ଗଲା ନାଶ ।
ମେଘମାନେ କାଳରେ ନ ବରଷିଲେ ଜଳ
ପୃଥ୍ୱୀ ଦେଖା କେବେହେଁ ନ ଦେଲା ଶସ୍ୟଫଳ
ନିରନ୍ତର ପବନତ ବହେ ଅଣଆତ
ଚୋର ଗଜ ଅଶ୍ୱ ସବୁ ହେଲେଣିତ ନାଶ ।
ଅଗ୍ନିର ତେଜ ନଞ୍ଜନ ସୂର୍ଯ୍ୟ ତେଜ ଜାତ
ହାସପାଇ ପ୍ରଜାଙ୍କର ଅହର୍ନିଶି ଚିନ୍ତା
ଅଗ୍ନି ତେଜେ ପକ୍ୱ ନୋହେ ସିଦ୍ଧାଦ୍ରବ୍ୟମାନ
ଭକ୍ଷ୍ୟ ନ ପାଇ ମଲେଣି ତୋର ପ୍ରଜାଜନ ।
ତୁମ୍ଭ ପରାୟେ ଠାକୁର ଯେଉଁ ରାଜ୍ୟେ ରାଜା
ସେ ରାଜ୍ୟେ ଯାବତ ଦୁଃଖ ପାଇ ଜନପ୍ରଜା ।
ଆମ୍ଭେ ଅଷ୍ଟମଲ୍ଲେ ଥାଉଁ ତୁମ୍ଭର ଯେ ସଖା
କୋଟି କୋଟି ଇନ୍ଦ୍ର ଜିଣିପାରୁ ଏକା ଏକା ।
ଏତେବଡ଼ ସମ୍ପଦତ ହେଲା ରଣଭଣ
ନିଶ୍ଚେ ଜାଣିଲୁ ଏହାତ ଦେବଙ୍କ ଉଥାଣ ।
ଅଧର ପୁଷ୍ଟ କରଣ କେଶୀ ଯେ କହିଲା
ଦେବତା ଏ ନ କଲେ କି ଏସନକ ହେଲା ।
କେଶୀର ବଚନ ଶୁଣି କଂସମହାରାୟ
କୋପଭର ହୁଅନ୍ତେ ଯେ କମ୍ପେ ତାର କାୟ
ଗରଜଇ କାଳସର୍ପ ଜାଣି କୋପଭରେ
ଲୋହଧନୁ ଗଦା ଶର ଧରିଅଛି କରେ ।
ସାରଥିକ ବୋଇଲେରେ ରଥ ବେଗେ ସାଜ
ଆଜ ସ୍ୱର୍ଗପୁରକୁ ମୁଁ କରିବ ଦହସର୍ଯ୍ୟ ।
ସକଳ ଦେବଙ୍କୁ ଆଜ ଧକାଇବ ମାରି
ନିଷ୍ଟପୁ ସ୍ୱର୍ଗେ ମୁଁ ଆଜ ନୂଆ ଇନ୍ଦ୍ର କରି ।
ନ ମାରି ମୁଁ ଦଧ୍ୱା କରି ଗୁଡ଼ାଇଲି ପୂର୍ବେ
ସେ ବୈରକୁ ସନାଦେବେ କଲେ ଏହା ଏବେ
ଏହାପରେ ଆଜ୍ଞା କଂସ ରାଜାଠାରୁ ଶୁଣି
ଧାଡ଼ିକାରେ ସାରଥି ଯେ ରଥ ଦେଲା ଆଣି ।
ସାଜିଣ ସେ ରଥବର ରଖିଲା ତା ଆଗେ
ଅଷ୍ଟମଲ୍ଲଙ୍କୁ ଆଣ ଯା ବୋଲେ କଂସ ବେଗେ ।
ଅଷ୍ଟମଲ୍ଲ ସଙ୍ଗେ ଘେନ ରଥେ ବସେ ରଗେ
ଧନୁଶର ଘେନ କଂସ ହୋଇ ଉଦ୍ଧବେଗେ ।
ଆଜ ଦେବତାଙ୍କର ମୁଁ ଘେନିବଇଁ ପ୍ରାଣ
ମାରିବ ନିଶ୍ଚେ ଦେବଙ୍କୁ ଉଗ୍ରସେନ ରାଣ ।
ଏତେବୋଲି କଂସ ରଥେ ବିଜେକଲା ଯାଇଁ
ଶୂନ୍ୟମଣ୍ଡଳେ ସାରଥି ରଥ ନେଲା ବାହି ।
ଥୋକାଏ ଦୂର ସେ ମଞ୍ଚପୁର ଛାଡ଼ି ଗଲେ
ଅଦ୍ଧ ପଥରେ ସେ ମେଘମାନଙ୍କୁ ଦେଖିଲେ ।

ଆବର୍ତ୍ତକ ସମ୍ବର୍ତ୍ତକ ଦ୍ରୋଣ ଯେ ପୁଷ୍କର
କୋପଭରେ କହଇ ସେ ଭୋଜ ନୃପବର ।
ମେଘଙ୍କୁ ବର୍ଷିଣ ଖାର ବୋଲଇ କ୍ରୋଧରେ
ମୋ ରାଜ୍ୟ ବୃଷ୍ଟି ନ କର କପାଁ । ଜଳଧରେ
ତୁମ୍ଭଯୋଗୁଁ ନାଶଗଲା ପିତା ମୋର ସୃଷ୍ଟି
ଜନପ୍ରଜାଏ ହୋଇଲେ ସର୍ବେ ମହାକଷ୍ଟୀ ।
ଜାଣୁ ୨ ମୋହଠାରେ ଦ୍ରୋହକର୍ମ କଲ
ତୁମ୍ଭର ବୁଦ୍ଧିରେ ତୁମ୍ଭେ ପିତା ନାଶଗଲ ।
କଂସ ବୋଲନ୍ତ କେଶୀରେ ଧର ତାଙ୍କୁ ଯାଇଁ
ବନ୍ଧନ କରି ଏହାଙ୍କୁ ସଙ୍ଗେ ଥିବା ନେଇ ।
ଆଜ୍ଞାପ୍ରମାଣେ ସେ କେଶୀ ମେଘଙ୍କୁ ବାନ୍ଧିଲା
ରଥ ଚକ୍ରି ଖମ୍ଭେ ଚାରି ମେଘ ଖଞ୍ଜାଇଲା ।
ଚାରିମେଘଙ୍କୁ ବନ୍ଧନ କରି କଂସରାୟେ
ରଥଚଢ଼ି ସ୍ୱର୍ଗକୁ ସେ କଲାକ ବିଜୟେ ।
ଏକା ରଥ ଚଢ଼ି କଂସ ଆସୁଅଛି ବାହୁ
ଗଜଅଶ୍ୱ ପଦାତିକ ସଙ୍ଗତରେ ନାହିଁ ।
ସୂର୍ଯ୍ୟକିରଣକୁ ଜିଣି ଝଣୁଛି ସେ ରଥ
ଶ୍ୟେନପକ୍ଷୀ ଜାଣି ରଥ ଉଡ଼େ ଶୂନ୍ୟପଥ ।
ପବନଠୁଁ ବେଗେ ରଥ ଆସୁଅଛି ଉଡ଼ି
ନିକଟ ହୁଅନ୍ତେ ଇନ୍ଦ୍ର ଯାଏ ସ୍ୱର୍ଗ ଛାଡ଼ି ।
ଭୃଗୁ ଅଙ୍ଗିରା ମୁନି ଯେ ସୁରସିଦ୍ଧ ମୁନି
କଂସାସୁର ଦେଖି ପୂଜାକଲେ ଅର୍ଘ୍ୟ ଘେନି ।
ରଥର ଓହ୍ଲାଇଣ ସେ କଂସାସୁର ରାୟେ
ସୁଧର୍ମା ସଭାରେ ଯାଇଁ କଲାକ ବିଜୟେ ।
ତଳେ ଉଭାହେଲେ ତେବେ ଖାଖେ ହସ୍ତଦେଇ
ଦେବଗଣଙ୍କୁ ଅନାଇ କଂସ ଯେ ବୋଲଇ ।
ମରଣକୁ ତୁମ୍ଭର କି ନାହିଁ କରେ ଭୟ
ଏଡ଼େ କପଟୀ ଅଟଇ ସୁରପୁର ରାୟ ।
ଜାହା ଭରସାରେ କଲ ମୋଠାରେ କପଟ
ମଥୁରାପୁରେ ମୋହର ସବୁ କଲ ନଷ୍ଟ ।
ନ ଉଠଇ ମୋରାଜ୍ୟରେ ପୃଥ୍ୱୀ ଶସ୍ୟ ଫଳ
ଜାଳ ଜାଣି ମେଘେ ବୃଷ୍ଟି ନ କରନ୍ତି ଜଳ ।
ପୋଡ଼ିଲା ଧନମାନରେ ବାସୁକି ନିଅଇ
ପ୍ରଚଣ୍ଡ ସୂର୍ଯ୍ୟର ତେଜ ପବନ ବହଇ ।
ଅକାଳେ ପ୍ରାଣୀଙ୍କ ଶିରେ ବଜ୍ରସୁତ ପଡ଼ି
ଅଘାତ କରୁଛ କେତେଁ ବେଳ ବଢ଼ି ବଢ଼ି ।

ସ୍ୱଜନ ପ୍ରଜାମାନେରେ ହେଲେ ମୋରବେରୀ
ଏମନ୍ତ ଛନ୍ଦ କଲେ ଦିଗପାଳେ ମରି
ତୁମ୍ଭଙ୍କୁ ମୁଁ ଦିଗବଳେ ବେଳେ ନ ମାରିଲି
ରାତ୍ରିର ଗୁଣମାନ ରେ ଏ ବେଳେ ପାଇଲି ।
ତିଳ ପ୍ରମାଣରେ ମାଂସ କାଟିବି ଏକ୍ଷଣି
ଦେବଇନ୍ଦ୍ର କାହିଁକି ଦେଖା ଯୋଡ଼େ ଆଣି ।
ତୁମ୍ଭେ ସବୁ ବୃହସ୍ପତି ଆଦି ଦେବ ଗୁରୁ
ଆଜ ଦେହରେ ତୁମ୍ଭଙ୍କ ରକ୍ଷା କରିପାରୁ ।
କଂସାସୁର ବୋଇଲା ରେ ଆସୁ ଦେବରାଜ୍ୟ
ବୃହସ୍ପତି ଆସିଥିଲେ ଦେଖି ଦେବରାଜ ।
ଇନ୍ଦ୍ର କୁ ବର୍ଷିଣ କଂସ ବୋଲଇ ବଚନ
ରାଜ୍ୟ ମୋର ନଷ୍ଟକଲ କହ କି କାରଣ ।
ମରଣକୁ ନ ଡରିଲେ ଏତେକ ଭରସା
ଶୋଇଲା ସିଂହକୁ କରେ ଶଆଁ ଏ କି ଶଶା ।
ଜଳନ୍ତା ଅଗ୍ନି କପାଳେଁ ହାତେ ପେଲିଦେଲ
ନିଶ୍ଚୟ ତେବେରେ ତୁମ୍ଭେ ଆଜ ନାଶଗଲ ।
ଏତେବୋଲି କଂସାସୁର କୋପଭର ହୋଇ
ରଥର ଉପରୁ ଖାର ମଣ୍ଡପ ଓହ୍ଲାଇ ।
ଅଷ୍ଟମଲ୍ଲଙ୍କୁ ବର୍ଷିଣ ବୋଲେ କଂସାସୁର
ସର୍ବଦେବଙ୍କ ଧରିଲେ ନେବା ଯମପୁର ।
ଆଜ୍ଞାମାତ୍ର ଅଷ୍ଟମଲ୍ଲେ ଦେବଙ୍କୁ ଧଇଲେ
ଗୋଟି ୨ କରି ତାଙ୍କୁ ରଥରେ ବାନ୍ଧିଲେ ।
ଯମ ଦକ୍ଷରାଜ ଆଦି ବରୁଣ କୁବେର
ଚନ୍ଦ୍ର ସୂର୍ଯ୍ୟ ବୈଶ୍ୱାନର ଅଶ୍ୱିନୀକୁମାର ।
ବୃହସ୍ପତି ଗନ୍ଧର୍ବ ଏ ଆଦି ମସ୍ତେଣ
ଚାରିମେଘ ଗ୍ରହ ତାରା ପବନକୁ ଘେନି ।
ଯକ୍ଷ ବିଦ୍ୟାଧର ଆଦି କିନ୍ନରାଦି ମୁନି
କଂସ ଆଜ୍ଞାରେ ବାନ୍ଧିଲେ ଅଷ୍ଟମଲ୍ଲ ବଳେ ।
ପୁଷ୍ପକେତୁ ରଥରେ ସେ ସମସ୍ତ ବସାଇ
ମଞ୍ଚଭୁବନକୁ କଂସ ଅଇଲା ଅହ୍ଲାଇ ।
ଆପଣା କଟକେ ଆସି ପ୍ରବେଶ ହୋଇଲା
କୋପଭରେ ଆକର୍ଷିଣ ଦେବଙ୍କୁ ବର୍ଷିଲା ।
କେବେ ତୁମ୍ଭଙ୍କରେ ଆଜ ପାରୁ ରକ୍ଷାକରି
ମାରି ପକାଇବି ତୁମ୍ଭେ ମୋହର ବଇରୀ ।
ଏସନ ବୋଇଲା ଯହୁଁ କଂସାସୁର ରାୟେ
ଶୁଣି ଭୟରେ କମ୍ପିଲେ ସବୁ ଦେବତାଏ ।

ଦେଖିଲେ ଯହୁଁ କଂସର ଭୟଙ୍କର ମୂର୍ତ୍ତି
କହନ୍ତ ଯେ କୃତାଞ୍ଜଳି ହୋଇ ବୃହସ୍ପତି ।
ସାବଧାନ ହୋଇ ଶୁଣ ତୁମ୍ଭେ ନୃପାଧିପ
ଅକାରଣ ଆମ୍ଭଠାରେ ନକର ହୋ କୋପ ।
ରାଜାଧିରାଜେଶ୍ୱର ତୁ ନୃପ ଶିରୋମଣି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ ତୁମ୍ଭେ ଯେ କାରେଣି ।
ତୁମ୍ଭେ ସିନା ଆମ୍ଭଙ୍କୁ ଯେ ସ୍ୱର୍ଗ ଅଛ ଛାଡ଼ି
ତୁମ୍ଭେ ନ ରଖିଲେ ଆମ୍ଭ ବନ୍ଧନ କେ ଫେଡ଼ି ।
ଏ ଦେବଗଣ ତୁମ୍ଭର କଲେ କେଉଁ ଦୋଷ
ଅକାରଣେ କାହିଁପାଇଁ କର ଏଡେ ରୋଷ ।
ତୁମ୍ଭେ ଯେବେ ନ ବିଚାର ଦଣ୍ଡିବ ଗୋସାଇଁ
ତ୍ରିଭୁବନରେ ଆମ୍ଭଙ୍କୁ କେ ରଖି ନ ପାରଇ ।
ତୁମ୍ଭେ କୋପକଲେ ଆମ୍ଭେ ପ୍ରାଣ ପାଇବାହିଁ
କେଉଁ ଅପରାଧ ତୋତେ କଲୁ ଭୋଜସାଇଁ ।
ଦୋଷ ବିଚାରଣ ଦଣ୍ଡ ଦିଅ ନୃପବର
କି କଥାରେ କହ ଦୋଷୀ ହୋଇଲୁ ତୁମ୍ଭର ।
କଂସବୋଲେ ଦେବତାଏ ଅଟ ବଡଦୋଷୀ
ତୁମ୍ଭର ବୋଲେ ହୋଇଲି ମୁହିଁ ରାଜ୍ୟ ଧ୍ୱଂସୀ
ଦେବଗଣ ହୋଇ ତୁମ୍ଭେ ଅବିଶ୍ୱାସୀ ହେଲ
ତୁମ୍ଭର ଜୀବନ ଥିଲେ ମୋର କାହିଁ ଭଲ ।
ଏଯେ ପୃଥ୍ୱୀ ଦେବୀ ଅଟେ ଜଗତର ମାତ
ମୋର ରାଜ୍ୟରେ କମ୍ପା ନ କରେ ଶସ୍ୟଜାତ
ପ୍ରଥମେ ପୃଥିବୀ ଦେବୀ କଲି ମୋତେ ଏହା
ଏକଥା କି ସ୍ୱରୂପ ହୋ ନୋହେ ଶଚୀନାହା ।
ଏତେବୋଲି ଗରଜଇ କଂସ କୋପଭରେ
ଆକ୍ରୋଶି ବିଦ୍ଧା ମାଇଲା ପୃଥିବୀ ଉପରେ ।
କଂସ ବିଦ୍ଧାଘାତ ପାଇ କମ୍ପେ ବସୁନ୍ଧରୀ
ଦଲ ଦଲ ହେଲା ଦେବେ ମହାଭୟ କରି ।
ଟଳ ଟଳ ହୋଇଲୁକ ତେଡେ ମହାସ୍ଥଳୀ
ନବଦ୍ୱାର ବାଟେ ପଡ଼େ ରୁଧିର ଯେ ଗଳି ।
ବାହାସ୍ଫୋଟ ମାରି କଂସ ଆକ୍ରୋଶି ବସିଲା
ଭୟ ପାଇ ବସୁମତୀ ଲହସି ପଡ଼ିଲା ।
ସୁରମେଘଙ୍କୁ ଆଜ୍ଞାଦେ ବୋଲେ ବୀରମଣି
ତୁମ୍ଭେମାନେ ମୋର ଦେଶେ ନ ବରଷ ପାଣି
ତୁମ୍ଭଯୋଗୁଁ ମୋହର ଏ ରାଜ୍ୟଗଲା ନାଶ
ତିଳ ପ୍ରମାଣେ କାଟିବି ଆଜ ତୁମ୍ଭ ମାଂସ ।

ଆହେ ଅଗ୍ନିଦେବ ତୁମ୍ଭ ତେଜେ ପାକସଜ୍ଜା
ଅନ୍ନ ବ୍ୟଞ୍ଜନ ହୋଇଲା ସବୁ କମ୍ପା କଞ୍ଚା ।
ଠ ସିଝିଲା ଦ୍ରବ୍ୟ ସବୁ ପ୍ରଜା ନ ଖାଇଲେ
ଜ୍ୱର ରୋଗୀ ହୋଇଲେ ପୁଣି ସର୍ବେ ନାଶଗଲେ
ପବନ ଦେବତା ମୋତେ କି ଅବା ନ କଲା
ରାଜ ବିଭା ଅଣଆଣ ପବନ ହୋଇଲା ।
ମେଘ ମଣ୍ଡପ ଦେଉଳ ମୋର ଦିବ୍ୟପୁର
ଘନବୃଷ୍ଟି ମୋହରରେ ସବୁ ହେଲା ଚୂର ।
ଅନେକ ଦୁଃଖେ ପ୍ରଜାଏ ଅର୍ଜିଥିଲେ ଦ୍ରବ୍ୟ
ମହାମାତ୍ର ପ୍ରାପ୍ତ ହୁଅ ରଖିଥିଲେ ସର୍ବ ।
ଥୋଇଲଠାରୁ ବାୟୁକ ନେଲା ସବୁ ହରି
ଏହାର ଜୀବନ ମୁହିଁ ନେବି ତେଣୁକରି ।
ପୁଣିହିଁ ବୋଇଲା କଂସ ଶୁଣ ଆରେ ଯମ
ତୁଯେ ପ୍ରତ୍ୟକ୍ଷେ ବୋଲାଉ ହିଂସ୍ର ଯମ ଧର୍ମ ।
ଅକାରଣେ ଅଶ୍ୱ ଗଜ କମ୍ପା ପଡ଼ି ମଲେ
ଏମାନ ଅଟଇ ତୁମ୍ଭ କଲା କର୍ମ ଭଲେ ।
ଆରେ ଦେବତାଏ ତୁମ୍ଭେ ଏଡ଼େ କୃତ୍ୟ କଲ
ଜାଣିଲେ ଜାଣିଲରେ ତୁମ୍ଭେ କେଉଁ ବୁଦ୍ଧି ଭଲ ।
ଜଣେ ଜଣେ ମୋର ତୁମ୍ଭେ ସମସ୍ତେ ବଇରୀ
ଅନେକ କଷ୍ଟ ଦେଇ ମୁଁ ପକାଇବି ମାରି ।
ବୃହସ୍ପତି ବୋଲନ୍ତି ତୁ ଗୁଣବନ୍ତ ହୋଇ
କଥା ନ ବିଚାରି କ୍ରୋଧ କରୁ କାହିଁପାଇଁ ।
ତୁମ୍ଭର ଦଣ୍ଡିଲେ ଆଉ ଆନ କେହି ରଖି
ତୁମ୍ଭେ ସର୍ବ ନ୍ୟାୟପତି ତୁମ୍ଭେ ଧର୍ମ ସାକ୍ଷୀ ।
ତୁମ୍ଭେ ଯେବେ ଦେବତାଙ୍କୁ ଦେଉଅଛ ଦୋଷ
ଋତୁଯୋଗେ ଭଲ ମନ୍ଦ ସବୁ କାଳବଶ ।
ଏମାନେ ପୁଣ୍ୟ ପୁରୁଷ ଥାନ୍ତି ସ୍ୱର୍ଗପୁରେ
ଏ କର୍ମମାନ ହୋ ରାଜା ନୋହେ ଏହାଙ୍କରେ
ଯେତେବେଳେଯାହାକୁହେ ହୋଏ ଯେଉଁଯୋଗ
ବ୍ରହ୍ମା ବିଷ୍ଣୁ ହେଲେହେଁ ଅବଶ୍ୟ ତା ଭୋଗ
କର୍ମ ବିନା ପ୍ରାଣୀଙ୍କର ଆନ ନାହିଁ ଶାଖା
ଯେ ଯାହାର ବେଳେ କର୍ମ ଫଳଇ ଏ ଲେଖା
ଯେତେବେଳେ ଯାର ପୁଣି ହୋଏ ଯେଉଁକଥା
କେବଳ ମାତ୍ର ଯେ ସାକ୍ଷୀ ଅଟନ୍ତି ଦେବତା ।
ଆପଣ ର କଲା କର୍ମ ଆପେ ସିନା ଭୁଞ୍ଜି
ଲଭ ହାନ ଲେଖନ୍ତିହିଁ ଯମରାଜା ପାଞ୍ଜି ।

ଏକେତ ପଣ୍ଡିତ ତୁମ୍ଭେ ଦ୍ୱିଜେ ପୃଥ୍ୱୀପତି
ଯେ'ଟ ଯୋଗ କହ କପଁା ଦେବଙ୍କ ଅମାତ୍ତ ।
ତୁମ୍ଭେ ବୋଲଇ କରିବ ଦେବଙ୍କୁ ବିନାଶ
ସୁରଗଣ ନାଶି ତୁମ୍ଭେ ଅର୍ଜିବ କି ଯଶ ।
ଆତ୍ମା ଅବିନାଶୀ ସର୍ବଘଟେ ଅଛି ପୂରି
ବିଧାତା ଅର୍ଜିଲା ସବୁ ମାନବତ୍ତ କରି ।
ଆପେ ଗଢ଼ାଇ ଦେଉଳ ଆପେ ଭଗ୍ନ କଲେ
କେତେ ପାପ ଅର୍ଜି ଯେପି ଛନ୍ଦ୍ରଏ କାଟିଲେ ।
ଶତେକ ତରୁ କୁଠାର ଯେନ ଯେବେ କାଟି
ଧର୍ମଶାସ୍ତ୍ରେ ଲେଖି ପାପହୁଏ ତେତେ କୋଟି ।
ପୋଷିଲା ଜୀବ ଗୋଟିକ କରଇ ଯେ ନାଶ
ସହସ୍ରେ ଗୃହନ୍ତା ଜୀବ ମାରି ତେତେ ଦୋଷ
ଦେଖି ଚଣ୍ଡାଳରୁ ଯେବେ ସହସ୍ରେକ ମାରି
ଜଣେ ଶୂଦ୍ରକୁ ମାରିଲେ ତେତେ ପାପସରି ।
ସହସ୍ରେ ଶୂଦ୍ର ମାଇଲେ ପାପ ହୋଏ ଯେତେ
ଏକ ବୈଶ୍ୟକୁ ମାଇଲେ ପାପ ହୋଏ ତେତେ
ସହସ୍ରେ ବୈଶ୍ୟମାଇଲେ ଲାଗେ ଯେତେ ଦୋଷ
ତେତେ ପାପହୁଏ ଜଣେ କ୍ଷତ୍ରୀ କଲେ ନାଶ ।
ଶତେକ କ୍ଷତ୍ରୀ ମାଇଲେ ଯେଉଁ ପରାଭବ
ଜଣେ ବିଦ୍ୟାବନ୍ତ ମାରି ତେବେ ପାପ ଲଭି
ସହସ୍ରେ ବିଦ୍ୟାବନ୍ତ ମାରି ଯେତେ ପାପ ଲେଖି
ଜଣେ ଜ୍ଞାମାକ ମାଇଲେ ତେତେ ପାପ ଲକ୍ଷି
ସହସ୍ରେକ ଜ୍ଞାମା ଯେବେ କରିବଟି ବଧ
ତେତେ ପାପ ଜଣେ ଯୋଗୀଶିରକଲେ ଛେଦ
ଶତେକ ଯୋଗୀ ମାରିବେ ଯେବେ ଅକାରଣେ
ତେତେକ ପାପ ପାଇବ ମାରି ସ୍ତ୍ରୀ ଜଣେ ।
କରିବ ଯେବେ ଶତେକ ସ୍ତ୍ରୀ ପ୍ରାଣନାଶ
ଏକା ଗୁରୁର ବଚନ ଲଙ୍ଘିଲେ ସେ ଦୋଷ
ଶତେ ଗୁରୁ ବାକ୍ୟ ଲଙ୍ଘେ ଯେଉଁ ମହାପାପୀ
ଏକା ବିଶ୍ୱାସଘାତକ ସେହି ପାପରୂପୀ ।
ସହସ୍ରେ ବିଶ୍ୱାସଘାତକ ଯେତେ ପାପ କରି
ଏକା ଗୋରୁ ହତ୍ୟା ସେହି ମହାପାପ ସରି ।
ଶତେକ ଗୋରୁ ମାଇଲେ ଯେତେକ ପାତକ
ଜଣେ ବ୍ରାହ୍ମଣ ମାଇଲେ ଦୋଷହିଁ ତେତେକ ।
ଏ ବିଧିରେ କଲେ କୋଟି ବ୍ରାହ୍ମଣଙ୍କୁ ବଧ
ଜଣେ ଦେବତା ମାଇଲେ ତେତେ ଅପରାଧ

ଆମ୍ଭର ବଚନ ଶୁଣି କର ତୁ ବିଶ୍ୱାସ
ତୁହି ଯେବେ ଦେବତାଙ୍କୁ କରି ଲୋଡ଼ ନାଶ ।
ଅକ୍ଷୟ ଅଜରାମର ସେହି ପୁଣ୍ୟମୟେ
ଏହାଙ୍କ ମରଣ ନାହିଁ ମହାପ୍ରଳେ ଯାଏ ।
ଅନେକମତ ତୁ ଯେବେ ସଂଗ୍ରାମ କରିବୁ
ଦେବ ଭଣ୍ଡାର ଆଦି ଯେ ସର୍ବସ୍ୱ ହରିବୁ ।
ଅପସରଙ୍କୁ କରିବୁ ବଳେ ଯେବେ ବେଶ୍ୟା
ନନ୍ଦନବନେ ପଶିବୁ ଯେବେ ଦଣ୍ଡଧାରୀ ।
ମର୍ତ୍ତ୍ୟପୁର ଲେଣ୍ଟି ଯେବେ ଲଭି ସ୍ୱର୍ଗବାସ
ଦେବତାମାନଙ୍କୁ ବଳେ କରି ନୋହେ ନାଶ ।
ଯେତେ ଅଖ୍ୟାତି ପାଇବୁ ସେହି ହେବ ସାଧ
ତୋହର ବଳେ ତ୍ରିଦଶ କରି ନୋହେ ବଧ ।
ଆମ୍ଭେ ତପୋବନ୍ତ ଜାଣୁ ପ୍ରତ୍ୟକ୍ଷରେ ଏହା
ତୋର ଆଗରେ କହିବୁ କମା ମିଛ ମାୟା ।
ଅଷ୍ଟଦଳେ କର୍ଣ୍ଣିସ୍ଥାର ଅଛୁ ମହା ଯୋଧୀ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତୁ ଦଣ୍ଡକରେ ସାଧି ।
କୋଟିଏ ଇନ୍ଦ୍ର ତୁ ଜିଣିପାରୁ ନିମିଷକେ
ନାହିଁନା ଜନ୍ମେ'କେହି ତୋତେ ସପ୍ତଲୋକେ ।
ଆଦ୍ୟେ ସ୍ୱର୍ଗଦେଇଛନ୍ତି ସତ୍ୟେ ଯୋଗନାହା
ଦେବଙ୍କୁ ଜଙ୍ଘାସି ହେବୁ ସତ୍ୟର ଦୋରେହା ।
ତା ବିଷ୍ଣୁରକୁ ନ ଆସେ ଯେବେ ସୁରସାଇଁ
ଆନନ୍ଦ କରି ଥାପ ସ୍ୱର୍ଗପୁରେ ନେଇ ।
ଅନେକ ମତେ ବୁଝାଇ କହି ବୃହସ୍ପତି
ଶୁଣି ସନ୍ତୋଷ ହୋଇଲା ଯୋଜନରପତି ।
ହୃଦସିତ ହୋଇ କହେ କଂସ ସୁର ଗୁରୁ
ତୁମ୍ଭପରି ମନ୍ତ୍ରୀ ଅନ୍ୟ ସ୍ୱର୍ଗେ ନାହିଁ ଭଲ ।
ତୁମ୍ଭ ବଚନ ଶୁଣି ମୁଁ ହୋଇଲି ମୋହିତ
ନିଶ୍ଚୟ ଜାଣିଲି ତୁମ୍ଭେ ଅଛ ପୁଣ୍ୟବନ୍ତ ।
ତୁମ୍ଭବୋଲେ ଦେବତାଙ୍କୁ ଦେଲି ଏବେ ଛାଡ଼ି
ଆଜ୍ଞା ଦୋଷକଲେ ସ୍ୱର୍ଗ ବସିବଇଁ ମାଡ଼ି ।
ଏ ମୋହର ସତ୍ୟ ସତ୍ୟ ତିନିବାର ବାଣୀ
ଆନନ୍ଦ କରିବି ମୁଁ ତୁମ୍ଭେ ଥାଅ ଜାଣି
ଆହେ ବୃହସ୍ପତି ଯେବେ ମୁକୁଳାଇ ନେବ
ଏହି କଥାମାନ ଦେବଗଣଙ୍କୁ କହିବ ।
ପ୍ରଜାଙ୍କର ଲୋଡ଼ାହେଲେ ଦେଉଥିବ ଜଳ
କାଟିକେ ଶତେ ଭରଣ ହେବ ଶସ୍ୟଫଳ ।

ବାରମାସ ମୋର ପୁରେ ବୃଷ୍ଟିକ ବହନ୍ତ
ଯେମନ୍ତେ ମୋ ପ୍ରଜାଜନ ହୋଇବେଟି ସୁସ୍ଥ ।
ଯେତେକ ଧନ ବାସ୍ତବ ଦେଉଅଛନ୍ତି ହରି
ସେଠାରେ ଥୋଇଦେଉ ସେ ଶତଗୁଣ କରି ।
ଅଶ୍ୱଗଜ ପଦାତିକ ମଲେ ଯେତେ ଯହିଁ
ସେଯାହା ସ୍ଥାନମାନଙ୍କ ଥିବେ ସୁଖେ ରହି ।
ଯେତେଣ ଜଗତି ବାଞ୍ଛନ୍ତି ପୁଣ ପୁଣ ଯାହା
ଅବଶ୍ୟ ସେମାନଙ୍କୁ ହୋ ମିଳୁଥିବ ତାହା ।
ଆମ୍ବ ପଣସ ନଡ଼ିଆ ଗୁଆ ଆଦି ଫଳ
ଷଡ଼ଋତୁ ନରୂପଳ ଫଳିବେ ସକଳ ।
ଜନ୍ମହିଁ ଉବେଗ ହେବେ ମୋର ପ୍ରଜାଜନେ
ସ୍ତ୍ରୀ ପୁରୁଷ ଷୋଡ଼ଶା ଥିବେ ସବୁଦିନେ ।
ଏକଥାମାନ ଯେବେ ତୁ କରି କରିପାରୁ
ତୁମ୍ଭ ବଚନେ ଦେବଙ୍କ ଦେବ ଦେବଗୁରୁ ।
ଏକଥା ନ କଲେ କେବେ ନ ଛାଡ଼ଇ ସ୍ଥାଡ଼
ନୋହିଲେ ମୁଁ ସ୍ୱର୍ଗପୁର ବସିବଇଁ ମାଡ଼ି ।
ବୃହସ୍ପତି ବୋଇଲେ ତୁ ଆଜ୍ଞା ଦେଲୁ ଯାହା
ମୋତେ ଲାଗଇ ଅବଶ୍ୟ କରିବେ ସେ ତାହା ।
ଏତେବଳ ଉଣ ଦେଲ୍ ଦେବଙ୍କୁ ତୁ ଆଣି
ଗୁଡ଼ଭଷ ସର୍ଗକୁ ହୋ ମିଳୁ ଏତକଣି ।
କ୍ଷରଣଗଞ୍ଜର ବାଦ ତୁ ରାଜା ହୋ ତହୁଁ
ଏତେ ଚଣ୍ଡ ରାଜା ହୋଇ ଏତା ଛମ୍ପା ଛଡ଼ୁ ।
କଂସ ବୋଇଲେ ଗୁ ର ହେ ତମ୍ଭ ବଚନକୁ
ଏତେବେଳ ଦୋଷ ସ୍ଥାନେ ଦେଲ ଦେବତାଙ୍କୁ ।
ଶୁଣିଲେ ଦେବଗଣ କଂସର ଆଦେଶ
ସେମାନେ ସ'ନ ବାହନ ଆସେବାକୁ ନିବେଶ ।
ଅଳସାକ୍ଷେ ଆଣି ଦେଲେ ସ୍ୱର୍ଗରେ ପବେଶ
ଦେବଗଣ ମନେ ମନେ ସମସ୍ତେ ନିରସ ।
ସେ ଯାହାର ନିଜପୁରେ ପବେଶିଲେ ଯାଇଁ
କାହାର ମନେ ହରଷ ଛତ୍ରପାନ ନାହିଁ ।
ସୁଜତେ ଶଚୀ ପୁ ରଷ ସ୍ୱର୍ଗ ଉତପାଳ
ଦଇବ ଯୋଗେ ସେ ପାଇଅଛନ୍ତି କଷ୍ଟାଳ ।
ଶୁକମୁନି ବୋଲନ୍ତି ହୋ ଶୁଣ ପରୀକ୍ଷିତ
କଂସର ଉଗର ବୁଲେ ସ୍ୱର୍ଗେ ଅନୁବ୍ରତ ।
ସବୁରି ମନେ ଲାଗିଲା ଚିନ୍ତାଭୟ ବଡ଼ା
ସ୍ୱର୍ଗରେ ଛଡ଼ ନାହିଁ ଢବସେ ତାଟକା ।

କ୍ଷୁଧାତୃଷା ନିଦ୍ରା ଜାଣ ନାହିଁ କାହାକୁହିଁ
ଚିନ୍ତାଭରେ ଛନଛନ ହେଉଅଛି ଦେହି ।
ନ ଜାଣି ସ୍ୱର୍ଗପୁର କେ ଗୁଡ଼ି ପଳାଇଲେ
କୃଷ୍ଣ ମୁକ୍ଙ୍କ ସଙ୍ଗେ ଯେନ କପିଳାସ ଗଲେ ।
କେବଣ ପୁରେ ହୋଇଲେ ବନେ ବନବାସ
କନ୍ଦରେ ପଶି ନର୍ମର ମାର ଆଶ୍ରା କରି ।
କେବଣ ଦେବେ ଆସ୍ଥାନ ତଳକୁ ସ୍ୱଦୀନ୍ତ
ଭୟ ଲାଗନ୍ତେ ସେ ଯାଇଁ ମଧ୍ୟରେ ପଶନ୍ତି ।
ରାଜ୍ୟଭବସ ସ୍ୱର୍ଗରେ ପଡ଼ିଥାଇ ହରି
କେ ବୋଲଇ କଂସାସୁର ଆଜ ଦେବଧାଡ଼
କେ ବୋଲଇ ସୁଲ ସୁଲ ମିବା ଏଥୁ ବେଗେ
କେ ବୋଲଇ ଯାହିଁ ଯାଉଁ ପଡ଼ିବା ତା ଆଗେ
କେ ବୋଲଇ ସ୍ୱର୍ଗପୁର ନଷ୍ଟେ ଗଲା ନାଶ
ଏତେକାଳ ହୋଇଲା ଏ ରାକ୍ଷସଙ୍କ ବାସ ।
ଇନ୍ଦ୍ର ଦେବତାଙ୍କୁ ତ ନ କଲେ କେହି ପୂଜା
କେ ବୋଲଇ ସ୍ୱର୍ଗପୁରେ କଂସ ସିନା ରାଜା ।
କହନ୍ତି ସେ ଇନ୍ଦ୍ରପତି ବାକ୍ୟ ଶୁକମୁନି
ଶୁଣ ରାଜା ହରିବଂଶ ଗାଥା ପୁଣ୍ୟଧ୍ୱନି ।
ନମୋ ହରିହର ଦାସ ପୁଣ୍ୟଚୋଥୀକୁଳ
ଜୟ ଗଙ୍ଗାଧର ଦୁଇଦେବତା ଜଟିଳ ।
କଂସର ଭୟେ ସେ ଦେବେ ହୋଇଣ ଆରତ
ନମାମି ତୁ ଦ୍ୱାଦେବ ହେ ନମାମି ଅଚ୍ୟୁତ ।
ନମାମି ହରିହର ହେ ପଦ୍ମାକ୍ଷ ସୁଭଳ
ଅଧେକ କୃଷ୍ଣବର୍ଣ୍ଣ ହେ ଅଧେ ଅଟ ଶୁକ୍ଳ ।
କରେ ଶଙ୍ଖ ଚକ୍ର ଗଦା ପଦ୍ମ ଯେ ତ୍ରିଶୂଳ
ପକ୍ଷୀ ବୃଷଭବାହନ ତବ ସଦାକାଳ ।
ସଦା ଆନନ୍ଦ ଭ୍ରମ ଏ ଚତୁର୍ଦ୍ଦଶ ପୁର
କଣ୍ଠେ କୁଣ୍ଡଳ କର୍ଣ୍ଣେ ଶିରେ ଅହିବର ।
କପାଳରେ ଅର୍ଦ୍ଧ ଚନ୍ଦ୍ର କସ୍ତୁରୀ ସୁରଙ୍ଗେ
ଦକ୍ଷିଣେ କମଳା ଉମାଦେବୀ ବାମଅଙ୍ଗେ ।
ଯେ ଗାଙ୍ଗ ଧାରଣ ତୁମ୍ଭେ ଅଟ ହରିହର
ଗର୍ଭେ ତୁମ୍ଭର ଅନନ୍ତ ଗଳେ ଫଣୀହାର ।
କୋଟି ବ୍ରହ୍ମ ପରିଯନ୍ତେ ପରାପର ନାହିଁ
ଦେବାଧି ଦେବରାଜ ଯେ ତୁମ୍ଭେ ଏକଦେହି ।
ବେଦତତ୍ତ୍ୱ ଜାଣି ସ୍ୱାମୀ ଦୁହେଁ ଏକ ଆତ୍ମା
ଅନାଦି ନିରାକାର ହେ ତୁମ୍ଭେ ଯୋଗବ୍ରହ୍ମ ।

ଯେଉଁ ନାମ ସ୍ମରଣେ କଳୁଷ ବିନାଶ
କୃଷ୍ଣ ଭକତଜନ ଫିଟେ ଭବପାଶ ।
ହରିହର ସ୍ମରଣେ ପାପ ନଷ୍ଟ ବୃତ୍ତି
ହରିହର ସ୍ମରଣେ ହୋଏ ବାଞ୍ଛାସିଦ୍ଧି
ହରିହର ସ୍ମରଣ ହୋ ଭବ ହେବ ପାର
ହରିହର ସ୍ମରଣ ହୋ କାଟେ ଦର୍ପ ଦେହର ।
ହରିହର ସ୍ମର ହେବ ନାଶ ଯେ ସଙ୍କଟ
ହରିହର ନାମ ଲଭ ଧନ ପୁତ୍ର ପୌତ୍ର ।
ହରିହର ସ୍ମରଣେ ମିଟେ ଭବବାଧା
ହରିହର ସ୍ମରଣେ ବଢ଼େ ଭକ୍ତି ଶ୍ରଦ୍ଧା ।
ହରିହର ସ୍ମର ତୁଟିଯିବ କ୍ଷୁଧା ତୃଷା
ହରିହର ସ୍ମର ତୁଟିଯିବ ମାୟା ଆଶା ।
ହରିହର ସ୍ମର କଲେ ହେବ ବର୍ଦ୍ଧମାନ
ହରିହର ସ୍ମର ତୁଟିଯିବ ଅପମାନ ।
ସଂସାର ଭିତରେ ଜାତ ହୋଇ ଯେତେ ପ୍ରାଣୀ
ହରିହର ନାମର ଅଭ୍ୟାସ ହୋ ପୁଣି ।
ହରିହର ନାମ ହେଲେ ହୃଦରେ ପ୍ରକାଶ
ମହାପାପ କ୍ଷୟ ନିତ ହରିନାମ ଘୋଷ ।

—※—

## ଦେବଗଣଙ୍କର ବିଷ୍ଣୁ ପୁରେ ଗମନ

ଏଥି ଅନନ୍ତରେ ପୁଣି ମସ୍ତକ ନମନ୍ତି
ସନ୍ତୋଷ ହୋଇଲେ ହରିହର ନାମ ଶୁଣି ।
କୃତକୃତ୍ୟ ହୋଇ ମନ ମଧ୍ୟରେ ବିଚାରି
କୃତାଞ୍ଜଳି ହୋଇ ଶୁକ ମୁନିଙ୍କି ପଚାରି ।
ହେ ମୁନି ପର୍ଯ୍ୟନ୍ତେ ଜନ୍ମ ସଂସାର ଧରି
ଅଗାଧ ବହୁ ଧ୍ୟାନି ତ ବ୍ରହ୍ମ ସମସ୍ତ ।
ଶ୍ରୀକୃଷ୍ଣ ତୁମ୍ଭର ବଚନେ ପୁଣ୍ୟ ବାଣୀ
ଅନେକ ପାପ ଧ୍ୱଂସିଲା ତତକ୍ଷଣ ଶୁଣି ।
ଏଥି ଉତ୍ତାରେ ହୋଇଲା କଥା କସ ଆନ
ସଂକ୍ଷେପି କହିବ ମୋତେ ବ୍ୟାସଙ୍କ ନନ୍ଦନ ।
ଦେବତାମାନଙ୍କୁ ଦୁଃଖ ଅନେକ ସେ ଦେଲା
ବୃହସ୍ପତିଙ୍କ ବଚନେ ଦେବଙ୍କୁ ଛାଡ଼ିଲା ।
ଏତେବଡ ଅନ୍ୟାୟ ସେ କଂସାସୁର କଲା
ଦେବତାମାନଙ୍କୁ ରଥେ ବାନ୍ଧିଣ ଆଣିଲା ।
ମଥୁରା ପୁରକୁ ବାନ୍ଧିନେଲା ସାରମଣି
ଅନେକ ଶାସ୍ତି ଦେଇଣ ଛାଡ଼ିଦେଲା ପୁଣି ।

ଏଥି ଅନନ୍ତରେ ସେ କଂସ ପୁଣ କଲା କିସ
ଏକଥା ସଂକ୍ଷେପି ମୋତେ କହ ବ୍ୟାସଶିଷ୍ୟ ।
ଅବଧାନ କର ନୃପତି ଉଦ୍ୟମୀ ହୋଇଲ
ନାରଦାଦି ସେ ମୁନିଙ୍କ ଚରଣେ ଶୁଣିଲ ।
ବଳାଇ ସେ ଭକ୍ତଜନ ଦେଖି ମୁନିପତି
ବୋଇଲେ ଶୁଣ ନୃପତି ବୋଲେ ସତ୍ୟବାଣୀ
ସାବଧାନ ହୋଇ ଭଦ୍ରେ ଶୁଣ ମହୀପତି
କଂସାସୁର ଦର୍ପ ନାଶ କଲେ ଚକ୍ରପାଣି ।
ଏଥି ଅନନ୍ତରେ ଶୁଣି ଦେବଲୋକେ ଅନେକ
ସୁଧର୍ମା ସଭାରେ ଦେବେ ବସିଲେ ସମସ୍ତେ ।
ଶଚୀପତି ସେ ଇନ୍ଦ୍ର ହୋଇଲ ଉଦାର
ଅତ୍ୟ ପ୍ରୀତିପାଇ ପାଶ ଦେବ ପୁରନ୍ଦର ।
ସୁଧର୍ମା ସଭାରେ ବସିଥିଲେ ଦେବଗଣ
ଅଷ୍ଟଦିଗପାଳ ଲୋକପାଳ ଦେବଗଣ ।
ଅଗ୍ନି ଯମ ନୈଋତ ପବନ ଦେବ
ନାମେ ଜପ କରନ୍ତି ଯୋଡ଼ି ବେଣୁପାଣି
ଉର୍ବଶୀ ଆଦି ନାରୀ ସେ ସ୍ୱର୍ଗ ବିଳାସିନୀ
ସୁଧର୍ମା ସଭାରେ ଆସି ମିଳିଲେ ତରୁଣୀ ।
ସମ ସୋମ ଅନଳ ଦେବ ବୈଶ୍ୱାନର
ଆଦିତ୍ୟ ସବୁ ଆଦି ବରୁଣ କୁବେର ।
ଶମନ ବୃହସ୍ପତି ଆଦି ଷଡାନନ ବ୍ରହ୍ମ
ଅଷ୍ଟବସୁ ସଙ୍ଗେ ଚନ୍ଦ୍ର ସୂର୍ଯ୍ୟ ସନମିଷ୍ଟ ।
ସପ୍ତମାତ୍ର ସଙ୍ଗରେ ଆବର ସେ ମାତା
ଅଷ୍ଟ ଅପସରା ସଙ୍ଗେ ନଟଣୀ ସହିତ ।
ସତାଇଶ ନକ୍ଷତ୍ର ସେ ନବଗ୍ରହମାନ
ଯୋଗକରଣ ସେ ଯୁଗବୃନ୍ଦ ମେଘମାନ ।
ଦେବଋଷି ରାଜଋଷି ବ୍ରହ୍ମଋଷି ସଙ୍ଗେ
ଷଣ୍ଡନକ ଭରଶ୍ୱରେ ମିଳି ଋଷିଙ୍କେ ।
ଡାକିନୀ ପିଶାଚୀଗଣ ଯେତେ ଭୈରବୀ
ସ୍ୱର୍ଗ ମର୍ତ୍ତ୍ୟ ପାତାଳର ଯେତେ ଦେବାଦେବୀ
ନନ୍ଦୀ ଭୃଙ୍ଗୀର ମୂଳେ ଏକାଦଶ ଦାସୀ
କ୍ଷେତ୍ରପାଳ ଭୈରବ ସେ କାଳ ଆଦିକର ।
ଅଷ୍ଟଗଣ ରୁଦ୍ରଗଣ ବ୍ରହ୍ମଗଣ ଯେତେ
ଅନନ୍ତ ତକ୍ଷକ ନାଗ କୁଳିକ ସହିତେ ।
ଏ ଆଦି ସଭାରେ ଥିଲେ ଦେବତା ଅନେକ
ଶଙ୍ଖପଦ୍ମ ମହାପଦ୍ମ ମଣି କର୍କୋଟକ ।

ପୃଷ୍ପଚନ୍ଦ୍ର ହିମବନ୍ତ ପର୍ବତର ପ୍ରନ୍ତ
ମନ୍ଦୁ ବଦ୍ରେଶ୍ୱର ଆଦି ସପ୍ତ ମହାପନ୍ତ ।
ଦର୍ଦ୍ଦୁର ମହେନ୍ଦ୍ର ବିନ୍ଧ୍ୟ ଆଦି ଗିରି ମାନ
ଅଶ୍ୱଗାକୁମର ଉ ଇଶ୍ୱବସ୍ତୁ ଆଦି ଠାନ ।
ଆବର୍ତ୍ତ ସମ୍ବର୍ତ୍ତ ଦ୍ରୋଣ ପୁଷ୍କର ଯେ ମେଘ
ଭିଷକୁମ୍ଭ ଶିବମୁନେ ସତାଇଶ ଯୋଗ ।
କୋଟି ସିଦ୍ଧମୁନେ ଚତୁଗୁପଞ୍ଚ ଯେ ପୁଣ
ସତାଇଶ ନକ୍ଷତ୍ର ଯେ ଏଗାର କରଣ ।
ଯେବେ ସଭାର ମହିମା କହିବ ମୁଁ କେତେ
ଯୁକ୍ତପି କହିବା ବୁଦ୍ଧି ସ୍ଫୁରୁନାହିଁ ଚିତ୍ତେ ।
ସ୍ଫଟିକ ଦର୍ପଣମାନ ଦିଶେ ଚନ୍ଦ୍ର ପରି
ମଧ୍ୟାହ୍ନ ଆଦିତ୍ୟ ଜିଣି ତାର ତେଜଜ୍ୟୋତି
ରଖାଣିଲ ସୁନାପର ଶ୍ରେଣୀ ସେ ଅଟେ ଶେଣୀ
ଧାଡ଼ି ଧାଡ଼ି ନକରତ୍ନ ବିଚିତ୍ର ଖଞ୍ଜଣି ।
ଚିନ୍ତାମଣି ସିନ୍ଧୁଆ ନେତ ପାଟ ମନ
ଚହିଁରେ ଲଗି ଅଛଇ ଶୁଦ୍ଧ ଯେ ସୁବର୍ଣ୍ଣ ।
ଉଭା ଖଞ୍ଜା ହୋଣାମାନ ମାଣିକ୍ୟରେ ହୋଇ
ବୈଦୂର୍ଯ୍ୟ ପୁଞ୍ଜ ପୁଞ୍ଜ ହୋଇ ଦିସିଛନ୍ତି ।
କରଣ ଚତୁଗୁପଚ ତହିଁ ଜଗୁଆଳ
ତନ୍ଦ୍ରିତ ମନରେ ବିଶ୍ୱକର୍ମା ଅଛୁ କରି ।
ଇନ୍ଦ୍ର ଗୋବର୍ଦ୍ଧନ ଗୃଢ଼ଆ ସୁତକର୍ମ ଜ୍ୟୋତି
ବେଢ଼ାଇ ବାନ୍ଧିଅଛନ୍ତି ତାତ ତଡ଼ିତ ।
ଚମ୍ପା ନାଟେଶ୍ୱର ମଲ୍ଲି ବକୁଳ ପାଟଳ
ସୁବାସ କୁସୁମ ତହିଁ ଲମ୍ବେ ମାଳ ମାଳ ।
ଗଜ ମୁକୁତା ଝରାରେ ମାଣିକ୍ୟ ମିଶାଇ
ଚଉପାଶେ ଲମ୍ବାଇଛି ତାହାକୁ ଯେ ନେଇ ।
ଖଞ୍ଜିଛି ଶ୍ୱେତଗ୍ରସ୍ତର ମାନ ଖଞ୍ଜାମୂଳେ
ସିଞ୍ଚୁଛି ସୁବାସ ପାଣି ପନିଅର ଜଳେ ।
ଯେବଣ ସଭାରେ ହ୍ରସ୍ୱ ବୃଦ୍ଧେ ନରସୁବା
ତହିଁକ ଯେ ପଟାନ୍ତର ଆନ କିସ ଦେବା ।
କ୍ଷୁଧା ତୃଷା ମାନ ସର୍ବେ ବିବର୍ଜିତ ହୋଇ
ଧର୍ମକଥା ବ୍ୟତିରେକେ ଆନକଥା ନାହିଁ ।
ଦାଇବର ବିକୃତ ହେ ଦେଖ ନରପତି
ଏମନ୍ତ ସମସ୍ତେ ଉଭା ହୋଇ ବସୁମତୀ ।
କେଶ ବାସ ଅସମ୍ଭାଳ ହୋଇ ବସୁନ୍ଧରୀ
ଉଚ୍ଚସ୍ୱରେ ରୋଦନ କରେ ଧର୍ମକୁ ସୁମରି ।
ତା ନୟନରୁ ରୁଧିର ବହେ ଘନ ଘନ
ଚନ୍ତାଭରେ ଦେବାଙ୍କର ମନ ଛନ ଛନ ।
କ୍ଷଣ କ୍ଷଣ ଲେଟି ଉଠି ପଡ଼ି ମହୀତଳେ
ହାହା ବିଧାତା ବୋବାଳି ପାରେ ଅସମ୍ଭାଳେ ।
ଅପାଷ୍ଟନ ହୋଇ ପୃଥ୍ୱୀ ଦୃଏ ମୋହଗତ
ଅତି କ୍ଷୀଣ ଦେହ ଦିଶେ ଜଗତର ମାତ ।
କେବଳ ଶରୀରେ ତାର ନିଶ୍ୱାସ ବହୁଛି
ବଳ ବୀର୍ଯ୍ୟ ପରାକ୍ରମ ନାହିଁ ତାର କିଛି ।
ଦେବ ସଭାତଳେ ଆସି ପ୍ରବେଶ ହୋଇଲା
ଅତିକ୍ଳେଶେ ସଭାକୁ ସେ ଯାଇଁଣ ଗୁହାରିଲା ।
ଆହେ। ଦେବଗଣ ତୁମ୍ଭେ ସମ୍ଭାଳ ଏ ମହୀ
କଂସାସୁର ପ୍ରବଳରେ ନ ପାରଇ ସହି ।
ସମ୍ଭ୍ରମ ଦେବତା ତୁମ୍ଭେ ଦେଖ ମୋ ଅବସ୍ଥା
ତୁମ୍ଭେ ନିଶ୍ଚିନ୍ତ ରହିଲ ମୋର ଏତେ ଚିନ୍ତା ।
ତୁମ୍ଭର ଥାଆନ୍ତେ ମୁଁ ଯେ ହେଲି ବଡ଼ କଷ୍ଟି
ଆନର ହାତରେ ତୁମ୍ଭେ ଦିଅ ତୁମ୍ଭ ସୃଷ୍ଟି ।
ସୁରଗଣେ ରକ୍ଷିପ ଉ ଯେବେ ଏତେବେଳେ
ଗ୍ରାସିବ ଏ ମହୀଭାଗ ପଡ଼ୁ ରସାତଳେ ।
ତ ହାରଯୋଗୁ ହୋଇଲା ମୋର ଏତେ ଦୁଃଖ
ତୁମ୍ଭଙ୍କୁ କହିଲି ମୋତେ ପାରିଲେ ହେ। ରଖ
ଚଉଦ ଯେ ଟା ବ୍ରହ୍ମାଣ୍ଡ କହିଅଛି ଶିରେ
ସକଳ ରାଜ୍ୟର ଚିନ୍ତା ଅଛଇ ମୋଠାରେ ।
ମୋହରେ ଆଗ୍ରବେ କେହି ନ ପାରିବେ ରଖି
ଏକଥା ପ୍ରମାଣ ଶୁଣି ଥାଅ ଅଷ୍ଟ ଆକ୍ଷି ।
ମୁହିଁ ଯେବେ ଶସ୍ୟଜାତ ନ କରିବ ଭଲେ
ଦୁର୍ଭିକ୍ଷ କ ହାକୁ ଲାଗିବ ପ୍ରାଣୀମନେ ମଲେ
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଏ ସ୍ଥିର
ମୋତେ ନ ରଖିଲେ ସର୍ବେ ଯିବେ ପୁଣି ସରି
ବ୍ରହ୍ମ ଲୋକଠାରୁ କୀଟ ପତଙ୍ଗ ପର୍ଯ୍ୟନ୍ତେ
ମୋତେ ନ ରଖିଲେ କହ ବର୍ତ୍ତିବେ କେମନ୍ତେ
ଚଉରାଶି କୋଟି ଜୀବ ଜନ୍ତୁ ଏବେ ଲେଖା
ଚରାଚର ଜୀବ ଜନ୍ତୁ ରଖିଛି ମୁଁ ଏକା ।
ହବ ହୋମ ଯାଗ ଯଜ୍ଞ ମୋ ଉପରେ କଲ
ଅନନ୍ତ କୋଟି ବ୍ରହ୍ମାଣ୍ଡ ମୋ ଶିରେ ଥାପିଲ
ବନ କନ୍ଦର ଆଦି ଯେ ମେରୁ ଅଷ୍ଟଗିରି
ସପତ ସମୁଦ୍ର ନଦୀ ସବୁ ଅଛି ଧରି ।

କ୍ଷିତିପତି ଷଷ୍ଠୀ ଯେତେ ଅଛନ୍ତି ସଂସାରେ
ସମସ୍ତଆର୍ଦ୍ଧେକ ସିନା ମୋହର ଉପରେ ।
ତୁମ୍ଭେ ଦେବତାଏ ସିନା ହୋଇଛ ଅଗଣୀ
ମୋର ନ ଥିଲେ ସଂସାର ହେବକେହ୍ନେ ପୁଣି ।
ଏକଥା ତଦନ୍ତ କରି ଈଶ୍ବର ସକଳ
ନଷ୍ଟେ ଜାଣ ରସାତଳେ ପଡ଼ିଲ୍ଲ ଶଙ୍କଳ ।
ଏତେ ବୋଲି ଦେଖାକାନ୍ଦେ ହୋଧଭରି ହୋଇ
ଉଚ୍ଚେ ରୋଦନ କରନ୍ତି ଦେବଗଣ ସ୍ବର୍ହିଁ ।
ବସୁଧା ଆକୁଳ ଦେଖି ବୋଲେ ପୁରନ୍ଦର
କଂସର ଧଡ଼ ଲାଗିଲ୍ଲ ମାଗୋ ଚରାଚର ।
ମାଗୋ ତୁମ୍ଭ ତହୁଁ ମୋର ଅଧିକ ବେଦନା
ପ୍ରତ୍ୟକ୍ଷେ ମାଗୋ ଦେବଙ୍କ ଦୁଃଖ ଦେଖକନ ।
ପ୍ରଥମେ କଂସ ଅଇଲ୍ଲ ଦଣ୍ଡ ଗୋଷ୍ଠୀ ଭିଡ଼ି
ଅମର ଭୁବନ ଯାକ ଦେଲ୍ଲକ ଉଜାଡ଼ି
ଦେବ ଭଣ୍ଡାରମାନ ସେ ସବୁ କଲ୍ଲଜୁର ।
ବାରସ୍ବର୍ଗ ଭୁବନକୁ କଲ୍ଲ ନାରଖାର ।
ଅଇଲ୍ଲକ ଏକରଥ ଚଢ଼ି ଆରବେଳେ
ମଥୁରାକୁ ଧରି ବାନ୍ଧି ନେଲ୍ଲ ରଥେ ବଳେ ।
ଉପହାସ କରି ଆମ୍ଭଙ୍କୁ ଦୁଃଖଦେଲ୍ଲ ଯେତେ
ତେହ୍ନ ବହ୍ନି ଏକଷ୍ଟ ଗୋ ସହିବାକ କେତେ ।
ନୁହଁ ତୁମ୍ଭେ ବକଳ ଗୋ ସମସ୍ତଙ୍କେ ଧରି
ଏକଷ୍ଟରୁ ନାରାୟଣ କରିବେ ଗୋ ପାରି ।
ସବୁକାଳେ ପ୍ରାଣିଙ୍କର ଦୁଃଖଭରା ନାହିଁ
ଦୁଃଖ ସୁଖ ବେନପାଳ ଦେହ ଅଛି ବହି ।
ଏକଥା ବରିଷ୍ଠଲେ ଗୋ ହୋଇ ପୁଣ କସ
ଯାହା ଲଲାଟେ ଗୋ ଲିଖି ଛନ୍ତି ପୀତବାସ ।
ଏତେକ କହିଲେ ତହୁଁ ବସୁଧାର ନାଥ
ନିଶ୍ବାସ ଛାଡ଼ି କପାଳେ ଦେଇ ନିଜ ହାତ ।
ଚିନ୍ତାଭରେ ବୃହସ୍ପତି ମୁଖ ଦେଲେ ସ୍ବର୍ହିଁ
ବୋଇଲେ କଷଣୁ ପାରି କରିବାକ କେହ୍ନ ।
କଂସଭୟରୁ କେମନ୍ତେ ହେବାଆମ୍ଭେ ପାରି
ଅମରଗଣ ହୋ କରି ଏଥକୁ ବିଚାରି ।
ସଂଗ୍ରାମରେ କଂସରାଜା ନୋହେ କେବେ ସାଧ୍ୟ
କି କି ଉପାୟ ମରିବା କହ ବିବୁଧାଦ୍ୟ ।
ଦୁଇବେଳେ ଧାଡ଼ିରୁଡ ତରି ଧର୍ମବଳେ
ଏବେକ ଅଇଲେ ସବୁ ସଂହାରିବ ଛଳେ ।
ପୋଡ଼ି ଏହି ସ୍ବର୍ଗ ଭୋଗ ପଳାଇବା ଛାଡ଼ି
ଆମ୍ଭର ଗଲ ପଛକେ କଂସ ବସୁ ମାଡ଼ି ।
ଶରୀରେତ ପ୍ରାଣ ଥିଲେ ସବୁ କରି ପାରି
ପ୍ରାଣ ଛାଡ଼ି ଗଲେ କେହ୍ନ ନୁହଇ କାହାରି ।
ସ୍ବର୍ଗ ନ ଛାଡ଼ିଲେ ପ୍ରାଣକରି ଆମ୍ଭେ ତ୍ୟଜ୍ୟା
ଏମନ୍ତ ବୋଲି ବୋଇଲେ ଯହୁଁ ସୁରରାଜା ।
କହନ୍ତି ସେ ଦେବଇନ୍ଦ୍ର ବାକ୍ୟେ ବୃହସ୍ପତି
କିପାଁ ଏକଥା କହିଲ ଆହେ ସୁରପତି ।
ଇନ୍ଦ୍ର ବୋଇଲେ ଶରୀରେ ଭୟ ଯେବେପଡ଼େ
ପୂର୍ବ କାଳରେ ନ ଥିଲେ ଖାରି କେତେକେତେ
ସ୍ବର୍ଗପୁରେ ସବୁକାଳେ ଅସୁରଙ୍କ ଭୟ
ତଧାତାର ବୁଦ୍ଧି ବଳେ ହୁଅନ୍ତି ସେ କ୍ଷୟ ।
ବସୁ ନାମେ ସତ୍ୟଯୁଗେ ମଘବା ଯେ ଇନ୍ଦ୍ର
ଆସ୍ଥାନରେ ବସିଥିଲ୍ଲ ଘେନି ସୁରବୃନ୍ଦ ।
ଏମନ୍ତ ସମୟେ ତହିଁ ତାରକା ବାହିଲ
ଅଯୋଗେ ସବୁ ଦେବଙ୍କ ପଛେ ଧାଡ଼ିଦେଲ୍ଲ ।
ସେନାପତି କାର୍ତ୍ତିକେୟ ତାହାକୁ ମାଇଲ୍ଲ
ତେବେ ଯାଇଁ ଦେବଙ୍କର କଷ୍ଟ ପାରି ଗଲ୍ଲ ।
ସେ କଥା ତୁମ୍ଭେ ଚକ୍ଷୁରେ ଦେଖିଛ ପ୍ରତ୍ୟକ୍ଷ
ହିରଣ୍ୟକଶିପୁ ତାର ହିଇ ହିରଣାକ୍ଷ ।
ବଡ ପ୍ରତାପୀ ଦାନବ ଦୁଇ ଭାଇ
ସ୍ବର୍ଗ ମର୍ତ୍ତ୍ୟ ପାତାଳରେ ଜିଣନ୍ତା କେନାହିଁ ।
ମହା ବରାହ ରୂପରେ ପ୍ରଭୁ ନରହରି
ଦନ୍ତେ ପୃଥିବୀ ଧଇଲେ ହିରଣ୍ୟ ବିଦାରି ।
ଭାଇର ଛଳେ ହିରଣ୍ୟକଶିପୁ ଅସୁର
ବିଷ୍ଣୁର ବଇରୀ ହୋଇ ନାଶିଲ୍ଲ ସଂସାର ।
ପ୍ରହ୍ଲାଦ ନାମେ ତାପୁତ୍ର ଶ୍ରୀହରି ଭକତ
ମାରିବା ପାଇଁ ଉପାୟ କଲ୍ଲ ସେ ବହୁତ ।
ଭକତକୁ ଯହୁଁ ମାରି ନ ପାରିଲ୍ଲ କୋପେ
ଗୋବିନ୍ଦ ଯେ ବିଦାରିଲେ ନରସିଂହ ରୂପେ ।
ପୂର୍ବେ ମଧୁ କଇଟଭ ଦୈତ୍ୟ ଅବତାର
ମହାପ୍ରଳୟ ଜଳକୁ ନାହିଁ ତାଙ୍କ ଡର ।
ପଶନ୍ତେଣ ପାଣି ତାଙ୍କୁ ହୁଏ ଅଣ୍ଟୁ ଆଣି
ତହେଁ ତାହାଙ୍କୁ କାଟିଲେ ଦେବ ଚକ୍ରପାଣି ।
ମସିଗୁଣ୍ଡା କରି ତାଙ୍କୁ ଭଙ୍ଗି ଶତେବାର
ମଦେ ମେଦରେ ମେଦିନୀ ଥାପି ଚକ୍ରଧର ।

ହିରଣ୍ୟକଶିପୁ ନାମେ ବଳୀ ଦୈତ୍ୟ ଥିଲା
ତେଜରେ ଥିଲା ଏହି ସର୍ବମଣ୍ଡଳ ବ୍ୟାପିଲା ।
ଦେବଗଣର ଅମୃତ ଆଣି ନେଲା ବଳି
ପାତାଳପୁର ମଧ୍ୟରେ ରଖିଲା ନେଇ ।
ସ୍ୱର୍ଗପୁର ଦେବତାଙ୍କ ନେଲେ ନେଇ ନାଶ
ପରମତମ କରନ୍ତି ତମେ ତମେ ସ୍ୱର୍ଗ ପାଶ ।
ସବୁରେ ଅସୁରାଧମ ସବାଗ୍ରୀ ଯେ ଥିଲା
ଇନ୍ଦ୍ରାସ ଭଳ ପାଇଲେ ତାଙ୍କ ବଳଧନ ।
ବାମନରୂପେ ତାହାର ଭୂମି ଦାନ ନେଇ
ଇନ୍ଦ୍ରଙ୍କୁ ଆଣିଦେଲେ ତା'ର ପଦ କହି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ ଆଣିଲେ ଚଳାଇ
ମାତାରେ ରଖିଲେ ତାଙ୍କ ପ୍ରତେକ ଜଣାଇ ।
ଷଣ୍ଡବାନ ପଦପ ଯେ ମଳବନ୍ତି ଦାଶ
ନାବଣ ଧାମେ ଅସୁର ଅନେକ ମହାବଳୀ ।
ଅନେକ ବାର ସ୍ୱର୍ଗକୁ ଉପଦ୍ରବେ ଗଲା
ଇନ୍ଦ୍ରାଦିକ ଦେବଙ୍କ ବାନ୍ଧି ନେଇଗଲା ।
ଗଦାଙ୍କର ଅନୁଗ୍ରହ ଶାବଦନ୍ଧାପକି
ସର୍ବ ମର୍ତ୍ତ୍ୟ ପାତାଳେ ଯେ ହୋଇଲା ଜାଗରିଣି
ଗଦାଙ୍କ ତଳେ ଚରଣ ବେଣା ସ୍ୱଗ ଆସୁ
ତା'ଆସ୍ତଙ୍କ ପଥ ବାନ ଗାବଦବ ଗର୍ଦ୍ଧ ।
ନେବଲଶନ ପାଞ୍ଚ ମଣି ଅଙ୍କଣ୍ଠି ନେତଳ
ଏବେ ଏବେ କ୍ଷଣକ ଯେ ତଣ ଭଗମାଳ ।
ଚଢ ଗହ୍ୱା ଆଦି ଜାଣି ନ ପାରନ୍ତି ଲେଣ
ବଢନ ଗହ୍ୱାଣ ଏଚା ମାଧବ ଯେ ନଲେଣ ।
ଯେଦେଲେତେବେ ଆସାଠେରୁ ବସନ ଯେପାଇଁ ।
ଭକ୍ତ ବଦନେ ମୁଁ ନାଦ ଧବ ନୀଳ ବାଇ ।
ଗହ୍ୱା ମର୍ଦ୍ଦଳ ଧାରଣ ଛଣ୍ଡୁବେ ପାତନ୍ତି
ପାବନ ପାଣା ଧବଣ ନାଣବ କଗନ୍ତି ।
ପ୍ରଷ୍ଣ ମାନ ତାନ ନାବେ ଭଏ ପଣି ମଞ୍ଜି
ମଷ ଦେଖାବ ଦର୍ପଣ ଚଢ ଧଣ ଥାଇ ।
ଯମ ବୈଦ୍ୟପ୍ରଣ ଭକ୍ତ୍ୟ କରୁଥାଇ ସେବା
ତା ମଣ୍ଡିଆଇ ଧଜଡ କରେ ଅଗ୍ନି ଦେବା ।
କବଣ ଯୋଗ ଜ ଥାଇ ବାମମାଣି ଭକ୍ତ୍ୟ
ଭଣ୍ଡାରର ଅଧିକାରୀ କୁବେର ଦୈବତ ।
ପବନ ଯେନ ଝଞ୍ଜଣୀ ଆଦି ତାଡନ୍ତି
ନଇରୁତ ଦେବତା ଯେ ମାର୍ଜନା କରନ୍ତି ।

ମହେସ୍ୱ ଜଳଣ ଧନ ଦେବ ଶୁଦ୍ଧାଗତ
ଭଦ୍ରନ୍ତ ଧଣଣ ଜଣ୍ଡ ହୋଇଥାଇ ନତ ।
ଆବର ଦେବତାମାନେ ଜଗନ୍ତି ଦ୍ୱାରର
ଗ୍ରହଣ ମଧ୍ୟେ ପ୍ରକାଶ୍ତ ଚନ୍ଦନର ଛର ।
ଏହି ଅନୁକ୍ରମେ ଗହ୍ୱା ଦଣ୍ଡାନନ ଶ୍ରେୟେ
ଚନ୍ଦନ ବ୍ରହ୍ମାଣ୍ଡ ତାଙ୍କ ଜଣନ୍ତି କେ ନୋହେ
ଦଶରଥ କୋଳେ ଜନ୍ମି ରାମଚନ୍ଦ୍ର ରୂପ
ଲଙ୍କାଧିପ ବଂଶ ସଂହାରଣ କଲେ ତାଙ୍କୁ କ୍ଷୟ ।
କନ୍ଧବାନ୍ଧବ ମାରି ହବୁ ମଗାବଲ
ସୀତାଙ୍କ ବେଗରେ ଆଣି ଆପେ କ୍ଷୟ ଗଲ ।
ଦେବଗ୍ର ଚ କୋଇଲେ ହେ ଶୁଣ ଶଚୀପତି
ଏମନ୍ତ ବଳ ଶାବମାନେ ଥିଲେ ଏହି ପୃଥ୍ୱୀ ।
ଏଥିର ଭଗ୍ନମଙ୍କଣ ଥିଲ ଜାଣ ପୂର୍ବେ
ଏ ମହାବଳ ହେଲ କ ତାଙ୍କଠାରୁ ଏବେ ।
ଏ ଜମ୍ମଙ୍କ ସର୍ବସ୍ୱରେ ଇନ୍ଦ୍ରପଦ ଦେଲ
ପଦସନ୍ଧି ଜମିବାରୁ କଣ୍ଠ ଉଣ୍ଟାକଲ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଏ ତିନ ଦେବତା
ନଭତ ଭୁବନେ ପୂଣି ଏମାନେ କରତା ।
ଯେ ଜମ୍ମଙ୍କ ଦେଇଛନ୍ତି ସ୍ୱର୍ଗଇନ୍ଦ୍ର ଭୋଗ
ଭଦନା ଭଦନା ସେହି ସୁଯୋଗ କୁଯୋଗ ।
ତାହାଙ୍କ ଆଜ୍ଞାରେ ସିନା ଆମ୍ଭେମାନେ ଥାଇ
ଅଦଳ୍ୟକାରେ ବଶାଇଅଛନ୍ତି ଗୋସାଇଁ ।
ଅଷ୍ଟକୁଳ ନାଗମାନେ ପ୍ରଣମିତ ହୋଇ
ଅନନ୍ତ ପାତନେ ଫଣା ତାଙ୍କୁଣୀକ ଦେଇ ।
ତାହାଙ୍କ ଗ୍ରାମ୍ଭେରେ ସ୍ତବ ଜଣାଇବା କଥା
ନେବେ ଆମ୍ଭର ଫିଟିବ ସିନା ମନବ୍ୟଥା ।
ତାହାଙ୍କ ବିନୁ ଆମ୍ଭର ନାହିଁ ଅନ୍ୟବିଧି
ଏକଥା ବହଲେ ହୋଇବ ସବୁ କାର୍ଯ୍ୟସିଦ୍ଧି ।
ଏକଥା ଯାକ ସକଳ କରେ ଯେହୁ ନାଶ
ଯେ ଯାହାର ମନବାଞ୍ଛା ଲଭଇ ଅବଶ୍ୟ ।
ଏକଥା ବସ୍ତୁର ଭୁମ୍ଭେ ନ କର କମ୍ପାଇଁ
ତାଙ୍କ ବାହାରେ ଉପାୟ ଆନ କିଛି ନାହିଁ ।
ଏତେ ଭଣନ୍ତ ଦେବତାମାନେ ଶୁଭବେଳେ
ହାନ ବ ହାନ ଆଗେଇ ଗଲେ ଅନୁକୂଳେ ।
ସକଳ ଦେବତା ଆଗେ ବସୁଧାକୁ କରି
ବିଧାତାର ପାଶକୁ ଯେ ଗଲେ ଶୋକଭରି ।

କୁଶକେତୁଙ୍କ ସ୍ଥମୁରେ ମିଳିଲେ ସକଳେ
ସନ୍ଧ୍ୟାସାର ଆସ୍ଥାନରେ ବସିବାର ବେଳେ ।
ଉତ୍ତରୀ ସୁବର୍ଣ୍ଣ ସୂତା କନ୍ଧେ ଅଛି ପଡ଼ି
ସ୍ରୁବ ପ୍ରୋକ୍ଷଣୀ ଆବର ସ୍ରୁଚ କୁଶବାଡ଼ି
ଦୋହରା ଭସ୍ମ କପାଳେ ହସ୍ତେ ଜପାମାଳି
ବେଦମନ୍ତ୍ର ପୁସ୍ତକ ଯେ ହୃଦେ ଅଛି ଝୁଲି ।
ବିଶୁଦ୍ଧ ହରିଚନ୍ଦନ ଉତ୍ତରୀ କଣ୍ଠରେ
ଶୁକଳ ଦିବ୍ୟବସନ ଶୋଭିଲ କଟିରେ ।
କୃଷ୍ଣବର୍ଣ୍ଣ କେଶଜାଳ ଲମ୍ବିତ ମସ୍ତକେ
ଯେଉଁ ବସିଛନ୍ତି ବ୍ରହ୍ମଋଷି ସ୍ୱରୂପକେ ।
ବେଦ କାନ୍ତି ଘୋଟକତ ଜମ୍ବୁନଦ ଶୋଭା
ମୁଖ ପଦ୍ମ ହରିଛି କି ଚନ୍ଦ୍ରମାର ପ୍ରଭା ।
ବାଘଛାଲରେ ପଡ଼ିଛି ଦିବ୍ୟ ସତୁଦାଡ଼ା
କୃଷ୍ଣାଜିନ ସ୍ଥୂଳ ଘୋଟ ବସିଛନ୍ତି ମାଡ଼ି ।
ହସ୍ତେ ତ୍ରିଟିକ କୁଶସା ରୁଦ୍ରାକ୍ଷମାଳ
ପଦ୍ମ ପୁଷ୍କରଅଧରେ ଶୋଭେ ବକ୍ଷସ୍ଥଳ ।
ଅନାଦି ନିରଞ୍ଜନ ସେ ବସି ମହାସୁଖେ
ବୃହତ ସାମଗାୟନ କରି ଚତୁର୍ମୁଖେ ।
ଏହି ସମୟରେ ଯାଇ ମିଳି ସୁରଗଣ
ସ୍ଥମୁରେ ସେ ନମସ୍କାର କରନ୍ତି ତକ୍ଷଣ ।
ଦେଖା ପରଣାମି ପଦ ଆଗେ ଥୋଇଦେଇ
ସ୍ଥମୁରେ ସେ ଏକ ମୁଖ ପଡ଼ିଲେକ ଶୋଇ ।
ଶେଷେ କରଯୋଡ଼ି ବୋଲି ସାଶ୍ୱାସ ଗିର
ହେ ପିତାମହ ତୁମ୍ଭେ ସେ ସୃଷ୍ଟିକାର କର ।
ଭସ୍ମାସୁରୁ ଅସୁରଜାଣ ବାଟେ ଘନଘନ
ଦିଗ୍‌ଭୋତର ଥରଇ ଯେ ଦେବତାଙ୍କ ମନ ।
ସ୍ଥମୁରେ ବସୁଧା ଥରି କରପଦ ଯୋଡ଼ି
ଅନେକ ଉଭା ଅନେକ ଭୂମିତଳେ ପଡ଼ି ।
ଏମନ୍ତ ସେ ଗଦ୍ଗଦ ହୋଇ ପ୍ରଣମିତ
ଦେଖି ପ୍ରସନ୍ନ ହୋଇଲେ ଜଗତର ତାତ ।
ବୋଲନ୍ତି ଦେବତାଙ୍କୁ ସ୍ୱୟଂ ପିତାମହ
କିମ୍ପାଇ ଅମରବୃନ୍ଦ ଆଇଲ ଏହି କହ ।
ଅବ୍ୟାହତ ପୁରୁଷ ହେ ତୁମ୍ଭେ ପୁଣ୍ୟଦେହୀ
ତୁମ୍ଭର ଅମର ସ୍ୱର୍ଗପୁରେ ଭୟ କାହିଁ ।
କ୍ଷୁଧା ତୃଷା ବାଧା କିଛି ନାହିଁ ତୁମ୍ଭ ଅଙ୍ଗେ
ପୁଣ୍ୟ ପୁରୁଷେ ଯେ ଅଛ ପୁଣ୍ୟଗୋଷ୍ଠୀ ସଙ୍ଗେ
ଅଢକାଇ ପୁରୁଷ ଯେ ନହନ୍ତା ବହନ୍ତା
ଅମର ଭୁବନେ ଥାଇ ତୁମ୍ଭର କି ଚିନ୍ତା
ଏଥି ତାର ମୁଖୁଁ ଶୁଣି ଏସନକ ବାଣୀ
କହନ୍ତି ଯେ ଆଗଭର ହୋଇ ସସ୍ତ୍ରଯୋନ ।
ଶ୍ରୀଦେବ ହେ ପିତାମହ ଶୁଣ ସାବଧାନେ
ଅରକ୍ଷ ହେଲୁ ଏଥର ଆମ୍ଭେ ଦେବଗଣେ
ଅମରଭୁବନେ ଯତ୍ନ ନ ପାରିଲୁ ରକ୍ଷି
ତେଣୁ ତୁମ୍ଭର ସ୍ଥମୁକୁ ଅଇଲୁ ଜଣାଇଁ ।
କଂସାସୁର ଧାଡ଼ି ଯତ୍ନ ସ୍ୱର୍ଗକୁ ଲାଗିଲା
ବାଈସ୍ୱର୍ଗ ଭୁବନତ ଶୋଭା ନାଶ ଗଲା ।
ତୁମ୍ଭେ ଅନ୍ତର୍ଯ୍ୟାମୀ ଜାଣ ସର୍ବ ଦୁଃଖ ସୁଖ
କଂସଭୟରେ ପାଇଲୁ ଆମ୍ଭେ ବଡ଼ଦୁଃଖ ।
ସ୍ୱର୍ଗେ ପଶି ଦେବତାଙ୍କୁ ବାନ୍ଧି ନେଇଗଲା
ଆମ୍ଭଙ୍କୁ ଯେ ନେଇ ବନ୍ଦୀମଧ୍ୟରେ ଭରିଲା ।
ଅମର ଭୁବନେ ପାଣଦ୍ରବ୍ୟ ଥିଲା ଯେତେ
ମଥୁରାପୁରେ ଭରିଲା ଆମ୍ଭର ସାକ୍ଷାତେ ।
ଦୋଷୀ ଅପରାଧୀ ଲୋକପରି ବାନ୍ଧି ନେଲା
ମଥୁରା ରାଜ୍ୟେ ଆମ୍ଭଙ୍କୁ ବହୁ ଶାସ୍ତି ଦେଲା ।
ଦେବ ଇନ୍ଦ୍ରର ନନ୍ଦନ ବନଶୋଭା ଭାଙ୍ଗି
ସୁସ୍ୱାଦୁ ଫଳ ସକଳ ହେଲା ଦୈତ୍ୟଭୋଗୀ ।
ଦେବବନ୍ଧୁ ସେ ଭୋଗକଲା ସୁଧାପ୍ରାପ୍ୟ ବୁଝି
ଯମଦେବତା ହସ୍ତରୁ କାଢ଼ିନେଲା ପାଞ୍ଜି ।
କାହାରି ମନେ ହରଷ ଭାବ ତିଳେ ନାହିଁ
ସ୍ୱପ୍ନରେ ଦେଖୁଛୁ କଂସ ଆସୁଛି କି ବାହି
ଯେତେକ ଦେବତା ସ୍ୱର୍ଗପୁର ଛାଡ଼ିଗଲେ ।
କପିଳାସ କନ୍ଦରେ ସେ ଯାଇଣ ରହିଲେ ।
ତଥାପି ଆମ୍ଭେ ଯେତେକ ସ୍ୱର୍ଗପୁରେ ଥିଲୁ
ଶରୀରେ ଯେ ପ୍ରାଣମାତ୍ର ସ୍ୱରୂପ କରିଲୁ ।
ଶ୍ରୀଦେବ ପିତାମହ ହେ କର ପ୍ରତିକାର
ପାରିଲେ ତୁମ୍ଭର ସ୍ୱର୍ଗପୁର ରକ୍ଷା କର ।
ସୃଜନ କୋଟି ଜୀବଙ୍କୁ ଅଟ ତୁମ୍ଭେ ପ୍ରଭୁ
କାରଣ ଧାରଣ ତୁମ୍ଭେ ଉଦ୍ଧାରଣ ବିଭୁ ।
ଏଥିରେ ତଦନ୍ତ କରି ବୁଦ୍ଧି କହିଦେବା
ଅନୁଗ୍ରହ କରି ଆମ୍ଭ ଭକତି ଘେନିବା ।
ତୁମ୍ଭେ ଯେ ସଚରାଚର ଥାପିଲ ଧରଣୀ
ଜୀବଜନ୍ତୁ ଆଦ୍ୟାଦି ହୋଇବ କାହିଁ ପୁଣି ।

ତୁମ୍ଭେ ଯେବେ ଅନୁଗ୍ରହ ନ କରିବ ସ୍ୱାମୀ
ନଷ୍ଟ ନାଶଗଲୁ ଆମ୍ଭେ ସର୍ବେ ସ୍ୱର୍ଗଗାମୀ ।
ଅଗୋଚର ହେଲ ତୁମ୍ଭେ ପ୍ରତ୍ୟକ୍ଷରେ ଦେଖ
ଉପାୟ କରଣ ଏବେ ସ୍ୱର୍ଗପୁର ରଖ ।
ଅନେକ କାକୁସ୍ତ ଯହୁଁ ହେଲେ ଦେବଗଣ
ଧାତା ବୋଲନ୍ତି ହେ ତୁମ୍ଭେ ଦେବଗଣେ ଶୁଣ
ବାସବକୁ ବୋଇଲେ ହେ ଶୁଣ ଶଚୀନାହା
ପ୍ରତ୍ୟକ୍ଷେ କହିବା ତୁମ୍ଭେ ନ ଜାଣିକ ତାହା
ସୃଷ୍ଟି ଉପାଣର ସିନା ଆମ୍ଭେ ଯେ କରତା
ରଖିଲା ଲୋକ ତୁମ୍ଭଙ୍କୁ ଶ୍ରୀବସ୍ତୁ ଦେବତା ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଏ ସ୍ଥିର
ଏ ଜୀବ ଜନ୍ତୁଙ୍କୁ ଆମ୍ଭେ ଉପାଇ ଯେ ପାରି
ସୃଷ୍ଟି ଉପାଇବା କଥା ଲାଗଇ ଆମ୍ଭନ୍ତ
ନାରାୟଣ ବିନା ଆନ ନୋହେ ସାମରଥ ।
ଅନାଦି ନିରଞ୍ଜନର ଆମ୍ଭେ ତିନ ଶାଖା
କେବଳ ରୂପ ଯେ ଭିନ୍ନ ସବୁ ଜାଣ ଏକା ।
ଶରୀର ଭିନ୍ନ ଆମ୍ଭର ଆତ୍ମା ଅଟେ ଏକ
ସ୍ୱରୂପ କହୁଛି ମୁହିଁ ଶୁଣ ଦେବଲୋକ ।
ନିରାକାର ଠାରୁ ଆମ୍ଭେ ତିନଭ୍ରାତା ହେଲୁ
ପ୍ରକୃତିକ ଭିନ୍ନ ଭିନ୍ନ କରଣ ବହିଲୁ ।
ଶୂନ୍ୟବାଣୀଠାରୁ ଆମ୍ଭେ ହେଲୁ ଅବତାର
ଅଦଭୁତ ଶବଦେକ ଶୁଭିଲା ଆମ୍ଭର ।
ଆହେ। ତିନଭ୍ରାତ ତୁମ୍ଭେ କର ଦେବକର୍ମ
ରଚିବ ଯେ ଭାରାଭର ସମ୍ଭବ ଯେ ଧର୍ମ ।
ମନ୍ତ୍ରପୋଥିଗୋଟି ମୋତେ ଶୂନ୍ୟ କାଢ଼ି ଦେଲେ
ଏହା ଘେନସୃଷ୍ଟି ତୁମ୍ଭେ କରହେ ବୋଇଲେ ।
ଚଉଦଭୁବନ ଜୀବ ଜନ୍ତୁ ଛନ୍ତି ଯେତେ
ଏତେ ଥିଘେନ ଉପାଅ ଆଜ୍ଞାନଦେଲେମୋତେ
ନାରାୟଣଙ୍କୁ ବୋଇଲେ ସୃଷ୍ଟି ରକ୍ଷାକର
ଦୁଷ୍ଟ ନାଶି ନିବାରିତ ପୃଥିବୀର ଭାର ।
ରୁଦ୍ରଙ୍କୁ ବୋଇଲେ ତୁମ୍ଭେ ଘେନ ଯୋଗପାଷା
ପ୍ରଳୟେ ଅନ୍ତକହିବ ଦେବ ଯୋଗଶିକ୍ଷା ।
ଏହା ଶୁଣି ଦେବେ କଲେ ଈଶ୍ୱରଙ୍କୁ ଧ୍ୟାନ
କପିଳାସ କନ୍ଦେ ଥାଇ କମ୍ପିଲା ଆସନ ।
ଉମାର ବର ଅଙ୍କ ନ ମାଡ଼ି ବସିଥିଲେ
ଦେବଙ୍କର ଆକୁଳ ସେ ଧ୍ୟାନରେ ଜାଣିଲେ ।

ପଞ୍ଚବକ୍ତ୍ରାଙ୍କ ମୁଖ ଚାହିଁ ବୋଲନ୍ତି ଶଙ୍କର ।
ଦେବେ ଯେ ଡାକନ୍ତିଲେ ଆମ୍ଭେ ଯିବୁ ଧାତାଙ୍କ ଘର
ଏତେ ବୋଲି ସଦାଶିବ ବୃଷଭ ଆରୋହି
ଅନ୍ତରୀକ୍ଷେ ନବଲକ୍ଷେ ଡମ୍ବରୁ ବାଜଇ
ଚୌଦକୋଟି ଶିବଗଣ ଆଗରେ ଚଳଇ
କାର୍ତ୍ତିକ ନନ୍ଦୀ ଭୃକୁଟି ଗହଣରେ ରହି ।
ଖେଚର ଭୂଚର ଆଦି ଭଇରବ ସଙ୍ଗେ
ଦିଗମ୍ବର ଲଙ୍ଗଟ ଯେ ବିଭୂତି ସର୍ବାଙ୍ଗେ ।
ହିମବନ୍ତର ନନ୍ଦିନୀ ବସିଛନ୍ତି କୋଳେ
ଧାତାଙ୍କାରେ ବିଜେ କଲେ ମୁହୂର୍ତ୍ତକେ କୁଶଳେ
କ୍ଷଣକେ ବ୍ରହ୍ମାପୁରେ ମିଳିଲେକ ଶିବ
ଦୂରରୁ ଶୁଭିଲା ଯହୁଁ ଡମରୁର ରବ ।
ଈଶ୍ୱର ବିଜେ କରିବା ଜାଣି ଦେବତାଏ
ପାଛୋଟି ଗଲେ ଏକାଦଶ ଯୁଣ ଯାଏ ।
ଦେବଗଣ ସଙ୍ଗେ ଘେନି ଦେବ କାଶୀବାସୀ
ଅନେକ ମତେ ପୂଜନ୍ତି ତହିଁ ସ୍ୱର୍ଗବାସୀ ।
ବିଧାତା ଦୃଷ୍ଟି ଗୋଚରେ ବୃଷରୁ ଓହ୍ଲାଇଲେ
ଧାତା ଦେଖି ସଦାଶିବ ନମସ୍କାର କଲେ ।
ଧାତା ଶିବ ଦୁହେଁ ହେଲେ କୋଳ ସମ୍ଭାଷଣ
ବେନି ଦେବ ବସିଲେ ଯେ ଏକଇ ଆସନ ।
ଈଶ୍ୱରଙ୍କ ସଙ୍ଗତରେ ଶିବଗଣ ଥିଲେ
ଧାତାଙ୍କୁ ସେମାନେ ଯାଇଁ ବେଢ଼ି ବସିଲେ
କହନ୍ତି ଯେ ସଦାଶିବ ଧାତା ମୁଖ ଚାହିଁ
ସକଳ ଦେବତା ମେଳ ହେଲେ କାହିଁପାଇଁ
ସମସ୍ତଙ୍କ ନୟନରୁ ବହେ ଅଶ୍ରୁ ଜଳ
ଏତେ ଆକୁଳ କିମ୍ପାଇଁ ଦଶଦିଗପାଳ ।
କେଉଁ କାରଣେ ଆମ୍ଭଙ୍କୁ ସୁମରିଲେ ଦେବେ
ଏକଥା ସଂକ୍ଷେପି କହ ଶୁଣିବା ତାହା ଆମ୍ଭେ ।
ଧାତା ବୋଇଲେ ହେ। ତୁମ୍ଭେ ଶୁଣ ସଦାଶିବ
ତ୍ରିଦଶର ଅଧିପତି ଅଟେ ଆମ୍ଭ ଜୀବ ।
ତୁମ୍ଭେ କି ସେହି କଥା ନ ଜାଣ ସଦାଶିବ
ଦେବ ଆକୁଳ ତୁମ୍ଭଙ୍କୁ ହେଲା ଅସମ୍ଭବ ।
ଭୋଜ ବଂଶରେ ଜନମି ଉଗ୍ରସେନ ସୁତ
କଂସାସୁର ନାମରେ ଯେ ଜଗତେ ବିଖ୍ୟାତ ।
ପ୍ରତିଜ୍ଞା ସମରଥା ସେ ଅଟେ ମହାମଲ୍ଲ
ଚଉଦ ଭୁବନକୁ ବଶ ହୋଇଅଛି ସଲ ।

ସମସ୍ତ ନୃପତିଗଣ ସଂଗ୍ରାମେ ଜିଣିଲା
ପୃଥିବୀକୁ ଦେବତାଙ୍କୁ ବାନ୍ଧି ଘେନି ଗଲା ।
ଅନେକ ଯେ ଉପଦ୍ରବ କରେ କଂସ ପାପୀ
ଦେବ ଦାନବ ମାନବ ସବୁ କଲା ଜୟୀ ।
ମହାବଳିଷ୍ଠ ଅଟନ୍ତି ଅଷ୍ଟମଲ୍ଲ ଶାଖା
ଅମର ବାରସ୍ଥାନରେ ପଶି କଲେ ଡକା ।
କୋଟି ଇନ୍ଦ୍ର ଏକ ହୋଇ ସଂଗ୍ରାମେ ନ ପଶି
ଏବେ ଏକେ ସେହି ସ୍ୱର୍ଗ ପାରନ୍ତି ବିନାଶି ।
ବଜ୍ରମୁଷ୍ଟି ନ ସହଇ ତାଙ୍କ ମହାଭୁଜ
ନବଦ୍ୱାର ବାଟେ ତାର ବହଇ ରୁଧିର ।
କଂସର ଭୟେ ଦେବତାମାନେ ହେଲେ ଭ୍ରଷ୍ଟ
ଛାଡ଼ିଲେ ସ୍ୱର୍ଗଭୁବନ ପାଇଲେ ଯେ କଷ୍ଟ ।
ଆମ୍ଭ ବ୍ରହ୍ମା ବିଷ୍ଣୁ ରୁଦ୍ର ଅଟୁ ଜାଣ ତିନି
ସୃଷ୍ଟିର ଉଆଣ ସବୁ କରୁ ଲଭହାନି ।
ଆମ୍ଭ ଆଶ୍ରିତେ ସମସ୍ତେ ଅଛନ୍ତି ଜଗତେ
ଅମରଗଣ ଯେ ରହି ଥାନ୍ତି ସ୍ୱର୍ଗ ପଥେ ।
ସ୍ୱର୍ଗପୁରେ ଦେବତାଏ ନିଶ୍ଚିନ୍ତରେ ଥାନ୍ତି
ମର୍ତ୍ତ୍ୟମଣ୍ଡଳେ ଦାନବେ ସୁଖେ ବିହରନ୍ତି ।
କେମନ୍ତେ ରକ୍ଷା ହୋଇବ ଏହି ନବସୃଷ୍ଟି
ବିଷ୍ଣୁଙ୍କୁ କହିବା ଚାଲ ସର୍ବେ ହେଲୁ କଷ୍ଟି ।
ଆମ୍ଭେମାନେ କଂସକୁ ଯେ ନ ପାରିବୁ ମାରି
ପ୍ରତ୍ୟକ୍ଷରେ କାଳନେମି ଅଛି ଅବତରି ।
ପୃଥ୍ୱୀ ନାଶ କରୁଛି ସେ କେତେହେଁ ସହିବା
ସମସ୍ତେ ଚାଲ ବିଷ୍ଣୁଙ୍କୁ ଯାଇଁ ଜଣାଇବା ।
ଅନେକ ଦୈତ୍ୟ ପୃଥ୍ୱୀରେ ହୋଇଥିଲେ ଜାତ
ପୃଥ୍ୱୀ ଭାର ନିବାରଣେ କରନ୍ତି ନିପାତ ।
ଏଥୁଁ ବଡ଼ ଦୈତ୍ୟଙ୍କର ଚମତ୍କାର ଭୟ
ସବୁକାଳେ ନାରାୟଣ କରନ୍ତି ତା କ୍ଷୟ ।
ଏବେ ଚାଲ ଯିବା ସର୍ବେ ବସୁଧା ଆବୋରି
ନାରାୟଣ ଅଗ୍ରତରେ କରିବା ଗୁହାରି ।
ଏହେ ବୋଲି ସୁରଗଣ ହୋଇଲେ ବାହାର
ଯେ ଯାହା ଯାନ ବାହନ ଚଢ଼ି ଧାଡ଼ିକାର ।
ଦଧିମାଛ ପୂର୍ଣ୍ଣକୁମ୍ଭ ଶୁଭ ଅନୁକୂଳେ ।
ଉଷାକାଳେ ଦେବବୃନ୍ଦ ସକଳେ ଚଳିଲେ ।
ଧାତା ବେଢ଼ଇଲେ ତୁମ୍ଭେ ଯେ ହୁଅ ଆଗୁସାର
ତେତିଶକୋଟି ଦେବଙ୍କ ଉପରେ ଠାକୁର ।

ଦେବର୍ଷି ବ୍ରହ୍ମର୍ଷି ଘେନି ବେଦବର
ହଂସ ଆରୋହି ହେଲେ ଆଗେ ଆଗୁସାର
ଜଗତ ପିତାମହ ଯେ ଈଶ୍ୱର ଅଛନ୍ତି ।
ନଉଦ କୋଟି ଗଣଙ୍କ ମଧ୍ୟରେ ଚଳନ୍ତି ।
ସଦାଶିବଙ୍କ ପଛରେ ଦେବ ଆଖଣ୍ଡଳ
ସନ୍ନିଧେ ତେତିଶ କୋଟି ଦେବ ଦିଗପାଳ
ଅଇରାବତ ଆରୋହି ଇନ୍ଦ୍ର ସମ୍ପ୍ରଯୋଗ
ଅଷ୍ଟବସୁ ଦିଗପାଳମାନ ସଙ୍ଗେ ଘେନି ।
ସୁରପତିର ପଛରେ ଗମନ୍ତି ବରୁଣ
ମକର ପୃଷ୍ଠ ଆରୋହି କରନ୍ତି ଗମନ
ସଂଯମନୀ ଦେବତା ଯେ ଯମ ନର୍କର୍ତ୍ତ
ମଇଁଷି ବାହନ ଚଢ଼ି ଯାଏ ଜନ୍ତୁନାଥ ।
କାଳ ବଳ ଛଳ ଆଦି ଯେ ତ୍ରଣୋଇଁ ଦୂତେ
ଏକମୁଖ ହୋଇ ହେଲେ ବାହାର ସମସ୍ତେ ।
ବଦନ୍ତି ଯେ ଶୁକମୁନି ଶୁଣ ତୁହେ ରାୟେ
ଏକଯୋଗେ ଚଳିଗଲେ ସବୁ ଦେବତାଏ ।
ଇଦଂ ମହାବାକ୍ୟ ଏ ଶ୍ରୀଧରଙ୍କର କଥା
ଦେବଗଣଙ୍କ ବାରତା କଂସର ବ୍ୟବସ୍ଥା
ପବିତ୍ର ଗଙ୍ଗାଜଳ ଏ ଅଟେ ପୁଣ୍ୟମୟେ
ଧୂଇଅଧା ଭାଗବତ ସମାପତ ହୋଏ ।
ଜୟ ସଦାଶିବ ତୁମ୍ଭେ କଇଳାସବାସୀ
ଅଖିଳ ବ୍ରହ୍ମାଣ୍ଡନାଥ ଠାକୁର ସନ୍ନ୍ୟାସୀ ।
ଦେବାଧି ଦେବରାଜ ଯେ ସୁରପୁର କର୍ତ୍ତା
ପରମ ମହେଶ୍ୱର ହେ ମହା ବ୍ରହ୍ମବେତ୍ତା ।
ଅଷ୍ଟାଙ୍ଗ ଯୋଗ ଧାରଣ ଯାର ହେଲମତି
ହାହ ଚିନ୍ତାମଣି ତୁମ୍ଭେ ଯୁଗାନ୍ତ ମୂରତି
ତୁମ୍ଭ କଲ୍ୟାଣରୁ ହେଲା ଏ ସଂସାର ଜାତ
ସନାତନ ପୁରୁଷ ତୁ ଜଗତର ତାତ ।
ଅଷ୍ଟାଙ୍ଗ ଯୋଗ ସାଧନେ ସିଦ୍ଧ ପାର ତନୁ
ଅପୂର୍ବ ଚକ୍ଷୁ ତୁମ୍ଭର ଚନ୍ଦ୍ରାନଳ ଭାନୁ ।
ପୃଥ୍ୱୀ ଆପ ତେଜ ଯେ ବାୟୁବ୍ୟ ଆକାଶ
ଏ ପଞ୍ଚ ଭୂତରେ ତୁମ୍ଭେ କରିଥାଅ ବାସ ।
ନମସ୍ତେ ହେ ସଦାଶିବ ଉମା ପ୍ରାଣବନ୍ଧୁ
ଜୟ ଜୟ ବିଶ୍ୱନାଥ କୃପାଜଳ ସିନ୍ଧୁ ।
ନମସ୍ତେ ସଦାଶିବ ହେ ଆଦିକନ୍ଦ ଯୋଗୀ
ନମସ୍ତେ ସଦାଶିବ ହେ ଅଟ ମହାତ୍ୟାଗୀ ।

ଜୀବ ଜନ୍ତୁଙ୍କ ବେଦନାମାନ ସବୁ ଜାଣ
ମହା ପ୍ରଳୟକୁ ନାଥ ତୁମ୍ଭେ ପରମାଣ ।
ବାଲୁକା ଲିଙ୍ଗ ଥାପିଣ ପୂଜନ୍ତି ଯେ ସବେ
ଦୁଦୁରା ଅରଖ ବେଲପତ୍ର ଶ୍ୱେତ ଦୂର୍ବେ ।
ପାଆନ୍ତି ସେ ଇନ୍ଦ୍ରପଦ ଅଚଳ ସମ୍ପଦ
ମହିମା ସାଗର ବେଦ ବେଦାନ୍ତ ତୋ ହୃଦ ।
କରତାଳ ମାରି ତୁମ୍ଭ ଡମ୍ବୁରେ ଯେ ନାଚ
ଦିଗପାଳଙ୍କ ସମ୍ପଦ ଦିଅ ତାଙ୍କୁ ଯାଚ ।
ତୁମ୍ଭ ମହିମା ଅନନ୍ତ ତାର ଅନ୍ତ ନାହିଁ
ପଞ୍ଚାଶ ବର୍ଣ୍ଣର ଭେଦ ପାରିବ କେ କହି ।
କଞ୍ଚିତ ଭକତ ନାଥ ସେବକ ମେ ହର
ମନ୍ଦ ଭକ୍ତି ଫେଡ଼ ମୋର ଦୋଷ କ୍ଷମାକର ।
ସେହି ବିଶ୍ୱନାଥଙ୍କର ଚରଣେ ମୋ ସେବା ।
ହରିବଂଶ ପଦ କଣ୍ଠେ ବସି କହିଦେବା ।
ଜନ୍ମରୁ ମୂରୁଖ ମୁଁ ନ ଜାଣେ ପାଠ ଶାଠ
ଅଜ୍ଞାନୀ ଅପାର ମୁଁ ନ ଜାଣେ ବ୍ୟାକାଟ ।
ପୂର୍ବ ତପବଳେ ଜାତହେଲି ଯାହା ଚରେ
ତେଣୁ ଭକ୍ତିଯୁକ୍ତ ତୁମ୍ଭ ଚରଣ ଅଗ୍ରତେ ।
ଆହେ ବିଶ୍ୱନାଥ ତୁମ୍ଭେ ଦୟା କରିବା
ଅଚ୍ୟୁତଦାସଙ୍କୁ ହରିବଂଶ କହିଦେବା ।

—+—

## ଦେବଗଣଙ୍କର ବୈକୁଣ୍ଠେ ପ୍ରବେଶ ଓ ସାରଦା ଶ୍ରୀବିଷ୍ଣୁ ସ୍ତୁତି

ଏଥୁଅନ୍ତେ ପରୀକ୍ଷିତ ନାମେ ମହାରାଜା
ଶୁକମୁନିଙ୍କ ଚରଣେ କଲେ ବହୁପୂଜା ।
ପଚାର ଆନନ୍ଦ ଏ ଗ୍ରନ୍ଥ ପୁଣ୍ୟମୟେ
ନାରାୟଣଙ୍କ ଛାମୁକୁ ଗଲେ ଦେବତାଏ ।
କେଉଁମତେ ଗଲେ ବ୍ରହ୍ମା ଦେବାଦି ଶଙ୍କର
କହ ମୋତେ ମହାମୁନି ଏହା ପଦସାର ।
ମୁନି ବୋଇଲେ ହେ ରାଜା ଶୁଣ ସାବଧାନେ
ଏକାମନ ହୋଇ ତହୁଁ ସର୍ବ ଦେବଗଣେ ।
ପାଦୁକା ମଣ୍ଡି ସୁମେରୁ ଶିଖର ଯାଇଁ
ଲବଣ ସମୁଦ୍ରରେ ପ୍ରବେଶିଲେ ଯାଇଁ ।
ଦକ୍ଷିଣ ମୁଖ ହୋଇଲେ ସବୁ ଦେବତାଏ
ଘୋଟିଛି ବାରିଧି ଜଳ ଅଧ ବ୍ରହ୍ମପାଏ ।

ଜମ୍ବୁଦ୍ୱୀପ ଗୋଟା ଅଟେ ଲକ୍ଷେକ ଯୋଜନ
ଲବଣ ସମୁଦ୍ର ତାକୁ ବେଢ଼ିଅଛି ଜାଣ ।
ତଦନ୍ତେ ଅଛଇ ପୁଣି ପ୍ଲକ୍ଷନାମେ ଦ୍ୱୀପ
ଦୁଇଲକ୍ଷ ଯୋଜନ ସେ ଦୀର୍ଘପ୍ରସ୍ଥ ମାପ ।
ଅପୂର୍ବ ମେଦିନୀ ସେହି ବାୟୁବ୍ୟର କୋଣେ
ଇକ୍ଷୁ ସମୁଦ୍ର ବେଢ଼ିଛି ତହିଁ ଘେରିପୁଣେ ।
ତହିଁର ନିକଟେ ଅଛି କୁଶଦ୍ୱୀପ ବୋଲି
ଚାରିଲକ୍ଷ ଯୋଜନ ସେ ଦୀର୍ଘପ୍ରସ୍ଥ ସ୍ଥଳୀ ।
ତଦନ୍ତେ ଦ୍ୱୀପେକ ଅଛି କ୍ରୌଞ୍ଚ ତାର ନାମ
ଆଉଦୀର୍ଘ ପ୍ରସ୍ଥରେ ସେ ଆଠଲକ୍ଷ ପୁଣ ।
ଘୃତ ନାମରେ ସମୁଦ୍ର ଆବୋରିଛି ତାହା
ସାବଧାନ ହୋଇ ତୁହେ ଶୁଣ ନରନାହା ।
ଷୋଳଲକ୍ଷ ଯୋଜନ ତା ଅଟେ ଦୀର୍ଘପଣ
ଅଠାଇଶ କାଠ ଅଟେ ତା ଗଭୀର ସ୍ଥିତ ।
ତଦନ୍ତେ ଅଛି ଶାକଳୀ ନାମେ ଏକଦ୍ୱୀପ
ଷୋଳଲକ୍ଷ ପୁଣ ଅଟେ ତହିଁର ଯେ ମାପ
ସପ୍ତନାମେ ସମୁଦ୍ର ଯେ ଅଛଇ ଆବୋରି
ନାରାୟଣଙ୍କ ଅନନ୍ତ ତହିଁ ବାସ କରି ।
ବତିଶଲକ୍ଷ ଯୋଜନ ସବୁ ପୁଣ୍ୟମୟେ
ତହିଁ ପ୍ରବେଶ ହୋଇଲେ ଯାଇ ଦେବତାଏ ।
କ୍ଷୀରସିନ୍ଧୁ ମଧ୍ୟେ ଅଛି ସୁଧାକର କୁଣ୍ଡ
ଅଶେଷ ବ୍ରହ୍ମାଣ୍ଡ ତହିଁ ହୋଇଅଛି ତୁଣ୍ଡ ।
ତେନିଲକ୍ଷ ଯୋଜନ ସେ କୁଣ୍ଡ ଆୟତନ
ଅଲେଖ ନିରାକାର ଯେ ବିଷ୍ଣୁଙ୍କ ଭୁବନ ।
ଜଳ ଭିତରେ ପୁରେକ ଅଛି ବାରସ୍ୱଣ୍ଡ
ଆଉତେର ଲକ୍ଷ ଯୋଜନ ଲକ୍ଷେ ପାଦ ପ୍ରସ୍ଥ ।
କହନ୍ତେ ନ ସରଇ ସେ ଭୁବନ ମହିମା
ନିର୍ମାଣ କରିଛି ଯାହା କୋଟି ଯୁଗେ ବ୍ରହ୍ମା ।
ପ୍ରଥମ ସିଂହ ଦୁଆର ଶୁଦ୍ଧ ହେମମୟେ
ପାଞ୍ଚଶ ଦଶଯୋଜନ ମାଡ଼ି ବେଢ଼ି ଥାଏ
ଷାଠିଏ ପାଦେର ଲକ୍ଷ ଯୋଜନ ସେ ଉଚ୍ଚ ।
ଦଶ ଯୋଜନ ଓସାର ଅଟଇ ସୁସଞ୍ଚ ।
ସୁବର୍ଣ୍ଣମୟ ସେ ପୁର ମୁକୁତ ର ବୃନ୍ତ
ବଜୁଳାର ପ୍ରାୟ ସେହି ଦିଶେ ଛନ ଛନ ।
ଏସନ ପୁର ପ୍ରବେଶ ହୋଇଲେ ସଦଶ
ପୁରକୁ ଦେଖି ସମସ୍ତେ ହୋଇଲେ ସନ୍ତୋଷ ।

ପ୍ରଥମ ଦ୍ୱାରେ ପ୍ରବେଶ ହେଲେ କୁଶଧାରୀ
ବହୁତ ପ୍ରଶଂସା କଲେ ପୁର ଦେଖି କରି ।
ଦୁଇ ସିଂହ ବସିଛନ୍ତି ଦୁଇ ପାର୍ଶ୍ୱରେ
ସୁଦର୍ଶନ ଚକ୍ର ଭ୍ରମେ ସିଂହ ଦୁଆରରେ ।
ଦେବଗଣମାନେ ତହୁଁ ଧୀରେ ଧୀରେ ଗଲେ
ବଇକୁଣ୍ଠପୁରେ ଯାଇଁ ପ୍ରବେଶ ହୋଇଲେ ।
ସୁଦର୍ଶନ ଚକ୍ର ସିଂହଦ୍ୱାର ଗଲେ ଲଂଘି
ପ୍ରବେଶ ହୋଇଲେ ଆରଦ୍ୱାରେ ଯାଇଁ ପୁଣି
ସେ ଦ୍ୱାର ଜୟ ବିଜୟ ଅଛନ୍ତି ଆଗୋଳି
ଦେବତାଙ୍କୁ ନିରୋଧିଲେ ନ ଦେଲେ ସେ ଛୁଡ଼
ବ୍ରହ୍ମା ଆଦି ଦେବଗଣ ରହି ସିଂହଦ୍ୱାରେ
ଦେବତାଙ୍କୁ ଦେଖି ଦ୍ୱାରୀ କହନ୍ତି କ୍ରୋଧରେ
କିମ୍ପା ଭିତରକୁ ତୁମ୍ଭେ ପଶ ହୋ ଝସି
ଆଜ୍ଞାହେଲେ ତୁମ୍ଭେ ଯିବ ଏଥେ ଥାଅ ରହି
ଆମ୍ଭେ ସ୍ୱାମୁରେ ଜଣାଇ ଆସୁ ଯାଇଁ ବେଗେ
ଜୟ ବିଜୟ କହିଲେ ଦେବତାଙ୍କୁ ଆଗେ ।
ଦେବତାଏ ଶୁଣିକରି ସନ୍ତୋଷ କଲେ
ଜଣାଇ ଆସୁ ବୋଲି ସେ ଶୀଘ୍ର ଚାଲିଗଲେ
ରହିଲେ ଯେ ଦେବଗଣ ଭୟ ମନେ ଘେନି
ଦୁନ୍ତ ଦେଖିଣ କମ୍ପନ୍ତି ସୁରସିଦ୍ଧ ମୁନି ।
ନାରାୟଣ ଆଗେ ଦ୍ୱାରୀ ଜଣାଇଲେ ଯାଇଁ
ଶିରରେ କର ଦେଇଣ ପାଦେ ପଡ଼ି ଶୋଇ
ସାବଧାନେ ଶୁଣିମା ହେ ତ୍ରୈଲୋକ୍ୟଗୋସାଇଁ
ତେତିଶ କୋଟି ଦେବତା ସିଂହଦ୍ୱାରେ ରହି
ଆଜ୍ଞା ହୋଇଲେ ତାହାଙ୍କୁ ଆସିବେ ସ୍ୱାମୁକୁ
କି ଆଜ୍ଞା ହେଉଛି ପ୍ରଭୁ କହିବା ଆମ୍ଭଙ୍କୁ ।
ବ୍ରହ୍ମା ଆଦି ଶଙ୍କର ଯେ ଦଶଦିଗପାଳ
ଚନ୍ଦ୍ର ସୂର୍ଯ୍ୟ ବୈଶ୍ୱାନର ଦେବ ଆଖଣ୍ଡଳ
ଯମ ନୈଋତ ମରୁତ ନିଧି ସିଦ୍ଧ ପ୍ରେତ
ଯୋଗ କରଣ ନକ୍ଷତ୍ର ତାରାଗଣ ଛନ୍ତି ।
ଏଥିକୁ ଯେ କିସ ଆଜ୍ଞା ହେଉଛି ଗୋସାଇଁ
ସନ୍ଦେଶ ପାଇଲେ ଆମ୍ଭେ କହିବୁ ତା ଯାଇ ।
ଦ୍ୱାରୀଙ୍କ ମୁଖରୁ ଦେବ ଏସନକ ଶୁଣି
କହନ୍ତି ଦରହସିତ ମୁଖେ ଚକ୍ରପାଣି ।
କଂସାସୁର ଭୟ ଯହୁଁ ଲାଗିଲା ସ୍ୱର୍ଗକୁ
ତେଣୁ ଦେବ ଯେ ଅଇଲେ ଆମ୍ଭର ସ୍ୱାମୁକୁ ।
ଆମ୍ଭେ ଯେ କରିବୁ ମହାଭାର ନିବାରଣ
କହନ୍ତି ଦରହସିତ ମୁଖେ ନାରାୟଣ ।
ଜୟ ବିଜୟ ବୁଝିବା ସିନା ତା କାରଣ
କହ ସ୍ୱାମୁକୁ ଆସନ୍ତୁ ଯେତେ ଦେବଗଣ ।
ନାରାୟଣ ଆଜ୍ଞା ପାଇ ଦ୍ୱାରୀ ତହୁଁ ଗଲେ
ଦେବଗଣଙ୍କ ଆଗରେ ଯାଇଁ ଜଣାଇଲେ ।
ସାବଧାନ ହୋଇ ତୁମ୍ଭେ ଶୁଣ ଦେବଗଣ
ସ୍ୱାମୁକୁ ଯାଅ ଯା ଆଜ୍ଞା ଦେଲେ ନାରାୟଣ ।
ତାହା ଶୁଣି ଦେବଗଣ ହୋଇଲେ ହରଷ
ଗଗନ ମାରକୁ ଯେସନ୍ତେ ଚାତକର ଆଶ ।
ଚନ୍ଦ୍ରକୁ ଦେଖି କୁମୁଦ ଯେସନ୍ତେ ବିକାଶଇ
ଦିନନାଥ ଦେଖି ଯେସନ୍ତେ କମଳ ଫୁଟଇ ।
ଅନ୍ଧ ଚକ୍ଷୁଦାନ ଧନ ଦରିଦ୍ରକ ପାଇ
ଶାଳି ଅନ୍ନ କ୍ଷୁଧାତୁର ଜନ କି ଭୁଞ୍ଜଇ ।
ବ୍ରହ୍ମାଙ୍କ ମୁଖ ଫୁଟିଲା କମଳ କି ଜାଣି
ହରଷେ ନୃତ୍ୟ କରନ୍ତି ଦେବ ଶୂଳପାଣି ।
ବୃହତ ସାମ ଗାୟନ କଲେ ବେଦପତି
କିନ୍ନରୀ ବିଦ୍ୟାଧରୀଏ ହୁଳହୁଳୀ ଦିଅନ୍ତି ।
ଋଷିଗଣମାନେ ଜୟ ଜୟ ଧ୍ୱନି କରି
ସର୍ବ ଦେବତା ବୋଲନ୍ତି ମୁଖେ ହରି ହରି ।
ଦେବତାଗଣ ସେଠାରୁ ପଶିଲେ ଭିତରେ
ଯାଇଣ ମିଳିଲେ ସେହି ଚନ୍ଦ୍ରଶାଳା ପୁରେ ।
ଖଣ୍ଡେ ଦୂରୁ ଦେଖିଣ ସେ ନାରାୟଣ ରୂପ
ନମସ୍କରିଲୁ ନମସ୍କରିଲୁ ବୋଲି କଲେ ଜପ ।
ନିକଟକୁ ବୋଲି ତହୁଁ ଗଲେକ ଚଳାଇ
ଦେଖିଲେ ଅନନ୍ତଶଯ୍ୟା ପରେ ଭବଗ୍ରାସୀ ।
ଶ୍ରୀବତ୍ସ ଉର ଭୁବନକୁ କି ଦେବା ଉପମା
ନିର୍ମାଣ କରି ଅଛନ୍ତି କୋଟି ବିଶ୍ୱକର୍ମା ।
ମାଣିକ୍ୟର ସ୍ତମ୍ଭ ତହିଁ ମରକତ ଶ୍ରେଣୀ
ମଗଗର ରୁଅ ସୁନା ସୂତାରେ ବାନ୍ଧେଣୀ ।
ହୀରା ବନ୍ଧାରେ ଝଞ୍ଜଣୀ ମୁକୁତ ପ୍ରବାଳ
ସୁବର୍ଣ୍ଣର କାନ୍ଥ ତହିଁ କୁରୁବିନ୍ଦ ଖୁବ ।
ମାଣିକ୍ୟ ମୁକୁତାମାଳ ଲମ୍ବେ ପନ୍ତି ପନ୍ତି
ଦର୍ପଣ ଗୁମର ଚଉଡତେ ବସନ୍ତି ।
ପୀଢ଼ା ଉପରେ ବସିଛି ସୁବର୍ଣ୍ଣ କଳଶ
ନେତର ପତାକାମାନ ଉଡ଼େ ଚଉପାଶ ।

ଇନ୍ଦ୍ର ଗୋବନ୍ଦ ଚନ୍ଦ୍ରୂଆ ରତନ ପିଢ଼ୁଳ
ସୁବର୍ଣ୍ଣ କୁମ୍ଭେ ମୁକୁତା ମାଳମାନ ଝୁଳ ।
କସ୍ତୁରି ଗେରୁରେ ଚିତ୍ର ବଚିତ୍ର ଲିଖନ
ଅଗୁରୁ ଧୂପ ଧୂଆଁ ଯେ ମୋହୁଅଛି ମନ ।
କର୍ପୂର କସ୍ତୁରୀ ଗନ୍ଧ ଆମୋଦ ଚହ୍ଁରେ
ମଳୟ ପବନ ପୁଣି ବହେ ଧୀରେ ଧୀରେ ।
ଅବସନ୍ତରେ ବସନ୍ତ କୋକିଳର ରାବ
ନାନା ପୁଷ୍ପମାନେ ହୋଇ ଅଛନ୍ତି ପଲ୍ଲବ ।
ବଷ୍ଣୁର ଭୁବନ ଗୋଟି ଦ୍ଵାଦଶ ଭବ୍ୟଶୋଭା
ଭାସ୍କର ମାସେ ଯେସନେ ତପନର ପ୍ରଭା ।
ଆପେ ଦେବ ବ୍ରହ୍ମା ଯତ୍ନେ ନର୍ମାଣ କରିଛି
ସର୍ବ ସୁଲକ୍ଷଣ ନାହିଁ ଅବଗୁଣ କିଛି ।
ହୀରା ମାଳା ମାଳମଣି ମାଣିକ୍ୟ ଶୋଭନ
ପଟାନ୍ତର ଦେବାକୁ ଯେ ନାହିଁ ତ୍ରିଭୁବନ ।
ଅପୂର୍ବ ମନ୍ଦିର ଆୟତନ ବେନି କୋଶ
ହୀରା ପ୍ରାଙ୍ଗଣେ ସୁବର୍ଣ୍ଣ ପୁର ଚଉପାଶ ।
ନାନା ସ୍ତମ୍ଭରେ ଜଡ଼ିତ ହୀରା ଶତ ଅଂଶ
ଚଳେହେଁ ବନ୍ଦ ନୋହି ଯେ ଘଟଣ ପ୍ରଶଂସା
ନବରତନ ଜଡ଼ିତ ରୁଅଶେଣୀ କାଣ୍ଡ
ଗଜଦନ୍ତ ସ୍ତମ୍ଭେ ଶୋଭେ ପିଢୁଳୀ ଏରଣ୍ଡ ।
ଉପର ପ୍ରାଙ୍ଗଣୀ ଧଳା ଦଶେ ପନ୍ତି ପନ୍ତି
ମଣ୍ଡିଛି ଯେ ଝୁରୁମୋତି ହୀରା ଗଜ ମୋତି ।
ସୁବର୍ଣ୍ଣ କଳଶେ ନେତ ପତାକା ଯେ ଉଡ଼େ
ଆକାଶୁ ଯେସନେ ବଜୁଳୀ ଖସି ଆସେ ପଡ଼େ
ଉପରେ ଉଭା ଷୋଣାକ ଆକାଶ ମଣ୍ଡଣି
ଚନ୍ଦ୍ର ମଣ୍ଡଳ ବେଢ଼ିଛି ନକ୍ଷତ୍ର କି ଜାଣି ।
ନେତର ପାଟ ସିନ୍ଦୂଆ ଧବଳ ମଣ୍ଡିଛି
ନାନା ବର୍ଣ୍ଣର ବସନ୍ତ ପାଟ ଯେ ଖଞ୍ଜିଛି ।
ଚହିଁ ସୂତୀ କର୍ମ ଇନ୍ଦ୍ର ଗୋବନ୍ଦ ଚନ୍ଦ୍ରୂଆ
କେତକୀ ମୟୂରକଣ୍ଠୀ ବଶଇ ସେ ନୂଆ ।
ନାନାବର୍ଣ୍ଣର ବକ୍ଷସ୍ମ ମାନ ଝଟକନ୍ତି
ଦର୍ପଣା ଚାମର ଚହିଁ ଲମ୍ବେ ପନ୍ତି ପନ୍ତି ।
ବକୁଳ ସେବତୀ କୁନ୍ଦ ଜାଇ ଜୁଇ ମଲ୍ଲୀ
କେତକୀ ନାଗକେଶ୍ବର ଚମ୍ପା କୁରୁବଲ୍ଲୀ ।
ଅଶୋକ ପାରିଜାତକ କଞ୍ଚନ ଦମ୍ଵଣା
ମାଳ ଉତ୍ପଳ କୁମୁଦ ପଦ୍ମଗନ୍ଧ କଣା ।

ନାନାବର୍ଣ୍ଣର କୁସୁମ ଅପୂର୍ବ ସୁବାସ
ପଦ୍ମର ମଣ୍ଡଣୀ ମାଳ ଲମ୍ବେ ଚଉପାଶ ।
କର୍ପୂର କସ୍ତୁରୀ ଧୂଆଁ ଘୃତ ଧୂପ କାଠି
ସୁନ୍ଦର ସୁପରିମଳେ ଆମୋଦେ ଚହଟି ।
ଧନ୍ୟ ବିଶ୍ବକର୍ମା ସେହି ଭୁବନ ସର୍ଜିଲା
ସ୍ତୁତିମନ୍ତ ହୋଇ ସିନା ତାକୁ ନର୍ମିଲା ।
ଅଖଣ୍ଡିତ ପିଢୁଳା ଯେ ନାନାଯତ୍ନେ କମ
ଝୁଲକେ ସ୍ଵର୍ଣ୍ଣପଦ୍ମ କମ ଶୁଦ୍ଧ ହେମ ।
ବଚିତ୍ର ହିଙ୍ଗୁଳ କମ ଲେଖା କାନ୍ଥ କାଢେ
କମ କାଣ୍ଡ ମୁଣ୍ଡ କଳ୍ପ ଶୋଭା ସୁରିଆଢ଼େ ।
କର୍ପୂର କସ୍ତୁରୀ ଗନ୍ଧ ଚନ୍ଦନର ପାଣି
ସିଞ୍ଚା ହୋଇଛି ଚୌଦିଗେ ଜଳବୃଷ୍ଟି ଜାଣି ।
ଅନନ୍ତ ନାଗ ଉପରେ ହଂସତୂଳିର ତୂଳୀ
ଶୟନ ପଲଙ୍କେ ରାଜେ କର୍ପୂରର ଧୂଳୀ ।
ଚହିଁ ଶୟନ ଦେବାଧିଦେବଙ୍କର ରାଜା
ଶିରେ ସରସ୍ୱତୀ ପାଦେ ବରୁଣ ଆତ୍ମଜା ।
ଅନନ୍ତ ନାଗ ଉପରେ ଉତ୍ତାନେ ସେ ଶୋଇ
ଯୋଗନଦ୍ରା ଯାଇଛନ୍ତି ତ୍ରୈଲୋକ୍ୟ ଗୋସାଇଁ
ସୀମନ୍ତେ ସରସ୍ୱତୀ ବୀଣା ଯନ୍ତ୍ର ଧରି
ଗାନ୍ଧାର ସ୍ୱରେଣ ଗୀତ ଗାୟନ ସେ କରି ।
ଚରଣ ସେବନ୍ତି ଲକ୍ଷ୍ମୀ ବସି ପାଦତଳେ
ସେଠାରେ ମିଳିଲେ ଯାଇଁ ଦେବ ଦିଗପାଳେ
ଶଙ୍ଖ ଚକ୍ର ଗଦା ପଦ୍ମ ଶୋଭେ ଚତୁର୍ଭୁଜେ
ବିରାଜନ୍ତି ମାଲୋପ୍ତଳ ରୂପେ ଦେବରାଜେ ।
ନବରତ୍ନର କୁଣ୍ଡଳ କର୍ଣ୍ଣେ ଦିବ୍ୟରୂପ
ବିରାଜେ ମଣି ମାଣିକ୍ୟ ହୀରା ଶାଖା ସର୍ପ ।
ସହସ୍ର ଫଣା ଉପରେ ଛତ୍ର ପ୍ରାୟ ହୋଇ
ଅଷ୍ଟାଙ୍ଗ ଯୋଗେ ଅଛନ୍ତି ଯୋଗ ନଦ୍ରା ଯାଇ
ଏମନ୍ତ ସମୟେ ଦେବଗଣେ ଯେ ମିଳିଲେ
କରଯୋଡ଼ି ବାରବାର ପୂଜା ସ୍ତୁତି କଲେ
ଜୟ ତୁ ସାରଦା ମାଗୋ ବଷ୍ଣୁର ବଲ୍ଲଭୀ
ମହାଯଜ୍ଞ ଭିତରୁ ତୁ ଅବତାର ଦେବୀ ।
ଅଯୋନି ସମ୍ଭୂତ ଜନ୍ମେଜନ୍ମ ତୋରକାୟେ
ତୋର ଆଦିଅନ୍ତ କେହି ନ ଜାଣନ୍ତି ମାୟେ
ଅନାଦି ଅପର୍ଣ୍ଣା ମାଗୋ ଧବଳ ତୋ ଅଙ୍ଗ
ସ୍ଫଟିକବରନ ପ୍ରାୟେ ବିରାଜେ ସର୍ବାଙ୍ଗ ।

କର୍ଣ୍ଣେ ବେନକାପ ସୂର୍ଯ୍ୟ କିରଣର ରେଖା
କପାଳେ ଶୋଭେ ମୁକୁଟମଣି ସପ୍ତଶାଖା ।
ଗଳାରେ ମୁକୁତ ମାଳ ଚଉସର ଶୋଭେ
ପରମ ବୈଷ୍ଣବୀ ମାଗୋ ଶ୍ରୀବିଷ୍ଣୁର ପ୍ରିୟେ ।
ସ୍ତନର ଚକ୍ଷୁରେ ମାଗୋ କବଷର ହାର
ଚଥିଉପରେ ମୁକୁତାଜାଲି ରତ୍ନହାର ।
ସୁସ୍ୱର ମଧୁର ମାଗୋ କରେ ବ୍ରହ୍ମ ବୀଣା
ଝଣି ଝଣି କୋଳାହଳ ବାଜେ କିଙ୍କିଣୀ ।
ଗାନ୍ଧାର ହୁଂକାରେ ମାଗୋ ସପ୍ତସ୍ୱର ଗାଇ
ଜାନୁରେ ବିଷ୍ଣୁ ଭୁଜର ସୀମସ୍ଥାନ ଦେଇ ।
ସୁରଙ୍ଗ ବିମ୍ବ ଅଧରେ ପ୍ରକାଶେ ଦଶନ
ଡାଳିମ୍ବର ବୀଜପନ୍ତି ପ୍ରାୟେ ସେ ଶୋଭନ ।
ଅଳଅଳା ବେଣୀ ତୋର ସୁରଙ୍ଗ ସାରଙ୍ଗ
ସର୍ବବିଦ୍ୟାରେ କୁଶଳ ଅଟଇ ସର୍ବାଙ୍ଗ ।
କର୍ଣ୍ଣେ ବେନ ରତ୍ନକାପ କନକ ମଣ୍ଡଣୀ
ଯୁଗଳ ଦିଶନ୍ତି ମାଗୋ ଯେହ୍ନେ ଦିନମଣି
କାଶୀ ଦେଶବାସୀ ଦକ୍ଷପାଳ ନରପତି ।
ତିନି ଜନଜନ୍ତୁ ଯେତେ ତୋହର ଭକତି ।
ସକଳ କର୍ମମାନ ଗୋ ତୋର ତହୁଁ ଜାତ
ତେଣୁ ବାକ୍ୟଦେବୀ ମାଗୋ ଜଗତେ ବିଖ୍ୟାତ
ଯେବଣ ପ୍ରାଣୀମାନଙ୍କୁ ଆଜ୍ଞାଦେଉ ଯାହା
ଯଥା ଶକତିରେ ନରେ କରୁଥାନ୍ତି ତାହା
ଏସନକ ସ୍ତୁତି ଯହୁଁ ବିବୁଧେ କଲେ
ଶୁଣି ମହାମାୟା ଦେବୀ ପ୍ରସନ୍ନ ହୋଇଲେ
ବାକ୍ୟଦେବୀ ବୋଇଲେ ହୋ ଶୁଣଦେବଗଣେ
ମତେ ସ୍ତୁତିକଲ ତୁମ୍ଭେ କେବଣ କାରଣେ
ବିଧାତା ବୋଇଲେ ମାଗୋ ଶୁଣ ମୋରବାଣୀ
କଂସ ପାଦଘାତ ମାଗୋ ନ ସହେ ଧରଣୀ ।
ପତି ଯେ ତୁମ୍ଭର ମାଗୋ ଯୋଗ ନିଦ୍ରା ଗଲେ
କଂସ ଭରରେ ପଡ଼ିବ ପୃଥ୍ୱୀ ରସାତଳେ ।
ଯେବେ ଆମ୍ଭଙ୍କୁ ପ୍ରସନ୍ନ ହେବୁ ମହାମାୟେ
ତେବେ ସ୍ୱର୍ଗରେ ରହିବୁ ଆମ୍ଭେ ଦେବତାଏ
ଅନେକ ବିନୟ ମାଗୋ ତୋର ପାଦତଳେ
ହରିବଂଶଗ୍ରନ୍ଥ ଭୁଞ୍ଜ କହିଦେବୁ ମୋତେ ।
ସେ ସାରଦା ପାଦପଦ୍ମେ ଲାଗୁମୋର ସେବା
ଅଚ୍ୟୁତ ଦାସ କହଇ ଗତିମୁକ୍ତି ଦେବା ।

ଏସନକ ସ୍ତୁତି ଯହୁଁ କଲେ ଦେବ ବୃନ୍ଦ
ଶୁଣିଣ ସାରଦାଦେବୀ ପରମ ଆନନ୍ଦ ।
ସୀମ ସ୍ଥାନେ ବସି ବୀଣାଯନ୍ତ୍ର ବାଉଥିଲେ
ଗନ୍ଧାର ରାଗ ଝଙ୍କାରି ବିଷ୍ଣୁଙ୍କୁ ମୋହିଲେ ।
ନୟନ ମେଲି ତାହାଙ୍କୁ ଚାହିଁ ଦେବରାୟେ
ଉଭା ସମ୍ମୁଖରେ ତେତିଶକୋଟି ଦେବତାଏ ।
ଅଳପ ହସି ଚାହିଁଲେ ତାଙ୍କୁ ନାରାୟଣ
ଶ୍ରୀଚରଣ ତଳେ ପଡ଼ିଗଲେ ଦେବଗଣ ।
ଉଠି ଉଭା ହୋଇ ପୁଣି ଶିରେ କରଦେଇ
ପୁଣ ପୁଣ ପାଦତଳେ ପଡ଼ନ୍ତେ ବିନୟୀ ।
ବୋଇଲେ କୋଟି ଜନ୍ମର ଖଣ୍ଡିଲୁ କଳ୍ମଷ
ଜୟ ଜଗନ୍ନାଥ ସ୍ତୁତି କରନ୍ତି ତ୍ରିଦଶ ।
ହେ ମହିମା ପ୍ରଭୁ ଜୟ ଜୟ ଜଗନ୍ନାଥ
ଅସୁର ମାରି ଆମ୍ଭଙ୍କୁ କରନ୍ତୁ କୃତାର୍ଥ ।
ଦେବଇନ୍ଦ୍ର ସହିତେ ଯେ କରପଦ ଯୋଡ଼ି
ପୁଣ ପୁଣ ପାଦତଳେ ପଡି ସ୍ତୁତି ପଢ଼ି ।
ସ୍ତୁତି ବଖାଣନ୍ତି ପାଦେ ପଡ଼ି କରଯୋଡ଼ି
ତୁମ୍ଭେ ନ ରଖିଲେ ଦେବେ ଗଲୁ ଏବେ ସଡ଼ି
ସ୍ତୁତିମାନ ପଢ଼ି ଆସି ବ୍ରହ୍ମର୍ଷି ମିଳି
ହୃଦପଦ୍ମେ ଘୋଷନ୍ତି ହେ ରଖ ବନମାଳି ।
କରଯୋଡ଼ିଣ କରନ୍ତି ଅନେକ ଯେ ସ୍ତୁତି
ଜୟ ଜୟ ନାରାୟଣ ପରଂବ୍ରହ୍ମ ମୂର୍ତ୍ତି
ଜୟ ଜୟ ନାରାୟଣ ସଂସାର ରଖନ୍ତା
ଜୟ ଜୟ ନାରାୟଣ ଅହିଂସା ଅଚିନ୍ତା
ଜୟ ଜୟ ନାରାୟଣ ଦୈତ୍ୟ ନିସୂଦନ
ଜୟ ଜୟ ନାରାୟଣ ଭକତଙ୍କ ଧନ ।
ଜୟ ଜୟ ନାରାୟଣ ଚତୁର୍ବର୍ଗ ଦାତା
ଜୟ ଜୟ ନାରାୟଣ ଶଙ୍ଖ ଚକ୍ରପାଣି ।
ଜୟ ଜୟ ନାରାୟଣ ଧ୍ୟାନ ଚିନ୍ତାମଣି
ଜୟ ଜୟ ନାରାୟଣ ଜଗତର ଜନ୍ମା
ଜୟ ଜୟ ନାରାୟଣ ଭକ୍ତ ଉଦ୍ଧାରଣ
ଜୟ ଜୟ ନାରାୟଣ ସଂସାର କାରଣ ।
ଜୟ ଜୟ ନାରାୟଣ ଜନ୍ତୁଙ୍କ ନିବାସ
ଜୟ ନାରାୟଣ ନାମ ଆମ୍ଭର ଅଭ୍ୟାସ ।
ଜୟ ଜୟ ନାରାୟଣ ବ୍ରହ୍ମାଣ୍ଡ କରତା
ଜୟ ଜୟ ନାରାୟଣ ଚତୁର୍ବର୍ଗ ଦାତା ।

ଜୟ ଜୟ ନାରାୟଣ କୃପାଜଳ ସିନ୍ଧୁ
ଜୟ ଜୟ ନାରାୟଣ ଦରିଦ୍ରର ବନ୍ଧୁ ।
ଜୟ ଜୟ ନାରାୟଣ ସର୍ବ ଭୂତେଶ୍ୱର
ଜୟ ନାରାୟଣ ନାହିଁ ଶତ୍ରୁ ମିତ୍ର ତୋର ।
ଜଳେ ଅନଳେ ସ୍ଥଳରେ ତୁମ୍ଭେ ବସୁନ୍ଧରା
ସ୍ଥାବର କୀଟ ପତଙ୍ଗ ଜନମ ଏ ସ୍ୱର ।
ବେଦ ବୌଦ୍ଧରୂପେ ତୁମ୍ଭେ ବେଦଗଣ ଶାଖା
ତୁମ୍ଭର ମହିମା ଦେବ ତୁମ୍ଭେ ଜାଣ ଏକା ।
ପୃଥ୍ୱୀ ଭାରାକ୍ରାନ୍ତ ନାଥ ଉଦ୍ଧାରିବା ପାଇଁ
କପଟେ ଜାତ ମାନବ ଆଦି ଦେହ ବହି ।
ଶ୍ରୁତି ଧୃତପଣ ନାଥ ଅଟଇ ଯାହାର
ଅନାଦି ନିରଞ୍ଜନ ତୁ ଦେବ ଅଜାମର ।
ତୁମ୍ଭ କଳ୍ପଣାରୁ ଚରାଚର ଉତ୍ପତ୍ତି
ତୁମ୍ଭେ ଜନ୍ମହେଲେ ଦୁଷ୍ଟ ଦୈତ୍ୟ ନାଶଯାନ୍ତି
ନମସ୍ତେ ହେ ଲକ୍ଷ୍ମୀପତି କୃପାଜଳ ନିଧି
ନମସ୍ତେ ହେ ବାଞ୍ଛାକଳ୍ପତରୁ ଗୁଣନିଧି ।
ଶଙ୍ଖ ଚକ୍ର ଗଦା ପଦ୍ମ ଶୋଭେ ଚତୁର୍ଭୁଜ
ଯାନଜନ ବାନ୍ଧବ ହେ ଅଶେଷ ତୋ ତେଜ ।
ନାରାୟଣ ଚରଣେ ମୋ ଅହର୍ନିଶି ସେବା
ଅଚ୍ୟୁତଦାସକୁ ହରିବଂଶ କହିଦେବା ।
ଏସନେକ ସ୍ତୁତି ସନ୍ତୁଷ୍ଟ କଲେ ଦେବଗଣ
ଲୋଚନ ଟେକି ଚାହିଁଲେ ଦେବ ନାରାୟଣ ।
ଦେଖି ପୁଣି ଦେବଗଣ ଦେଲେ ଶିରେ କର
ଦେବଙ୍କ ସଙ୍ଗେ ଅଛନ୍ତି ବେଦବର ହର ।
କହନ୍ତି ଯେ ବେନି କର ଯୋଡ଼ି ବେଦପତି
ଶ୍ରୀମୁଖକୁ ଚାହିଁ ପୁଣି ଉତ୍ତର ଦିଅନ୍ତି ।
ନିଶ୍ଚିନ୍ତ ହୋଇ ପ୍ରଭୁ ହେ ଯୋଗନିଦ୍ରାଗଲ
ଚରାଚର ନାଶଗଲା ତାହା ନ ବୁଝିଲ ।
ପୃଥ୍ୱୀ ଏବେ ନାଶଗଲା ରକ୍ଷାକର ତୋର
ଦେବଗଣ ଗୁହାରିଲେ ଡରେ ସ୍ୱର୍ଗପୁର ।



## ବିଷ୍ଣୁଙ୍କର ଦେବଗଣଙ୍କୁ କୃଷ୍ଣ ଶୁକ୍ଳ ରୋମ ପ୍ରଦାନ ଓ ଦୁର୍ଗାଙ୍କର ବରଦାନ

ଏଥୁ ଅନ୍ତରେ ଶୁଣ ପରୀକ୍ଷ ନୃମଣି
ସନ୍ତୋଷ ହୋଇଲେ ପ୍ରଭୁ ବ୍ରହ୍ମାବାକ୍ୟ ଶୁଣି ।
କୃତକୃତ୍ୟ ହୋଇ ପୁଣି ପରୀକ୍ଷ ପୁଚ୍ଛିଲେ
କରପଦ୍ମ ଯୋଡ଼ି ଋଷି ପାଦରେ ପଡ଼ିଲେ ।
କହ ମୁନି ତୁ ଯୋଗେଶ୍ୱର ପୁରୁଷ ପ୍ରତ୍ୟକ୍ଷ
ଅଜାତ ଶତ୍ରୁ ସଂସାରେ ହୋଇଅଛୁ ଦକ୍ଷ ।
ତେତିଶ କୋଟି ଦେବତା କଲେ ଯେ ଗୁହାରି
କିସ କିସ ଆଜ୍ଞା ତାଙ୍କୁ ଦେଲେ ଦେବହରି ।
ଶୁଣୁଛନ୍ତି ପରୀକ୍ଷିତ କହୁଛନ୍ତି ମୁନି
ଏକମନା ହୋଇ ତୁହେ ଶୁଣ ନୃପମଣି ।
ଆସ୍ଥାନ ତଳେ ତେତିଶକୋଟି ଦେବେ ରହି
ହାତଠାରି ଆଜ୍ଞା ତାଙ୍କୁ ଦେଲେ ସ୍ୱର୍ଗସ୍ୱାମୀ ।
ବସ ହେ ଦେବେବୋଲି ଶ୍ରୀମୁଖେ ଆଜ୍ଞାଦେଲେ
ଆଜ୍ଞାପାଇ ଦେବତାଏ ଆସ୍ଥାନେ ବସିଲେ ।
ଧାତାଙ୍କୁ ସେ ମଧ୍ୟପାର୍ଶ୍ୱ କରି ବେଢ଼ି ବସି
ବିଦ୍ୟାଧରୀ ଅପସରୀ ଗନ୍ଧର୍ବ ବିଳାସୀ ।
ଆସ୍ଥାନତ ତଳେ ସର୍ବେ ବସିଲେକ ଯାଇଁ
ସମାସ୍ୟା ନ କରି ରହି ନିସ୍ତବ୍ଧ ହୋଇ ।
ନଇଋତ ମରୁତ ଯେ ଯମ ବୈଶ୍ୱାନର
ଶଚୀପତି ନିଶାକର ଆଦିତ୍ୟ କୁବେର ।
ଶୁକ୍ର ବୃହସ୍ପତି ଶନି ମଙ୍ଗଳ ଯେ ବୁଧ
ଅଷ୍ଟବସୁ ବିଶ୍ୱଦେବା ପୁରୁଷ ଯେ ସିଦ୍ଧ ।
ସୁରଭି କପିଳା ଆଦି ଗାୟତ୍ରୀ ଗୋମାତା
ଅଷ୍ଟ ଅପସରୀ ମୁଖେ ସକଳ ଦେବତା ।
ଦେବଋଷି ବ୍ରହ୍ମଋଷି ନରଋଷି ମୁଖେ
ସନାତନ ସନକାଦି ବସି ଏକମେକେ ।
ଅଷ୍ଟଚଣ୍ଡୀମୁଖେ ଭୂତଗଣ ଭଇରବୀ
ଯେତେକ ସ୍ୱର୍ଗ ଭୁବନେ ଥିଲେ ଦେବଦେବୀ
ନନ୍ଦୀ ଭୃକୁଟୀ ବିକାଳ କାଳ ମହାକାଳ
ଦେବତା ମୁଖେ ସକଳ ପାଳ କ୍ଷେତ୍ରପାଳ ।
ବ୍ରହ୍ମଗଣ ରୁଦ୍ରଗଣ ଇନ୍ଦ୍ରଗଣ ଯେତେ
ଗୋଟି ଗୋଟି ନାମଧରି କହିବି ତା କେତେ ।
ଅନନ୍ତ ମହାନାଗ ଯେ କର୍କୋଟକ ଶଙ୍ଖ
ମହାପଦ୍ମ ଆଦି ମୁଖେ କୁଳିକ ତକ୍ଷକ ।
ପାଣ୍ଡୁପାର୍ଶ୍ୱ ହିମବନ୍ତ ପର୍ବତଙ୍କ ପତି
ଅଷ୍ଟମନୁ ସହିତରେ ସପ୍ତ ମହାଯତି
କାର୍ତ୍ତିକ ମହେନ୍ଦ୍ର ଗଣପତି ନଳ ନୀଳ
ତାରା ଯୋଗ କରଣହିଁ ନକ୍ଷତ୍ର ସକଳ ।

ଆବର୍ତ୍ତିକ ସମ୍ବର୍ତ୍ତିକ ଦ୍ରୋଣ ଯେ ପୁଷ୍କର
ପନ୍ଦର ତିଥି ଆବର ସପତ ଯେ ବାର ।
ବିତନ୍ତା ନିତନ୍ତା ମେରୁ ମନ୍ଦର ସଙ୍କେତ
ପର୍ବତଙ୍କ ନାମ ଧରି କହିବଇଁ କେତେ ।
ଯେଣୁ ସୁପ୍ରସନ୍ନ ମୋତେ ବିଘ୍ନେଶ୍ୱର ଗଣେ
ତେଣୁ ଠିକ ଠିକ କରି କହିଲି ଥୋକାଏ ।
ତାଙ୍କ କୃପାରୁ ଭରସା ଆଶା ହେଲା ମୋର
ଅସଂଖ୍ୟ ଅକଳନ ଏ ଅପାର ସାଗର ।
ସୁଖବେ ବିଷ୍ଣୁ ଭବନ ବିଶେ ପଦ୍ମମଳ
ଦୀର୍ଘ ପ୍ରସ୍ତରେ ବିସ୍ତାର ଲକ୍ଷେଯୁଣ ଠୂଳ ।
ମଣି ମାଣିକ୍ୟ କସ୍ତୁରୀ ହୀରାରେ ଖ ଲମ୍ବେ
ରସାଣିଲ ବଇଦୂର୍ଯ୍ୟ ପାବଛ ଆରମ୍ଭେ ।
କୋଟିଏ ବିନ୍ଧାଣୀ ଯେଣ ସ୍ୱୟଂ ବିଶ୍ୱକର୍ମା
ଅତି ଯତନେ ନିର୍ମାଣି ଅଛି ପୁରସୀମା ।
ରସାଣିଲ ସୁବର୍ଣ୍ଣ ସେ ଘରରୁଅ ଶେଣୀ
ନବରତ୍ନ ଧାଡ଼ି ଧାଡ଼ି ଝଟଝଟ ଖଞ୍ଜଣି ।
ଝିନ ପଟମା ନେତର ସିନ୍ଦୂରିଆ ଗହଳ
ଝୋଣା ଲମ୍ବାଇ ଅଛନ୍ତି ଚହ୍ନି ମାଳ ମାଳ ।
ଇନ୍ଦ୍ର ଗୋବନ୍ଦ ବୃନ୍ଦୁଆ ସୂଚୀ କମ ଟେବ
ବେଢ଼ାଇ ଅଛନ୍ତି ଖଞ୍ଜା ମୁକୁଳ ତଉସବ ।
ନାଗେଶ୍ୱର ଚମ୍ପା ମଲ୍ଲୀବକୁଳ ପାଟଳ
ସୁନା ସୂତାରେ କୁସୁମ ଲମ୍ବେ ମାଳ ମାଳ ।
ଗଜମୋତି ମାଣିକ୍ୟର ଝରାକୁ ମିଶାଇ
ଲମ୍ବାଇ ଅଛନ୍ତି ଚଉପାଶେ ତାହା ନେଇ ।
ଖଞ୍ଜାମୁକୁଳ ଖଞ୍ଜିଛନ୍ତି ଝଡ଼ୁଁ ମାଳେ ମାଳେ
ସିଞ୍ଚି ଅଛନ୍ତି ପନିର ପାଣି ବାସି ଜଳେ ।
ଯେଠାରେ ବସିଲେ ବୃଦ୍ଧ ହୋଇ ନବ ଯୁବା
ଚର୍ଚ୍ଚିବା ଆନ ଆଇକ ପଟାନ୍ତର ଦେବା ।
କ୍ଷୁଧା ତୃଷା ନିଦ୍ରା ସର୍ବ ବିବର୍ଜିତ ଯହିଁ
ସ୍ୱଧର୍ମ ବିନା ଅଧର୍ମ ବିଧର୍ମ ହିଁ ନାହିଁ ।
ଏସନକ ଶୋଭା ଦେଖି ଦେଖି ସୁରପତି
ଆସ୍ଥାନେ ବସିଲେ ଯାଇଁ ଦକ୍ଷପ୍ରମୁଖ କତି ।
ବୃହସ୍ପତି ଆଦି ଯେତେ ଦେବଗଣ ଥିଲେ
ପ୍ରମ୍ଭେ ପ୍ରମ୍ଭେ ଆଉଜଣ ସମସ୍ତେ ବସିଲେ ।
ବ୍ରହ୍ମା ଇନ୍ଦ୍ର ରୁଦ୍ର ସବୁ ଦେବଗଣ ଯେଣ
ଯୋଗୀ ସନ୍ନ୍ୟାସୀ ଯେତେକ ସିଦ୍ଧ ସୁରମୁନ ।

ବିବ୍ୟ ବେଶରେ ମିଳିଲେ ସୁର ବିଳାସିଣୀ
ଚଉଷଠି ଅପସରା ଅପୂର୍ବ କାମିନୀ ।
ସ୍ୱର୍ଗସୁଲକ୍ଷଣୀ ସେହି ମହାପୁଣ୍ୟଦେଶୀ
ଜଣ ଜଣକେ ପାରନ୍ତି ମୁନ ମନ ମୋହି ।
ଅଶୀ କୋଟି ଗନ୍ଧର୍ବ ଯେ ସର୍ବେ ନବଯୁବା ।
କାମଦେବ ପ୍ରାୟକ ସେ ଅତିବଡ଼ ଶୋଭା ।
ସମୁଦ୍ର ମନ୍ଥନୁ ହେଲେ ସେ ସମସ୍ତେ ଜାତ
ଜନମ ମରଣ ବାଧା ନ ଲଗେ ଏହାନ୍ତ ।
କୋଟି କୋଟି ଇନ୍ଦ୍ର ହେବେ ସ୍ୱର୍ଗପୁରୁ କ୍ଷୟେ
ଜନ୍ମ ମୃତ୍ୟୁ ବାଧା ନାହିଁ ଏହାଙ୍କର କାୟେ ।
କୋଟି ଇନ୍ଦ୍ର ଯେବେ ଯିବେ ସ୍ୱର୍ଗପୁରୁ ନାଶ
କେତେବେଳେ ସେହିମାନେ ନୁହନ୍ତି ବିନାଶ
ଯାହାକୁ ଯେବେ ଦିଅନ୍ତି ଇନ୍ଦ୍ରପଦ [illegible]ରି
ବିଦ୍ୟାଧାରୀ ଅପସରି ତା'ର ସେବାକରି ।
ସ୍ୱର୍ଗ ମଣ୍ଡଳେ ଏମାନେ ସବୁକାଳେ ଥାନ୍ତି
ଯେ ଜନ ଇନ୍ଦ୍ର ହୁଅଇ ତାହାକୁ ଖଟନ୍ତି ।
ବିଷ୍ଣୁର କୋଠ ଲୋକ ଏ ଥାନ୍ତି ସ୍ୱର୍ଗପୁରେ
ସେବା କରୁଅଛନ୍ତି ରହି ଇନ୍ଦ୍ର ଅଧିକାରେ ।
ସ୍ୱର୍ଗପୁର ବିଦ୍ୟାଧରୀ ବେଶଭୂଷା ହୋଇ
ସୁରପତିର ଗ୍ରାମୁରେ ମିଳିଲେ ସେ ଯାଇଁ ।
ତାଳ କଂସାଳ ଝାଞ୍ଜାଳ ଅଳାବେଣୀ ବୀଣା
ଅପାଙ୍ଗ ଅଧା ମୃଦଙ୍ଗ ଯନ୍ତ୍ର ତନ୍ତ୍ରୀ ଜଣା ।
ଚିତ୍ରସେନ ଗନ୍ଧର୍ବ ଯେ ତାଳଧରି ଗାଇ
ବିଶ୍ୱାବସୁ ଗନ୍ଧର୍ବ ଯେ ମୃଦଙ୍ଗ ଧରାଇ ।
ତୁମ୍ବୁରୁ ଗନ୍ଧର୍ବ ଧରି ତୁମ୍ବୁରୁ ମର୍ଦ୍ଦଳ
ଅନଙ୍ଗସେନ ଦେବର୍ଷ କରେ କରତାଳ ।
ସୁରସେନ ଗନ୍ଧର୍ବ ଯେ ଜଳେ ବେଣୁନାଦ
ଜୟସେନ ଗନ୍ଧର୍ବର ଅଳାବେଣୀ ବାଦ୍ୟ ।
ବିଦ୍ୟାଧରୀମାନେ ତାଙ୍କ ସଙ୍ଗତେ ଆବୋରି
ମଣ୍ଡଳୀ ହୋଇଛନ୍ତି ଗୀତକୁ ଉଙ୍କାରି ।
ସାରି ଗମ ପାଧାନସା ସପ୍ତସ୍ୱର ରାଗ
ତଞ୍ଚୁପୁଟ ଷଞ୍ଚୁପୁଟ ଭେଦ ମୁଦ୍ରା ସଙ୍ଗ ।
ପଚାଶ ପଦ ଯେ ଭେଦ ଚଉଷଠି ଗତି
ଛୟାଳୋଇଁ ତନ ନୃତ୍ୟ ଚଉବନେ ମାତି ।
ଚୌତ୍ରିଶ ବୃହାଣୀ ଅଙ୍ଗ ଢ଼ାଳ ବୟାଳିଶି
ଅଠାଳୋଇଁ ଢଙ୍ଗ ଭଙ୍ଗୀ ମୁଦ୍ରା ଚଉରାଅଶୀ ।

ବନ୍ଧଣ କଲା ମୂରଛି ଧାଇ ସେ ପଡ଼ିଶ
ଛପ୍ପନୋଇଁ ଚନ୍ଦ୍ର ଗତ ମୂର୍ଚ୍ଛା ଏକୋଇଶ ।
ଚୌଷଠି କାଚ୍ଛେଣୀ ତାଳ ବାଟ ସେ ବନ୍ଧଣି
ଚଉଷଠି ବସାଣ ଯେ ତାନ ବସ୍ତାଅଣୀ ।
ଏଥି ବାହାରେ ଭରତ ବ୍ୟାପୀ ଚନ୍ଦ୍ର ବିଦ୍ୟା
ନବଶତ ପଞ୍ଚବଂଶ ଅଟଇ ପ୍ରସିଦ୍ଧା ।
ଅନ୍ତ ଗହନ ବିଦ୍ୟା ଏ ନ ଜାଣନ୍ତି କେହି
ନ ଜାଣନ୍ତି ଦିଗପାଳ ଆଦି ଦେବ ବହି ।
ଏକା ଜାଣନ୍ତି ତାଣ୍ଡବ ନୃତ୍ୟକାରୀ ହର
ବ୍ରହ୍ମା ମର୍ଦ୍ଦଳ ବଜାନ୍ତି ବିଷ୍ଣୁ ତାଳ ଧର ।
ପବନ ଫୁକାରେ ବାୟୁ ବରୁଣ ବଇଁଶୀ
ଯମ କାହାଳ ଯେ ବୀଣା ନାରଦ ଦେବର୍ଷି ।
ଆନ କେହି ବଜନ ଯେ ନୁହନ୍ତି ଏଥିକ
ଏ ବିଦ୍ୟାମାନ ଗନ୍ଧର୍ବ ଅପସରା ଶିଖି ।
ଏମାନେ ଇନ୍ଦ୍ରଙ୍କୁ ନିତ୍ୟ କରୁଥାନ୍ତି ସେବା
କେଣୁ ତାହାଙ୍କୁ ସଦୟା କରନ୍ତି ମଘବା ।
ଗୀତ ବାଦ୍ୟ ନୃତ୍ୟ ରସ ନାନା ପରିବନ୍ଧେ
ଗନ୍ଧର୍ବ ବିଦ୍ୟାଧରୀଏ ଖଟି ନାନାଛନ୍ଦେ ।
ଦଇବର ବିପରୀତ ଦେଖ ମହୀପତି
ଏତି ସମୟେ ମିଳିଲେ ଆସି ବସୁମତୀ ।
କେଶ ବାସ ଅସମ୍ଭାଳ ହୋଇ ବସୁନ୍ଧରା
ନବଦ୍ୱାରରୁ ରୁଧିର ପଡ଼ଇ ବାହାରି ।
ନମଗ୍ନ ହୋଇ ଦେହୀର ଅଚେଷ୍ଟିତ ମନ
ଶନ୍ୟାଭରେ ହୁଅନ୍ତି ସେ ଦେଖା ଛନ ଛନ ।
ହେଠମାଥ ହୋଇ ବସି କରନ୍ତି ରୋଦନ
ଅଶ୍ରୁଜଳ ନୟନରୁ ବହେ ଘନ ଘନ ।
ଅନାଥ ନାରୀ ପରବସ୍ତୁ କାନ୍ଦନ୍ତି କ୍ରୋଧରେ
ଉଚ୍ଚସ୍ୱରେ ବାହୁନନ୍ତି ସଭାର ମଧ୍ୟରେ ।
ଶୋକଭର ହୋଇଣ ସେ ଲୋଟନ୍ତି ଧରଣୀ
ଉଚ୍ଚସ୍ୱରେ ଡାକନ୍ତି ହେ ରଖ ଚକ୍ରପାଣି ।
ହାହି ହାହି ବୋଲି ଉଚ୍ଚେ ପାରନ୍ତି ବୋବାଳି
ଅନାଥ ହେଲି ହେ ପ୍ରଭୁ ନାରାୟଣ ବୋଲି ।
କ୍ଷଣେ ଅସାସ୍ତ୍ମ କ୍ଷଣେ ସଚେତ ତା ମତି
ଉଚ୍ଚସ୍ୱରେ ଡାକେ ମୋତେ ରକ୍ଷ ଲକ୍ଷ୍ମୀପତି ।
ନିଶ୍ୱାସ ମାତ୍ର କେବଳ ଶରୀରେ ମୋ ଅଛି
ଏ ସ୍ୱବନ କଲେ କେମନ୍ତେ ରକ୍ଷ ହେ ଶ୍ରୀବତ୍ସି
ଅନାଥର ବାନ୍ଧବ ତୁ ଶରଣ ତାରଣ
ନ ରଖିଲେ ନାଶ ହେଲି ତୁମ୍ଭେ ଏହା ଜାଣ ।
ରଖ ନାରାୟଣ ବୋଲି ମୁହିଁ ଯେ ଡାକୁଛି
ବଳବୀର୍ଯ୍ୟ ଧଇର୍ଯ୍ୟତ ନାହିଁ ମୋର କିଛି ।
ବିଷ୍ଣୁଙ୍କ ଆସନ ତଳେ ପ୍ରବେଶ ହୋଇଲା
ବୈକୁଣ୍ଠ ନାରାୟଣ ରଖସି ବୋଇଲା ।
ହାହି କର ନାରାୟଣ ହୋଇଲି ଅନାଥ
ଏ ଅନାଥ ରକ୍ଷା ହେଲେ ନାମ ହେବ ଖ୍ୟାତ
ଆତଙ୍କେ ବୋଲଇ ମୋତେ ରଖ ହେ ଶ୍ରୀପତି
ବହୁତ ବିକଳ ହୋଇ ସ୍ତବେ ବସୁମତୀ ।
କେ ନାରାୟଣ ସମ୍ଭାଳ ତୁମ୍ଭର ଏ ମହୀ
କଂସର ଭାରଭର ମୁଁ ନ ପାରଇ ସହି ।
ହେ ଦେବ ନାରାୟଣ ହେ ଦେଖ ମୋ ଅବସ୍ଥା
ତୁମ୍ଭେ ନିଶ୍ଚିନ୍ତେ ରହିଲ ପାଇଲି ମୁଁ ବ୍ୟଥା
କଂସର ଭାରରେ ମୁହିଁ ହୋଇଲଇଁ କଷ୍ଟି
ହେ ଦେବ ନାରାୟଣ ତୁ ଫେଡ଼ ମୋ ଅରିଷ୍ଟି
ଏଡ଼େ ବଡ ମହାଭାଗ ବହୁଛି ମୁଁ ଶିରେ
ସମସ୍ତେ ନିଶ୍ଚିନ୍ତ ହୋଇ ଅଛ ଯେ ଯାହାରେ
ମୋହର ଅଭାବେ ସୃଷ୍ଟି ହୋଇବଟି ନାଶ
ଏ କଥା ପ୍ରମାଣ ନିଶ୍ଚେ ବୁଝ ହୃଷୀକେଶ ।
ମୁହିଁ ଯେବେ ନ କରିବି ଶସ୍ୟ ଫଳ ଜାତ
ଅନ୍ନବିନା ପ୍ରାଣିମାନେ ହେବେ ସବୁ ହତ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଏ ସ୍ଥିର
ମୋହ ଉପରେ ସଞ୍ଚିଲ ଦେବ ତୁମ୍ଭେ ହରି ।
ଏବେକେ ରକ୍ଷା ନ କର ଯେବେ ପୀତବାସ
ମୁହିଁ ମଲେ ନାଶ ସିନା ଯିବେଟି ତ୍ରିଦଶ ।
ଏକଥା ଯେବେ ତୁମ୍ଭେ ନ କର ଚକ୍ରପାଣି
ମୁହିଁ ନାଶଗଲେ ଦେବ କାହାକୁ ଧରଣୀ ।
ଏତେକ ବୋଲି ସେ ଦେବୀ ତତକ୍ଷଣ ପଡ଼ିଲା
ନାରାୟଣସ୍ୱାମୀ ମୋତେ ଉଦ୍ଧର ବୋଇଲା ।
ଚେତନା ପାଇ ବୋଲଇ ଶୁଣ ଦେବରାଜ
ରସାଗତ ପୃଥ୍ୱୀ ମୋର କିଛି ନାହିଁ କାର୍ଯ୍ୟ ।
ବ୍ରହ୍ମଲୋକ ଆଦି କୀଟ ପତଙ୍ଗ ଜଗତ
ନ ବଞ୍ଚିଲେ ରସାତଳେ ପଡ଼ିବ ସମସ୍ତ ।
ଚଉରାଶୀ କୋଟି ଜୀବଜନ୍ତୁ ଏ ଯେ ସଂଖ୍ୟା
ଗତାଗତକୁ ମୋହର କେ କରୁଛି ଲେଖା ।

ହବ ହୋମ ଯାଗଯଜ୍ଞ ଶ୍ରାଦ୍ଧ ସବୁ ଗଲା
ତୁମ୍ଭେ ନ ରଖିଲେ ପୃଥ୍ୱୀ ଅକାରଣ ହେଲା ।
ବନ କନ୍ଦର ପର୍ବତ ମେରୁ ଅସ୍ତଗିରି
ସପ୍ତଦ୍ୱୀପ ସାତସିନ୍ଧୁ ଅଛୁ ମୂର୍ତ୍ତି ଧରି ।
ଅମିତ ମିତ ଏମାନେ କରନ୍ତି ସଂସାରେ
ସବୁ ଭର ଦେଇଅଛ ମୋହର ଉପରେ ।
ସବୁ ଦେବଗଣ ତୋର ସଂସାରେ ଜାରେଣି
ମୋହର ନ ଥିଲେ କସ କରିବେ ସେ ପୁଣି ।
ଘୁଡ଼ୁଛି ଧବଳିର ହେ ପଡ଼ୁ ରସାତଳ
ଏହା ନ ବୁଝିର କଥା କରୁଅଛ ହେଳ ।
ଏମନ୍ତ ବୋଲି ଦେଖି ସେ କ୍ରୋଧଭରହୋଇ
କାନ୍ଦନ୍ତି ସେ ନାରାୟଣ ମୁଖକୁ ଅନାଇ ।
ବୋଲନ୍ତି ପୃଥ୍ୱୀ ସକଳ ଦେଖି ନାରାୟଣ
ଦେବେ ତୋତେ ନ ରଖିଲେ ଏ ଅନେକ ଗୁଣ
ତୁମ୍ଭ ହିତପାଇଁ ଜନ୍ମ ଲଭିଥିଲି ପୂର୍ବେ
ବ୍ରହ୍ମଯାଗ କରି ମୁଖ ନ ଚୁମ୍ବିଲେ ଦେବେ ।
ତ୍ରେତାଯୁଗେ ଦେଖିଛ ଗୋ ପୌଲସ୍ତିର ନାତି
ରାବଣ ନାମ ଅସୁର ଲଙ୍କା ଅଧିପତି ।
ଅନେକ ବାର ସେ ସ୍ୱର୍ଗପୁରେ ଧାଡ଼ଦେଲା
ଲଙ୍କାକୁ ବୋଲି ଦେବଙ୍କୁ ବାନ୍ଧି ଘେନଗଲା ।
ଆସ୍ଥାନତଳେ ଦେବଙ୍କୁ ବସାଇଲା ନେଇ
ରାବଣ ବୋଇଲା ଏହି ଦେବଙ୍କୁ ଅନାଇ ।
ଆରେରେ ଦିବଶେ ମୋତେ ସେବା କରୁଥିବ
ଯେତେବେଳେ ଯେଉଁକଥା ଆସି ଜଣାଇବ ।
ଡରେ ଦେବଲୋକେ ତାହା ସନମତ କଲେ
ସେ କଥା କରିବୁ ବୋଲି ଘୁମୁରେ କହିଲେ
ମୋ ବଦଳେ ଆପେ ତାଳ ଧରି ଗୀତଗାଇ
ଏହି ବ୍ରହ୍ମା ମର୍ଦ୍ଦଳକୁ କରେ ଧରିଥାଇ ।
ଚରଣେ ଘାଗୁଡ଼ି ବାନ୍ଧି ଶିବ କରେ ନାଟ
ବୀଣା ଧରିଣ ନାରଦ କରନ୍ତି ଉଚାଟ ।
ପଢ଼ିହାରୀ ପଣେ ଥାଇ ଏହି ଦେବ ଇନ୍ଦ୍ର
ଅସ୍ଥାନେ ଛତ୍ର ଦେଇଥାଇ ଏହି ଚନ୍ଦ୍ର ।
ବୈଦ୍ୟପଣେ ନିତ ଯମ କରୁଥାଇ ସେବା
ମଡ଼ିଆଳ ଅଗ୍ନି ନିତ କରେ ନେବାଦେବା ।
ବରୁଣ ଯୋଗାଉଥାଇ ବାସ ପାଣି ନିତ
ଭଣ୍ଡାରର ଅଧିପତି ଏହି ଧନପତି ।
ଏହି ବ୍ରହ୍ମହତ୍ୟା ଦୋଷ ମୋତେ ଲଗାଇଲେ
ଏବେ ଏତେ ଦେବ ହୋଇ ରଖି ନ ପାରିଲେ
ଏସନ କହିଲେ ଯହୁଁ ଦେବ ଜଗନ୍ନାଥ
ସକଳ ଦେବତା ଦେଲେ ମସ୍ତକରେ ହସ୍ତ ।
ରୁଦ୍ର ଆଗୁ ସାରହୋଇ ବୋଇଲେ ହେ ହରି
ତୁମ୍ଭେ ବଡ଼ଲୋକ ବୋଲି କହିଲ ଏପରି ।
ତ୍ରିଶ ଗୋରୁ ବ୍ରାହ୍ମଣକୁ ମାଇଲେ ଗରିବ
ହତ୍ୟାଦୋଷ ମହାପାପ ତାଠାରେ ଲାଗିବ ।
କେହି ତାହାକୁ ପାଖରେ ବସାଇ ନ ଦେବେ
ମାର ମାର କରି ତାର ମୁହଁ ନ ଚୁମ୍ବିବେ ।
ଗୋବର ପାଣି ପିଆଇ ପରବିତ କରି
ପାଖେ ବସାଇବେ ବେଦବାଧି ଦଣ୍ଡଧରି ।
ବଡ଼ଲୋକ ପାଇଁ ନୋହେ ବେଦବାଧି ଦଣ୍ଡ
କହିଲେ ଛାଡ଼ିବା ଆମ୍ଭେ ବେଦପୋଥି ଖଣ୍ଡ ।
ବିଶ୍ରବା ଋଷିର ପୁଅ ପୁଲସ୍ତିର ନାତି
ସାକ୍ଷାତେ ଏହି ବ୍ରହ୍ମାର ଅଟେ ପଣନାତି ।
ସେ ରାବଣ କୁମ୍ଭକର୍ଣ୍ଣ ଅଟନ୍ତି ବ୍ରାହ୍ମଣ
ଦେହରା ଘରେ ସେ ନିତ୍ୟ ଅଗ୍ନିକ ଥାପିଣ
ହୋମ ଗଞ୍ଜ ମହାଯଜ୍ଞ କରୁଥାନ୍ତି ସେହି
ସେ ଋଷି ପୁତ୍ର ମାଇଲ ସ୍ୱହସ୍ତରେ ଯାଇଁ ।
ତହିଁରେ ତୁମ୍ଭଙ୍କୁ ଦୋଷୀ କରିଥିଲେ ଦେବେ
ସେ ଯୁଗର କଥା ମନେ ରଖି କହ ଏବେ ।
କଂସର ପ୍ରତାପ ସହି ନ ପାରିଲ ମନ୍ତ୍ରୀ
ବଳବନ୍ତ ପଣେ ସ୍ୱର୍ଗପୁର ନେଲା କହି ।
ଦେବତାଙ୍କୁ ବାନ୍ଧି ନେଇ ଖଟାଇଲା ପାଦେ
ସର୍ବଦା ତାହାର ଭୟ ରହିବାରୁ ହୃଦେ ।
ବସୁରିଲୁଁ ଠାକୁରଙ୍କ ପାଖେ ଗୁଳ ଯିବା
ଆମ୍ଭର ଏ ଦୁଃଖମାନ ବିସ୍ତାରି କହିବା ।
ଏତେ ଭାଳି ସାତସିନ୍ଧୁ ପାରି ହୋଇ ଆସି
ଦୁଃଖ ଜଣାଇଲୁଁ ଆମ୍ଭେ ଦେବଗଣ ମିଶି ।
ଠାକୁର ବୋଲି ପାଶକୁ ଆସିଥିଲୁ ଧାଇଁ
ତୁମ୍ଭେ ନ ପାରିଲେ ଏଥୁଁ ଆମ୍ଭେ ଫେରିଯାଇ
କଂସକୁ ଠାକୁର ମାନି ସେବିବୁ ତା ପାଦ
ଆଉ କାହିଁକି ରହିବ ମନରେ ବିଷାଦ ।
ରୁଦ୍ର ବଚନେ କହନ୍ତି ପ୍ରଭୁ ନାରାୟଣ
ଯାହା ତୁମ୍ଭେ କହିଲ ତା ଅଟଇ ପ୍ରମାଣ ।

ଏହି ପବନ ବହିଲ ଆଳଟକୁ ଧରି
ଏ ନଇରୂତ ମାର୍ଜନା ବଧି ଆସି କରି ।
ଏହି ଆଦିତ୍ୟ ଉତ୍ତପ ଧରିଥାଇ ଆଗେ
ଏହି ବୃହସ୍ପତି ପାଞ୍ଜି କହୁଥାନ୍ତି ବେଗେ ।
ଏ ବେଦେ ଆଶ୍ରାକରଣ ପାଟଛନ୍ଦ ଘୁଇ
ରାବଣ ବଳେ ଦେଖିଣ ଛନ୍ଦଧରି ଧାଇଁ ।
ଅସଂଖ୍ୟ ସମ୍ପଦ ତାର ଅଗୋଚର ଗତି
ବଳେ ହରି ଆଣିଲା ସେ ଦେବଙ୍କ ଯୁବତୀ ।
ସାରି ବଇକୁଣ୍ଠେ ପଶି ମୋତେ ଜଣାଇଲେ
ଋଷ୍ୟଶୃଙ୍ଗ ଚରୁ ମଧ୍ୟୁଁ ଜାତ କରାଇଲେ ।
ରାବଣର ଉପଦ୍ରବ ନ ପାରିଣ ସହି
କୁଟେ ମନ୍ଥରାକୁ ପେଷି ବନବାସ ଦେଇ ।
ମୋତେ ନ ଦେଖିଣ ପିତା ଦଶରଥ ମଲେ
ଦଣ୍ଡକ ଅରଣ୍ୟେ ତହୁଁ ନେଇ ରଖାଇଲେ ।
ସୁବର୍ଣ୍ଣର ମାୟା ମୃଗ ଦେଖାଇ କପଟେ
ମୃଗ ମାରିଯାନ୍ତେ ମୋର ପତ୍ନୀ ନେଲେ ଖଣ୍ଡେ
ସୀତାଙ୍କୁ ନ ଦେଖି ମୂର୍ଚ୍ଛି ବଳ୍ଲେଣି ହୋଇଲି
ବନ ପରବତ ଲୋଡ଼ି ଲୋଡ଼ି ନ ପାଇଲି ।
ଯୋଗେ ହନୁମନ୍ତ ମୋତେ ସାହାପକ୍ଷ ହେଲା
ସୁଗ୍ରୀବ ବାନର ସଙ୍ଗେ ମିତ୍ର କରାଇଲା ।
ଆଠ ଦୂତ ଯେନ ହନୁ ଲଙ୍କାଗଡ଼େ ଗଲା
ସିନ୍ଧୁ ପାର ହୋଇ ମୋର ସୀତା ଠାବକଲା ।
ଅଶୋକ ବନ ଭାଙ୍ଗି ସେ ଅକ୍ଷୟାରେ ମାରି
ଲଙ୍କା ପୋଡିଦେଲା ହନୁ ବୁଦ୍ଧିବଳ କରି ।
ବାଣ୍ଡୀ କପି ସଙ୍ଗେ ଯାଇଁ ବାନ୍ଧି ସେତୁବନ୍ଧ
ଅନେକ କଷ୍ଟେ ମାଇଲି ରାଜା ଦଶକନ୍ଧ ।
ଇନ୍ଦ୍ରଜିତ କୁମ୍ଭକର୍ଣ୍ଣ ବୀରଙ୍କ ସହିତେ
ଯୁଦ୍ଧ ନ ଥି ଆଉ କରି କୁଟୁମ୍ବ ତା ଯେତେ ।
ସଙ୍ଗୋପେ ମାରି ସୀତାକୁ ଆଣିଲି ଉଦ୍ଧରି
ଅଗ୍ନିରେ ପରୀକ୍ଷା କରି ଜନକ-କୁମାରୀ ।
ମୋର ଦାରୀ ହଇଣି ସେ ରାବଣ ସଂହାରି
ଏହି ଦେବଗଣଙ୍କର ହୋଇଲି ବଇରୀ ।
ଏହି ଇନ୍ଦ୍ର ସ୍ୱର୍ଗେ ସଭାକରି ବସିଥିଲା
ମୋହର ମୁଖ ନ ସ୍ପର୍ଶି ସଭାରୁ ଉଠିଲା ।
ବ୍ରହ୍ମଘାତି ମହାପାପୀ ବୋଇଲା ଏ ମୋତେ
ତେଣୁ ଅନ୍ଧାର ଦଶିଲା ସକଳ ଯୁଗତେ ।

ବେଦକୁ ଅଧ୍ୟଲ ତୁମ୍ଭେ ନ ବୁଝି ତା ତତ୍ତ୍ୱ
ବୁଝିଥିଲେ କି ତା ମୋତେ ଦୋଷଦେଇଥାନ୍ତ
ପୂର୍ବେ ତୁମ୍ଭେ ବ୍ରହ୍ମାମୁଣ୍ଡେ ଝଟପୋଡ଼ି ମାଇଲ
ତାର ପଞ୍ଚମୁଖ ଦେଖି ସହି ନ ପାରିଲ ।
ଛିଣ୍ଡି ସେ ବ୍ରହ୍ମାର ମୁଣ୍ଡ ତଳେ ନ ପଡ଼ିଲା
ତୁମ୍ଭର ହସ୍ତରେ ଆସି ଲାଗିଣ ରହିଲା ।
ବ୍ରହ୍ମହତ୍ୟା ମହାପାପ ଘୋଟିଲା ତୁମ୍ଭଙ୍କୁ
ଗଲ ଯେ ତୁମ୍ଭେ କପାଳମୋଚନ ତୀର୍ଥକୁ ।
ତହିଁ ରହି ବ୍ରହ୍ମହତ୍ୟା ପାପ ଛଡ଼ାଇଲ
ସେ ଅବନୁ କପାଳୀ ନାମ ତୁମ୍ଭେ ଯେ ବହିଲ
କପିଳା ଗାଈ ବାଛୁରି ଅଟଇ କଅଁଳା
ଅଜ୍ଞାନ କାଳେ ତୁମ୍ଭର କୁଶକୁ ଖାଇଲା ।
ସେହି ଦୋଷେ ତାକୁ ତୁମ୍ଭେ ପକାଇଲ ମାରି
ସେହି ମହାପାପ ଗୋଟା ତୁମ୍ଭଙ୍କୁ ଯେ ଘାରି
ଧଳା ଦେହକୁ ତୁମ୍ଭର କଳା କରିଦେଲା
ଯେତେ ତୀର୍ଥ ବ୍ରତକଲ କେବେ ନ ଘୁଞ୍ଚିଲା ।
ହଟକେଶ୍ୱର ତୀର୍ଥରେ ଯୋଗମାର୍ଗେ ରହି
ରାମତାରକ ମନ୍ତ୍ରକୁ ଜପିଲ ଯେ ତହିଁ ।
ତେଣେ ସେହି ମହାପାପ ଘୁଞ୍ଚି ପଳାଇଲା
ଆମ୍ଭଙ୍କୁତ ବ୍ରହ୍ମହତ୍ୟା ଦୋଷ ନ ଲାଗିଲା ।
ଆମ୍ଭର ଦାରାହରଇଣ ଅଟଇ ରାବଣ
ମାଗିଲୁ ନ ଦେଇ କଲା ଆମ୍ଭ ସଙ୍ଗେ ରଣ ।
ଆମ୍ଭେ ତାକୁ ବଧ କଲୁ କି ଦୋଷ ଆମ୍ଭର
ବେଦର ତତ୍ତ୍ୱ ତୁମ୍ଭେତ ନ ଜାଣ ଅମର ।
ସଂଗ୍ରାମରେ ଘୋରୁ ବିପ୍ରେ ବଧେ ନାହିଁଦୋଷ
ଆମ୍ଭ ରକ୍ଷା ପାଇଁ ଆମ୍ଭେ କଲୁ ତାକୁ ନାଶ ।
ନ ବୁଝି ନ ଶୁଝି ଆମ୍ଭ ମୁଖ ନ ସ୍ପର୍ଶିଲ
ଆଜ ମୁଖ ସ୍ପର୍ଶିବାକୁ କେମନ୍ତେ ଅଇଲ ।
ତୁମ୍ଭେ ଏତେଲୋକ ଯାକୁ ନ ପାରୁଛ ମାରି
ସେହି ବଳବନ୍ତକୁ କି ମୁହିଁ ମାରି ପାରି ।
ଶୁଣି ରାଗେ ତମ ତମ ହୋଇ ଭୋଳାନାଥ
ଚଳ ବଳ କରିବାକୁ ମନେ ହୋଇ ବ୍ୟସ୍ତ ।
ତାଙ୍କ ମନକଥା ବୁଝି ପାରି ଦେବବର
ବୋଇଲେ ଭୋଳେଦେବ ବାରେଦୋଷକ୍ଷମାକର
ଯୁଗେ ଯୁଗେ ନାଥ ତୁମ୍ଭେ ଆମ୍ଭଙ୍କୁ ରଖନ୍ତା
ତୁମ୍ଭର ଥାଆନ୍ତେ ଅଛୁ ଆମ୍ଭର କି ଚିନ୍ତା ।

ତୁମ୍ଭେ ଆମ୍ଭଙ୍କୁ କରିବ ଯେବେ ଅବହେଳା
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ଅରକ୍ଷ ହୋଇଲା ।
ପୃଥିବୀ ତହୁଁ ଆମ୍ଭର ଅଧିକ ବେଦନା
ଦେବଙ୍କ ଦୁଃଖ ପ୍ରତ୍ୟକ୍ଷେ ତୁମ୍ଭେ ଦେଖିଲନା ।
ପ୍ରଥମେ ଅଇଲା ସ୍ୱର୍ଗେ କଂସ ବଣ୍ଡ ବାହୁ
ସ୍ୱର୍ଗପୁର ଜୁର କରି ନେଲା ସବୁ ବୋହୁ ।
ବାରସ୍ୱର୍ଗ ପୁରକୁ ସେ କଲା ନାରଖାର
ଦେବଙ୍କ ଭଣ୍ଡାରଯାକ ସବୁ କଲା ଜୁର ।
ପୁଣି ଏକାନ୍ତେ ଥେ ଚଢି ଅଇଲା ସେ ବେଗେ
ମଥୁରାପୁରେ ଆମ୍ଭଙ୍କୁ ଧରି ନେଲା ରାଗେ ।
ଅନେକ ଜଞ୍ଜାସି ଦୁଃଖଦେଲା ଯେତେ ୨
ତୁ ସୃଷ୍ଟିନାଥ ଗୁହାରି ନ ଶୁଣିବୁ ଏତେ ।
କଷ୍ଟ ନାଶ ଯିବୁ ଆମ୍ଭେ ଯିବ ସ୍ୱର୍ଗପୁରୀ
ଏ ମହା ସଙ୍କଟୁ ରଖ ଆହେ ଚକ୍ରଧାରୀ ।
କଂସର ଯେ ଉପଦ୍ରବ ହୋଇଲୁ ନିରେଖ
ଉପାୟ କରିଣ ନାଥ ପାରିଲେ ତୁ ରଖ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଆମ୍ଭେ ତିନ ଏକା
ନାମ ଭିନ୍ନ ଆମ୍ଭ ରୂପ ଅଟଇ ଅଲେଖା ।
ତୋ ଭୃତ୍ୟର ଭୃତ୍ୟ ଆମ୍ଭେ ସବୁ ଦେବତାଏ
ନ ଜାଣି ଅପ୍ରାଧ କଲୁ କ୍ଷମାକର ସ୍ୱୟୁ ।
ନିରାକାରୁ ଜାତ ଆମ୍ଭେ ହେଲୁ ତିନଦେବ
ପ୍ରକୃତି ଯେ ଭିନ୍ନ ଭିନ୍ନ ରୂପ ଭିନ୍ନହୋଇ ।
ଶୂନ୍ୟବାସୀଠାରୁ ଆମ୍ଭେ ଜାତ ତିନଦେବା
ଦୋଷ କ୍ଷମାକର ପୃଥ୍ୱୀଶ୍ୱର ଉଶ୍ୱାସିବା ।
ଭୃତ୍ୟଜନ ହୋଇ ଯେବେ ଅପ୍ରାଧ କରଇ
ପ୍ରଭୁ ହୋଇ ଯେବେ ତାହା କ୍ଷମା ନ କରଇ
ଏଥୁ ଅଧିକ କି କଷ୍ଟ ଅଛଇ ତାହାକୁ
ଦୋଷ ନ ବିଚାରି ପ୍ରଭୁ ଦଣ୍ଡଇ ଭୃତ୍ୟକୁ ।
ସେବକହୋଇ ପ୍ରଭୁରେ ଯେବେ କୋପକରି
ପ୍ରଭୁ ଯେବେ ନ ଶୁଣଇ ସେବକ ଗୁହାରି ।
ଏହା ଭଲ ନୋହେ ବୋଲି ଶାସ୍ତ୍ରେଅଛି କହି
ଏମନ୍ତେ ଅନେକମତେ ବିଧାତା ବୁଝାଇ ।
ରାଜା ଯେବେ ନ ବିଚାରି ଦଣ୍ଡିବ ପ୍ରଜାକୁ
ସେ ଅବା ଯାଇଁ ଗୁହାରି କରିବ କାହାକୁ ।
ପତିହୋଇ ଯେବେ ନିଜପତ୍ନୀକି ଲେଢିବ
ସେ ଅବା ଯାଇଁ ସେ କଷ୍ଟ କାହାକୁ କହିବ ।

ପିତା ଯେତେବଟି ପୁତ୍ରକୁ ଦଣ୍ଡଦଏ କଲେ
କେ ତାକୁ ପୁଣି ରଖିବ ଏ ମହୀମଣ୍ଡଳେ ।
ମାତା ଯେବେ ନ କରିବ ପୁତ୍ରରେ ସୁଆଗ
ଗାଈ ଗାଈ ତାକୁ ଜାଣ ମରଣର ଯୋଗ ।
ଚନ୍ଦ୍ର ସୂର୍ଯ୍ୟ ଯେବେ ଆତଯାତ ନୋହିବ ନିତ
ଶସ୍ୟଫଳ ଯେତେବଟି ନ ହଏ ବସୁମତୀ ।
ଇନ୍ଦ୍ର ଦେବତା ଯେବେ ନ ବରଷିବ ଜଳ
ସମୁଦ୍ରହୋଇ ଲଂଘିବ ଯେବେ ତାର କୂଳ ।
ତୁମ୍ଭେ ଯେ ପ୍ରଭୁ ଉପେକ୍ଷା ନ କରିବ ଦୋଷ
ଏଥୁ ଆମ୍ଭମାନଙ୍କୁ କି ଅଛି ଅପଯଶ ।
ଦେବଙ୍କର ଦେବ ତୁମ୍ଭେ ଅଟ ମହାପ୍ରଭୁ
ନ ଜାଣି ଅପ୍ରାଧ କଲୁ କ୍ଷମାକର ସବୁ ।
ତୁମ୍ଭେ ଯେବେ ସପକ୍ଷ ନହେବ ଦେବ ହେଲେ
ସ୍ୱର୍ଗ ମର୍ତ୍ତ୍ୟ ପାତାଳକି ଯିବ ରସାତଳେ ।
ସଚରାଚର ମେଦିନୀ ତୁମ୍ଭର ସଞ୍ଜିଲ
ନବଖଣ୍ଡ ମେଦିନୀରେ ତୁମ୍ଭେ କର ଲୀଳା ।
ସକଳଦେବତା ଏ ଯେ ତୁମ୍ଭ ପରିବାର
ଏ ମହା ସଙ୍କଟୁ ନାଥ ବାରେକ ଉଦ୍ଧର ।
ଏତେକ କହୁ ବିଧାତା ହୋଇଲେ ମଉନ
ବୋଇଲନ୍ତ ପ୍ରସନ୍ନ ମୁଖେ ଦେବ ନାରାୟଣ ।
ପ୍ରସନ୍ନ ହେଲୁ ତୁମ୍ଭର କଷ୍ଟଗଲା ପାର
ଅଳପଦିନେ ନାଶିବୁଁ ଆମ୍ଭେ କଂସାସୁର ।
ଜାନୁରୁ ଶୃଙ୍ଖଳ କୃଷ୍ଣ ରୋମ ଉପାଡ଼ିଲେ
ପୃଥ୍ୱୀଭାର ନାଶଅର୍ଥେ ବ୍ରହ୍ମାକରେ ଦେଲେ ।
ବସୁଦେବରୂପେ ଜାତ କଶ୍ୟପ ଯେ ହୋଇ
କଳା ଶୁକ୍ଳରୋମ ଦୁଇ ଜାତକର ନେଇ ।
ଏ ବେନି ରୋମ ତୁ ଘେନିଯାଅ ଦେବବର
ଏମନ୍ତ ଆଜ୍ଞା ତହୁଁ ଦେଲେ ଚକ୍ରଧର ।
ଏବେ ତୁମ୍ଭ ପୁଣ୍ୟବଳ ଫଳିଲାକ ଆସି
କଂସାସୁର ହସ୍ତେ କଣ୍ଟୁଦନ ଦୁଅ କର୍ଷି ।
ଏମନ୍ତ ଆଜ୍ଞା ଯହୁଁ ଦେଲେ ନାରାୟଣ
ଖୁସିକରି ସନ୍ତୋଷ ଯେ ହେଲେ ଦେବଗଣ ।
ଶତେକଜନ୍ମ ଅନ୍ଧ ଚକ୍ଷୁଦାନ କି ପାଇଲା
କୁବେର ନିଧିକି ଅବା ଦରିଦ୍ରକୁ ଦେଲା ।
ହେରିଲ ସ୍ୱାତକ ପାଇ କି ଚଗନ ମାର
ଚକୁଆ ଚକୋଇ ଦୁଃଖ ବିଚ୍ଛେଦ କି ଘୁର ।

କମଳ ପୁଟିଲା ଯଥା ଦେଖି ଦିନମଣି
କୁମୁଦ ବିକଶିଲା କି ଚନ୍ଦ୍ର ଉଦେ ଜାଣି ।
ତେସନ ସଞ୍ଜାତ ହେଲେ ଶୁଣି ଦେବତାଏ
ଏକମୁଖେ ହରି ହରି ବୋଲନ୍ତି ସର୍ବେ ।
ବିନୟ ଭକତି କରି କହେ ପୁରନ୍ଦର
ଆମ୍ଭ ଦୋଷ ତୁମ୍ଭେ କ୍ଷମାକର ଚକ୍ରଧର ।
ନୟନରୁ ଅଶ୍ରୁଜଳ ବହେ ଅନୁକ୍ଷଣ
ଶୋକଭରେ ଡାକନ୍ତି ହେ ରଖ ନାରାୟଣ ।
କରପଦ୍ମ ଯୋଡ଼ି ଛିଡ଼ା ହୋଇ ବସୁମତୀ
ବୋଲେ ବାଞ୍ଛାକର ତୁମ୍ଭ ପାଦରେ ଭକତି ।
ଶ୍ରୀଚରଣ ତଳେ ମୁଁ ଯେ ଗଡ଼ିଯାଇ ଶୁତି
ରଖ ମୋତେ ନାରାୟଣ ଅସୁର ନିପାତି ।
ଜୟ ଜୟ ଜଗନ୍ନାଥ ଶରଣ ରକ୍ଷଣ
ତୁମ୍ଭେ ନ ରଖିଲେ ନାଶଗଲେ ଦେବଗଣ ।
ଜୟ ଜୟ ଜଗନ୍ନାଥ ଅଖିଳ କରତା
ତୁମ୍ଭେ ଫେଡ଼ିବାର ପ୍ରଭୁ ଦେବଙ୍କର ଚିନ୍ତା ।
ଜୟ ଜୟ ଜଗନ୍ନାଥ ଜଗତର ବନ୍ଧୁ
କଂସାସୁର ଭୟରୁ ହେ ରଖ କୃପାସିନ୍ଧୁ ।
ଜୟ ଜୟ ଜଗନ୍ନାଥ ଭକତ ସେ ବର
ଭକତଙ୍କ ହିତେ ପ୍ରଭୁ ଶଙ୍ଖଚକ୍ର ଧର ।
ଜୟ ଜୟ ଜଗନ୍ନାଥ କର ଦେବ ଶାନ୍ତି
ଆରତଭଞ୍ଜନ ନାଥ ଅଟେ ତୁମ୍ଭ ଚେଷ୍ଟା ।
ଜୟ ଜୟ ଜଗନ୍ନାଥ ତୁମ୍ଭେ ନାରାୟଣ
ଅଭୟ ପଦ୍ମପାଦରେ ପଶିଲୁ ଶରଣ ।
ଜୟ ଜୟ ଜଗନ୍ନାଥ ହୋଇଲୁଁ ନିରେଖ
ଶରଣ ପଶିଲୁଁ ପାଦେ ଆମ୍ଭଙ୍କୁ ତୁ ରଖ ।
ଏସନକ ସ୍ତୁତି ଯହୁଁ କଲେ ଦେବତାଏ
ଅନେକ ଆନନ୍ଦ ଶୁଣି ହେଲେ ଦେବରାୟେ ।
ଦେବଗଣଙ୍କ ବଦନ ଦେଖି ଜଗନ୍ନାଥ
ବୋଇଲେ କିପାଇଁ ତୁମ୍ଭେ ହେଉଛ ଆରତ
ଅବିନାଶୀ ପୁରୁଷତ ଅଟ ପୁଣ୍ୟଦେହୀ
ଅମର ଭୁବନେ ବସ ଭୟ କାହିଁପାଇଁ ।
କ୍ଷୁଧା ତୃଷା ବିବର୍ଜିତ ଅଟେ ତୁମ୍ଭ ଅଙ୍ଗ
ଧୃଗଣ ପୁରୁଷ ତୁମ୍ଭେ ନିସ୍ୱାଶୁଦ୍ଧ ଅଙ୍ଗ ।
ଅଜରାମର ପୁରୁଷ ତୁମ୍ଭେ ପୁଣ୍ୟବନ୍ତା
ଅମରପୁରେ ଥାଇଣ କାହାକୁ ଏଥ ଚିନ୍ତା ।

ନାରାୟଣ ମୁଖୁଁ ବାଣୀ ଏସନକ ଶୁଣି
ବୋଲନ୍ତି ଗମ୍ଭୀରେ ଉଭାହୋଇ କୁଶପାଣି ।
ହେ ସ୍ୱାମି ଦେବରାଜ ହେ ଶୁଣ ସାବଧାନେ
ଅରକ୍ଷହେଲୁଁ ଅମରବାସୀ ଆମ୍ଭେମାନେ ।
ଅମରଭୁବନେ ଯହୁଁ ନ ପାରିଲୁ ରହି
ତେଣୁ ଗମ୍ଭୁକୁ ଅଇଲୁ ସିନା ଦେବ କହି ।
କଂସାସୁର ଭୟରୁ ଯେ ଆମ୍ଭଙ୍କୁ ଉଦ୍ଧର
ତୁମ୍ଭ ଆଶ୍ରେ ରହିଲୁ ଯେ ଛାଡ଼ି ସ୍ୱର୍ଗପୁର ।
ଏଥୁ ଅନନ୍ତରେ ପୁଣି ଦେବୀ ବସୁମତୀ
ବୋଇଲେ ସମ୍ଭାଳ ତୋର ସୃଷ୍ଟି ଲକ୍ଷ୍ମୀପତି ।
ଉଠି ଦେବବୃନ୍ଦ ଶୋକେ କ୍ରୋଧଭରହୋଇ
କହନ୍ତି ଆସ୍ଥାନତଳେ ହୋଇଣ ବିନୟୀ ।
ଦେବଦେବୀଙ୍କ ବଦନ ଦେଖି ଭବଗ୍ରାହୀ
ଆଶ୍ୱାସି ବଚନ ପୁଣି କହନ୍ତି ଅନାଇ ।
ନାରାୟଣ ବୋଇଲେ ହୋ ଶୁଣ ପିତାମହ
ଦୁଇରୋମ ଦେଲି ତାହା ଘେନ ତୁମ୍ଭେ ଯାଅ
ବେନପୁତ୍ର ଜନମାଇ ଦେବକୀ ଉଦରେ
ଭାରଭର ଉଶ୍ୱାସ ତୁ କର ବେଦବରେ ।
ଆଉ କିପାଇଁ ବିକଳ ହେଉଅଛ କହ
କହନ୍ତି ନାରାୟଣଙ୍କ ଆଗେ ପିତାମହ ।
ମର୍ତ୍ତ୍ୟପୁରେ ଜନ୍ମ ହୋଇ ଦୈତ୍ୟଙ୍କୁ ମାରିବୁ
ଆମ୍ଭମାନଙ୍କୁ କଷ୍ଟରୁ ପ୍ରଭୁ ଉଦ୍ଧାରିବୁ ।
ଶ୍ରୀହରି ବୋଇଲେ ତୁହୋ ଶୁଣ ବେଦବର
ବ୍ରହ୍ମହତ୍ୟା ଦୋଷ ଅଙ୍ଗେ ଲଗିଛି ମୋହର ।
ରାମ ଅବତାରେ କଷ୍ଟ ଅନେକ ପାଇଲି
ରାମ ଅବତାରେ ବ୍ରହ୍ମହତ୍ୟା ଅରଜିଲି ।
ଆଉ କିପାଇଁ ମାନବ ଦେହ ଘୋଟା ବହି
କଷ୍ଟମାନ ସହି ପୁଣି ହେବ ଦୋଷଗ୍ରାହୀ ।
ରୋମ ଦେଲି ତାହା ଘେନ ଉଶ୍ୱାସ ହେ ଭର
ଏମନ୍ତ ଶୁଣି ବୋଇଲେ ପୁଣି ବେଦବର ।
ଭବ ନିମନ୍ତେ ମାନବ ଦେହଘୋଟା ବହି
ବାରେ ବାରେ ସୃଷ୍ଟି ରଖ ତୁମ୍ଭେ ଭବଗ୍ରାହୀ
କଶ୍ୟପ ଅବତ ଜାଣ ମଥୁରାରେ ହୋଇ
ଦେବକୀ ଯେ ବସୁଦେବ ନାମ ଛନ୍ତି ବହି ।
ତାହାଙ୍କର କୋଳେ ଯାଇଁ ତୁମ୍ଭ ଉପୁଜିବ
ରାମ କୃଷ୍ଣ ରୂପ ଧରି ହରି ଉଶ୍ୱାସିବ ।

ସବୁକାଳେ ତୁମ୍ଭେ ପୁଣି ରଖ ବାସୁଦେବ
ମଥୁରାରେ ଜାତ ହୋଇ ଗୋପରେ ବଢ଼ିବ
ଗାୟତ୍ରୀ ଦେବୀ ଅଛନ୍ତି ପୂର୍ବେ ଶାପ ଦେଇ
ନନ୍ଦଗୋପାଳ ଯେ ଚିହ୍ନି ନୃପତି ବୋଲାଇ ।
ଯଶୋଦା ଦେବୀ ପାଳବେ ତୁମ୍ଭଙ୍କୁ ହେ ହରି
ଅପୁତ୍ରିକ ହୋଇ ଥିବ ନନ୍ଦ ଦଣ୍ଡଧାରୀ ।
ତାହାଙ୍କର ଗର୍ଭୁ ଦେବୀ ଦୁର୍ଗା ଜାତହେବେ
ବସୁଦେବ ଯେ ତୁମ୍ଭର ପାଲଟେ ଆଣିବେ ।
ରଙ୍ଗା ଅବତାରେ ନାଥ ଚିହ୍ନି ବିହରିବ
ସ୍ବର୍ଗର ଅପସରାଙ୍କ ସଙ୍ଗେ ବିଳସିବ ।
ଆମ୍ଭେମାନେ ସମସ୍ତେ ଯେ ହେବୁ ବଶବର୍ତ୍ତୀ
ଆଉର ବାଳଖିଲ୍ୟା ଯେ ସହସ୍ରେ ଯୁବତୀ ।
ସେ ଯତିମାନେ ଗୋପରେ ସ୍ତ୍ରୀଜନ୍ମହେଲେ
ତୁମ୍ଭଜନ୍ମ ଜାଣି ଦିବ୍ୟରୂପକୁ ବହିଲେ ।
ତୁମ୍ଭର ମନ ରଞ୍ଜିବେ ନିଶ୍ଚେ ଗୋପୀନାଥ
ତାଙ୍କୁ ଘେନି ରାସଲୀଳା କରିବ ହେ ନାଥ ।
ନନ୍ଦନବନ ହୋଇଣ ଜାଣ ବୃନ୍ଦାବନ
ଅମ୍ବିକା ବନ ଯେ ପଦ୍ମବନ ଷଡ଼ବନ ।
ନାମ ତାଙ୍କର ହୋଇବ ବୃନ୍ଦାବନ ଜାଣ
ଚିହ୍ନି ସୁଖେ ବିହରିବ ତୁମ୍ଭେ ଭଗବାନ ।
ଗୋପୀନାଥ ନାମ ତୁମ୍ଭେ ବୋଲାଇବ ହରି
ରାଧିକା ହେବେ ଚିହ୍ନିରେ ବୃନ୍ଦାବନେଶ୍ୱରୀ ।
ଏଥି ମଧ୍ୟେ ସାର ସ୍ତ୍ରୀ ନାମ ଚନ୍ଦ୍ରାବଳୀ
ତାକୁ ଘେନି ବିହରିବ ତୁମ୍ଭେ ବନମାଳୀ ।
ଅତି ରଙ୍ଗେ ତୁମ୍ଭେ ରଙ୍ଗା ଅବତାର ହେବ
ଅଷ୍ଟ ବରଷ ପର୍ଯ୍ୟନ୍ତେ ଗୋପରେ ବଢ଼ିବ ।
ଅଷ୍ଟମଲ୍ଲ ମୂଳେ ତୁମ୍ଭେ କଂସ କେଶୀ ମାରି
ମଥୁରାରେ ବିହରିବ ଯାଇଁ ଦେବ ହରି ।
ଜରାସନ୍ଧର ଦୁହିତା ହେତୁ ଯେ ପ୍ରହେତି
ଗୁହାରି କରିବେ ଯାଇଁ ତା ପିତାର କତି ।
ଅଠର ବେଳ ପର୍ଯ୍ୟନ୍ତ ଧାଡ଼ିଦେବ ସେହି
ତାହା ଡରେ ମଥୁରାରେ ନ ପାରିବ ରହି ।
ଜରାସନ୍ଧ ସଙ୍ଗେ ଥିବେ ଲକ୍ଷକ ଯୁବତୀ
ମ୍ଳେଚ୍ଛାସୁର ଶତ୍ରୁପଣ କରିବେ ଶ୍ରୀପତି ।
ଜରାସନ୍ଧର ଦୁହିତା ହେତୁ ଯେ ପ୍ରହେତି
ତାହାଙ୍କ ଭାର ନ ସହେ ଜାଣ ବସୁମତୀ ।

ଶିଶୁପାଳ ସହିତରେ ଦନ୍ତବକ୍ର ମୂଳେ
କାଳଦମନ ଆଦି ଯେ ଦୁର୍ଜନ ଭୂପାଳେ ।
ଶମ୍ଭୁ ନାରକା ପ୍ରଭୃତି ବାଣାସୁର ରାୟେ
ବାସୁକି ଫଣା ନ ଟେକେ ଏହାଙ୍କର ଭୟେ
ଲକ୍ଷେ ରାଜାଙ୍କ ଉପରେ ଅଟେ ମୁଖ୍ୟଜନ
ସୋମବଂଶ ନୃପତି ଯେ ଅଟେ ଦୁର୍ଯ୍ୟୋଧନ ।
ସେ ରାଜାର ମିତ୍ର ଅଟେ ବୀରବର କର୍ଣ୍ଣ
ନତ ପୃଥ୍ୱୀ ହୁଏ ଯାକୁ ଲକ୍ଷେଶ୍ୱର ସ୍ୱର୍ଣ୍ଣ ।
ତାହାର ପାଦଭାର ନ ସହେ ବସୁମତୀ
ପ୍ରତିଦିନ ମୁଖରୁ ତା ହୁଏ ରକ୍ତ ବାନ୍ତି ।
ଭୀଷ୍ମ ଦ୍ରୋଣ ମୂଳେ ତାର ବାରକୋଟି ବଳ
ତାଙ୍କ ପାଦଭରେ ପୃଥ୍ୱୀ ହୋଏ ଟଳ ଟଳ ।
ସେହି ବଂଶେ ପାଣ୍ଡୁ ରାଜା ପୁତ୍ର ପାଞ୍ଚଗୋଟି
ଧର୍ମ ଆଂଶ୍ରେ କରିଥାନ୍ତି ଜ୍ୟେଷ୍ଠ ଯେ ଯୁଧିଷ୍ଠି ।
ତାହାଙ୍କର ସାନଭାଇ ନାମ ଭୀମସେନ
ଭୀମଠାରୁ ସାନ ଯେ ତା ନାମ ଅରଜୁନ ।
ତା ତଳୁଁ ସାନ ନକୁଳ ସାନ୍ଧି ସହଦେବ
ଏହି ପାଞ୍ଚଗୋଟି ଭ୍ରାତା ନୁହନ୍ତି ଅଭାବ ।
ଧର୍ମଠାରୁ ଜାତ ହେଲେ ଯୁଧିଷ୍ଠିର ରାୟେ
ପବନଠାରୁ ସମ୍ଭୂତ ଭୀମସେନ ହୋଏ ।
ବାସବଠାରୁ ଯେ ଜାତ ଜାଣ ଅରଜୁନ
ଅଶ୍ୱିନୀକୁମାର ତଳୁଁ ନକୁଳ ଜନମ ।
ପାଣ୍ଡୁରାଜା ଠାରୁ ଜାତ ମାଦ୍ରୀ ଦେବୀ ବଳା
ଦିଗପାଳ ସମାନ ସେ ତେଜେ ଅନର୍ଗଳା ।
ଏ ସ୍ୱରଙ୍କ ଶ୍ରେଷ୍ଠ ଧର୍ମରାଜା ଯେ ଯୁଧିଷ୍ଠି
ଏକ ଆତ୍ମା ହୋଇଥିଲେ ପୁତ୍ର ପାଞ୍ଚଗୋଟି ।
ସୋଦର ହୋଇ କୌରବେ ପାଣ୍ଡବେ ବିବାଦୀ
ପାଣ୍ଡବଙ୍କୁ ଥିବ ତୁମ୍ଭେ ଚକ୍ରରେ ଆଚ୍ଛାଦି ।
ପାଣ୍ଡୁରାଜା ବ୍ରହ୍ମହତ୍ୟା ଯିବା ପାଇଁ ପାର
କରାଇବ ରାଜସୂୟ ଯଜ୍ଞ ଗୋଟା ସାର
ଭୀମହସ୍ତେ ଜରାସନ୍ଧ ରାଜ ମରାଇବ
ଲକ୍ଷେରାଜ ନମନ୍ତ୍ରିଣ ଠାବ କରାଇବ ।
ମହାଭାରତ ଯୁଦ୍ଧକୁ ଆରମ୍ଭିବ ଚିହ୍ନି
ଶିଶୁପାଳକୁ ଚକ୍ରରେ ଛେଦିବ ଗୋସାଇଁ ।
ଦୁଷ୍ଟ ସଂହାରି ଆସିବ ତୁମ୍ଭେ ଦେବରାୟେ
ଯଦୁବଂଶ ମରାଇବେ କଳୁଆର ଭୟେ ।

ସନ୍ତ୍ରବଚନେ ପ୍ରବେଶି ହେବେ ହଣାହଣି
ବୈକୁଣ୍ଠେ ଆସିବ ଗୋଷ ନାଶି ଚକ୍ରପାଣି ।
ଶିଆଳ ଲତାରେ ତୁମ୍ଭେ ଦୋଳ ହୋଇଥିବ
ଜରାଶବର ହସ୍ତରେ ପ୍ରାଣ ହରାଇବ ।
ତେବେ ଯାଇଁ ନାରାୟଣ ଆସିବ ଏ ପୁରୀ .
ଦେବ କଷ୍ଟ ପାଶ କରି ପୃଥ୍ୱୀ ଭାର ହରି ।
ଶୁଣିଣ ଦରହସିତ ବଦନେ ମୁରାରି
ତେତେବେଳେ ଯାଇଁ ମୁଖ ଟେକ ମଧୁହାରି
ବୋଲନ୍ତି ଧାତା ମୁଖକୁ ଚାହିଁ ଦେବରାୟେ
ଏବେ ହତ୍ୟା ଦୋଷ ମୋର ଗଲାଟିକ କ୍ଷୟେ
ଏମନ୍ତ ବୋଇଲେ ଯହୁଁ ଦେବ ଜନାର୍ଦ୍ଦନ
ଅପସରି କହନ୍ତି ସେ ଚତୁରବଦନ ।
ଅନେକ ବିନୟୀ ପୁଣି ହୋଇଣ କହନ୍ତି
ହେ ନାରାୟଣ କରିବା ହେଉ କୋପ ଶାନ୍ତି
ନ ଜାଣି ଦୋଷ କଲୁ ସେ ଦୋଷ ନ ଧରିବ
ଦୋଷ କ୍ଷମା କରି ପୃଥ୍ୱୀଭାରା ଉଶ୍ୱାସିବ ।
ବ୍ରହ୍ମା ବିଷ୍ଣୁ ରୁଦ୍ର ଏକାଗର୍ଭ ଅବତାର
ଅଦଭୁତେ ପୂରିଲ ସେ ବାକ୍ୟ ନିରାକାର ।
ମୋତେ ବୋଇଲେ କରିବୁ ତୁହି ବ୍ରହ୍ମକର୍ମ
ସଂସାର ବିଧିମତରେ ଯେତେକ ବିଆଣ ।
ରୁଦ୍ରଙ୍କୁ ବୋଇଲେ ତୁମ୍ଭେ କରିବ ସଂହାର
ମହାଯୋଗୀ ବୋଲାଇବ ସଂସାର ଭିତର ।
ତୁମ୍ଭଙ୍କୁ ବୋଇଲେ ତୁମେ ଭାରା ନିବାରିବ
ଦୁଷ୍ଟ ନିବାରିବ ସନ୍ଥଜନଙ୍କୁ ପାଳିବ ।
ବେଦମନ୍ତ୍ର ପୋଥି ଆଣି ମୋର କରେ ଦେଲ
ଏ ପୋଥି ଘେନି ତୁ ସୃଷ୍ଟି କରସି ବୋଇଲ
ଯେତେ ଜୀବ ଜନ୍ତୁ କୀଟ ପତଙ୍ଗାଦି ମୂଳେ
ଏ ପୋଥି ଘେନି ତୁ ସୃଷ୍ଟି କର କାଳେ କାଳେ
ତୁମ୍ଭଙ୍କୁ ବୋଇଲେ ଚାହିଁ ପୁଣି ନିରାକାର
ବ୍ରହ୍ମା ତିଆରିଲା ସୃଷ୍ଟି ତୁହି ରକ୍ଷାକର ।
ହାନିବ ବଇରିକୁ ଯହିଁ ଯିସ ତିସ
ସନ୍ଥକୁ ପ୍ରତି ପାଳିବୁ ଦୁଷ୍ଟ କରି ନାଶ ।
ଅଦଭୁତେ ଆଜ୍ଞା ପୁଣି ଦେଲେ ନିରାକାର
ଆହେ ନାରାୟଣ ଶସ୍ତ୍ରେ ତୁମ୍ଭ ଅଧିକାର ।
ଦକ୍ଷିଣ କର ପାତିଲ ତୁମ୍ଭେ ବନମାଳୀ
ସୁଦର୍ଶନ ଚକ୍ର ଆଣି ଦେଲେ କରେ ତୋଳି ।
ପୁଣିହିଁ କହିଲେ ନିରାକାର ଦୃଢ଼ବାଣୀ
ଏହି ଚକ୍ର ଧରି ତୁମ୍ଭେ ରଖିବ ଧରଣୀ ।
ଚକ୍ରକୁ ବହିଲ ତୁମ୍ଭେ କହେ ପରମେଷ୍ଠୀ
ଆମ୍ଭେ ତିଆରିଲୁ ଏବେ ରଖ ତୁମ୍ଭେ ସୃଷ୍ଟି
ଏଥୁ ଆନକଥା ତୁମ୍ଭ ଶୁଣ ନୃପବର
ବୋଲନ୍ତି ଦେବଙ୍କୁ ଚାହିଁ ପ୍ରଭୁ ଚକ୍ରଧର ।
ଆହେ ସକଳ ଦେବତା ଦୁର୍ଗାଙ୍କୁ ସୁମର
ସଙ୍କଟନାଶିନୀ ସେହି କରିବେ ଉଦ୍ଧାର ।
ଅନାଦି ମହାମାୟା ସେ ସଙ୍କଟ ତାରିଣୀ
ଆଦ୍ୟ ଅପର୍ଣ୍ଣା ଜଗତ ଜନ ଠାକୁରାଣୀ ।
ତାଙ୍କଯୋଗେ ଯିବ ସିନା ସବୁ ତୁମ୍ଭ ଭୟ
ଦୁର୍ଗାଙ୍କୁ ଘେନ କରିବା ସକଳ ଉପାୟ ।
ରଣେ ବଣେ ସଙ୍କଟରେ ଦୁର୍ଗା ସୁମରିଲେ
ଅସୁର ଭୟ ତରିବ ଶ୍ରୀବିଷ୍ଣୁ ବୋଇଲେ ।
ଏମନ୍ତ ଆଜ୍ଞା ଯହୁଁ ଦେଲେ ଲକ୍ଷ୍ମୀପତି
ସକଳ ଦେବତା ଦୁର୍ଗା ଦୁର୍ଗା ସୁମରନ୍ତି ।
ଜୟ ତୁମ୍ଭେ ଦୁର୍ଗା ମାଗୋ ଦୁର୍ଗତିତାରିଣୀ
ଅନାଦି ଅପର୍ଣ୍ଣା ମାଗୋ ଅଟୁ ଠାକୁରାଣୀ ।
ତୁମ୍ଭେ ଉଦେ ହେଲେ ନାଶ ଯିବ ଆମ୍ଭ ଭୟ
ଜୟ ମହାମାୟା କର ଆପଦକୁ କ୍ଷୟ ।
ସଚରାଚର ମେଦିନୀ ତୁମ୍ଭେ କଲ ଜାତ
ସର୍ବଲୋକପାଳିନୀ ଗୋ ଆମ୍ଭେ ସବୁ ଶ୍ରିତ ।
ଶୁଭ ଅଶୁଭରେ ମାଗୋ ତୁମ୍ଭେ ସେ କାରଣୀ
ଭାରା ନିବାରିବା ଅର୍ଥେ ଜାତ ମା ଧରଣୀ ।
ଖଟ୍ୱାଙ୍ଗ ଡ଼ମରୁ କୁନ୍ତ ଶୂଳ ଚକ୍ର କାତି
ଗଦାମୁଦୁଗର ଯଷ୍ଟି କମାଣ ଶକତି ।
ପରଶୁ କୁଠାର ମୂଳେ ଅସ୍ତ୍ର କରେ ଶୋଭା
ଫଳା ଆଡ଼େଣି ଖଡ଼ଗ କର କମ୍ବୁ ପ୍ରଭା ।
ଅନେକ ଆୟୁଧ ତୋର ଶୋହେ ଭୁଜଦଣ୍ଡ
କରେ ଶୋଭିତ ମହିଷାସୁର କେଶ ମୁଣ୍ଡ ।
ତୁମ୍ଭର ଗର୍ଭରେ ସ୍ଥିତ ଅଶେଷ ବ୍ରହ୍ମାଣ୍ଡ
ଚଉଷଠି ଯୋଗିନୀ ଯେ ତୁମ୍ଭ ପାଶେ ରୁଣ୍ଡ
କତି ଖପର ଘଣ୍ଟା ଗୋ ଗଳେ ମୁଣ୍ଡମାଳ
ଶ୍ମଶାନବାସିନୀ ମାଗୋ ମାତଙ୍ଗିନୀ କାଳୀ ।
ଦେବତାଙ୍କ ଜନନୀ ଗୋ ଅମୂର୍ତ୍ତି ଅଲେଖା
ତୁହି ମା ଦେବୀ ଆମ୍ଭଙ୍କୁ ହୁଅ ବାହର ଶାଖା ।

ଅନାଥର ବାନ୍ଧବ ମା ଅଗତିର ଗତି
ସକଳ ପ୍ରାଣୀର ତୁ ମା ଅଟୁ ପ୍ରାଣପତି ।
ଅପ୍ରମିତ ମହିମା ତୋ କେ କହେ ଅନ୍ତକରି
କର ମାତ ଅନୁଗ୍ରହ ବାରେ ମାହେଶ୍ବରୀ ।
କଂସାସୁର ଭୟ ମାଗୋ ଲାଗିଲା ସ୍ବର୍ଗକୁ
ଆରତେ ସ୍ମରଣ ମାଗୋ କରୁଛୁ ତୁମ୍ଭଙ୍କୁ ।
ବାରେ ବାରେ ମାତ ତୁଗୋ ଆମ୍ଭଙ୍କୁ ରଖନ୍ତା
ଉପାଗତ ହେଲୁ ତୁମ୍ଭେ ଥାଉଁ ଆମ୍ଭ ମାତା ।
ସର୍ବଦା ଆମ୍ଭଙ୍କୁ ମାଗୋ ତୁମ୍ଭେ କର ରକ୍ଷା
ଏବେ ଦେବଗଣ ଆମ୍ଭେ ହୋଇଲୁ ଅରକ୍ଷା ।
ତୋହର ସହାୟ ବିନା ଏହି ବସୁନ୍ଧରୀ
କଂସର ଭୟରୁ ମାଗୋ କର ତାକୁ ପାର ।
ଆମ୍ଭଙ୍କୁ ନ ରଖିବ ଗୋ ଯେବେ ମହାମାୟେ
ପୃଥ୍ୱୀ ବିନାଶ ଗଲାଟି କହିଲୁ ନିଶ୍ଚୟେ ।
ଏସନକ ସ୍ତୁତି ଯହୁଁ କଲେ ଦେବତାଏ
ପ୍ରସନ୍ନ ହେଲେ ଅନାଦି ଆଦ୍ୟ ମହାମାଏ ।
ବୋଲନ୍ତି ଯେ ଇବଂ ପ୍ରତିବାକ୍ୟ ଭଗବତୀ
ହେ ଦେବଗଣ ତୁମ୍ଭର ନାହିଁ କିଛି ଭୀତି ।
କପାଇଁ ହୋ ତୁମ୍ଭେମାନେ ହେଉଛ ଉଚାଟ
ତୁମ୍ଭ ଭକତି ଘେନିଲି କିଛି ନାହିଁ କଷ୍ଟ ।
ଜୟ ଜୟ ଶବଦ ଯେ କଲେ ଦେବତାଏ
ରାହିକର ରାହିକର ତୁଗୋ ମହାମାଏ ।
ଅଚ୍ୟୁତ ମୁଁ ମୋର କଣ୍ଠେ କର ମା ବସତି
ତବ ପ୍ରସନ୍ନେ ଫିଟିବ ସକଳ ଦୁର୍ଗତି ।
ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ଦାତ୍ରୀ
ଜନ୍ମେ ଜନ୍ମେ ତବ ପାଦେ ଥାଉ ମୋର ମତି
ତୋର ପ୍ରସନ୍ନେ କହିବି ମୁହିଁ ହରିବଂଶ
କଳି କଳୁଷ ପାତକ ହେବ ମୋର ଧ୍ୱଂସ ।
ସଂକଳ୍ପ କରି ଏହାକୁ ଶୁଣିବେ ଯେ ପ୍ରାଣୀ
ଆୟୁଷ ବୃଦ୍ଧି ସମ୍ପଦ ପାଇବ କେ ଗଣି ।
ଅପୁତ୍ରିକା ନାରୀ ମାଗୋ ହେବେ ପୁତ୍ରବତୀ
ଅମୃତ ଭୋଗ ପାଇ ସେ ଲଭିବେ ବିଭୂତି ।
ତେତିଶ କୋଟି ଦେବତା ଥିଲେ ଯେ ସକଳ
ବସୁଧିଲେ ପୃଥ୍ୱୀହାନି ଲାଭ ଲୋକପାଳ ।
ଯଜ୍ଞରେ ଯିସ ବୃଦ୍ଧି ଯେ ସବୁ ବିଆଇଲେ
ବିଶ୍ୱକର୍ମା କରେ ବେଣୀ ଲୋମ ସମର୍ପିଲେ ।

ବ୍ରହ୍ମା ରୁଦ୍ର ଇନ୍ଦ୍ର ଆଦି ଦେବଗଣମାନ
ବେଣୀ ଲୋମ ପାଇ ତୋଷ ସବୁଙ୍କର ମନ ।
ପୃଥ୍ୱୀ ଦେଖାର ଆନନ୍ଦ କେହୁ କହିପାରି
ଦେବଗଣ ଯେ ମେଲାଣି ମାଗିଲେ ଶ୍ରୀହରି ।
ବୋଲନ୍ତି ଯେ ଶିରେ କର ଦେଇ ଦେବଗଣ
ମେଲାଣି ଦିଅ ହେ ପ୍ରଭୁ ତୁମ୍ଭେ ନାରାୟଣ ।
ସର୍ବେ ଏଥୁ ଯାଅ ବୋଲି ଆଜ୍ଞାଦେଲେ ହରି
ପୁଣ ଯୋଗନିଦ୍ରା ଆଶ୍ରାକଲେ ସେ ମୁରାରି ।
ଶୁଭଯୋଗ ଘେନି ଦେବେ ହୋଇଲେ ବାହାର
ମଙ୍ଗଳାଷ୍ଟକ ପଢ଼ିଲେ ବୃହସ୍ପତି ସାର ।
ନାନା ଛନ୍ଦେ ଗୀତ ବାଦ୍ୟ ଶୁଭଇ ମଧୁର
ଟମକ ନିଶାଣ ଆଦି ବାଜେ ଘୋର ତୂର ।
ମର୍ଦ୍ଦଳ ଝାଞ୍ଜ ତବଲ ମୁର୍ଚ୍ଛନା ମୃଦଙ୍ଗ
ଶଙ୍ଖ କୋମଳ କାହାଳୀ ଭେରୀ ବାଦ୍ୟରଙ୍ଗ ।
ଅଧାଟି ଅଧା ଶାରଙ୍ଗୀ ଆଦି ଅଳାବେଣୀ
ରୁଦ୍ରବୀଣା ବ୍ରହ୍ମବୀଣା ମୁର୍ଚ୍ଛନାଦି ଧ୍ୱନି ।
କାହାଳ ମୃଦଙ୍ଗ ତାଳ ଗିନି ଶିଙ୍ଘାନାଦ
ମହୁରି ଝଜଘୋଷ ଯେ ଆଦି ନାନା ବାଦ୍ୟ ।
ଲକ୍ଷେ କୋଟି ବାଜଣା ଯେ ବାଜେ ଅପ୍ରମିତ
ଆନନ୍ଦ ହେଲେ ବ୍ରହ୍ମାଣ୍ଡ ଖଣ୍ଡଯାକ ସାତ ।
ମେଘ ଡମ୍ବରୁ ଝାଲାଖ ଏକଲକ୍ଷ ଯୋଖା
ଆଲଟ ଚମଳ ଝୁଲି ମୟୂରର ପଙ୍ଖା ।
ଶ୍ୱେତ ବସ୍ତ୍ର କଳା ଧଳା ନୀଳ ରଙ୍ଗଛବି
ଲମ୍ବନ୍ତି ଶ୍ୱେତ ଚାମର ହୋଇ ପନ୍ତ ପନ୍ତ ।
କର୍ପୂର ଆଗର ଧୂପ ଦୀପ ଧୂପକାଠି
ସୁବାସିତ ସୁଗନ୍ଧରେ ଆମୋଦଇ ସୃଷ୍ଟି ।
ତେତିଶ କୋଟି ଦେବତା ଆଦି ବସୁନ୍ଧରୀ
ଛତ୍ର ଚାମର ଧରାଇ ଯାନ୍ତି ଯେଝାପୁରୀ ।
ଦେବ ଗନ୍ଧର୍ବ କିନ୍ନର ପଢ଼ିହାରୀ ପଣେ
ଆଡ଼ୋ ଆଡ଼ୋ ଡାକ ଡର୍ହିଁ ପଡ଼େ ଅନୁକ୍ଷଣେ
ବିବୁଧ ଗଣେ ଖଟନ୍ତି ଦେବ ପଶୁପତି
ଶୁଣ ପରୀକ୍ଷ ବଦନ୍ତି ଶୁକ ମହାଯତି ।
.ସମାବେଶହେ ଗଲେ ବେମ ଘେନି ଦେବଗଣ
ଜୟଧ୍ୱନିରେ ଦୁନ୍ଦୁଭି ବାଦ୍ୟ ବଜାଇଣ ।
ମେରୁମେଖଳେ ପ୍ରବେଶହେଲେ ଦେବେ ଯାଇ
ବିଧାତା ଆଦି ତେତିଶକୋଟି ଆଗହୋଇ ।

ହେମ ଘେନ ବିଶ୍ୱାକର୍ମା ବେଗେ ଚଳିଗଲା
ମେରୁପରେ ଯତ୍ନକରି ସଭାଏ ରଚିଲା ।
ସେସଭାଗୋଟାକୁ କିସ ଦେବା ଯେ ଉପମା
ଆପେ ନିର୍ମାଣ କରିଛି ଯାହା ବିଶ୍ୱକର୍ମା ।
ସ୍ୱଭାବେ ତ ଦେବଗଣେ ମିଳିଛନ୍ତି ତହିଁ
କିସ କହିବ ମାନବ ଦେହଗୋଟା ବହି ।
ସେ ସଭାର ଆୟତନ ବିଶାଶେ ଯୋଜନ ।
ହୀରା ମଣି ମାଣିକ୍ୟରେ ମୁକୁତା ବସାଣ ।
ସ୍ୱର୍ଣ୍ଣ ଜଡ଼ିତ ମର୍କତ ପାବଛର ଶୋଭା
ଅଷ୍ଟରତ୍ନରେ ନିର୍ମିତ ଆୟତନ ସଭା ।
ମଣି ମାଣିକ୍ୟର ରୁଅ ସ୍ତମ୍ଭ ସୁନା ସୂତା
କୋଟି କୋଟି ଲାଗିଅଛି ତହିଁ ଗଜ ମୁକ୍ତା ।
କୋଟିଏ ବନ୍ଧାଣି ଘେନ ଆପେ ବିଶ୍ୱକର୍ମା
ସଭା ନିର୍ମାଣି କଲେକ ବିଷ୍ଣୁପୁର ସୀମା ।
ହୀରାପାଳା ବଇଦୁର୍ଯ୍ୟ ବତା ରୁଅ ଶେଣୀ
ଗଣ୍ଡିକେ ଲମ୍ବୁଛି ପୁଞ୍ଜି ମୁକୁତା ଖଞ୍ଜଣୀ ।
ଝିନ ବସନ ଚନ୍ଦୁଆ ମଣ୍ଡିତ କାଞ୍ଚନ
ବିବିଧ ଚିତ୍ରଳ ମାନ ଉଡ଼ଇ ଗଗନ ।
ଇନ୍ଦ୍ର ଗୋବନ୍ଦ ଚାନ୍ଦୁଆ ସୂଚିକର୍ମ ଟେରା
ଖଞ୍ଜା ମୂଳରେ ଖଞ୍ଜିଣ ମୁକ୍ତା କେରା କେରା ।
ବ୍ରହ୍ମା ଇନ୍ଦ୍ର ରୁଦ୍ର ଆଦି ଯେତେ ଦେବଗଣ
ଯେ ଯାହାର ସ୍ଥାନ ମାଡ଼ ସମସ୍ତେ ବସିଣ ।
ତେତିଶ କୋଟି ଦେବଙ୍କ ସଙ୍ଗତରେ ଘେନ
ମେରୁ ଶିଖରରେ ସଭାକଲେ ପଦ୍ମଯୋନ ।
ବୋଲନ୍ତି ମାଳାକାରକୁ ସ୍ୱର୍ଗେ ଶଚୀପତି
ସୁବାସିତ ପୁଷ୍ପ ଘେନ ଖଟିଥିବୁ ନିତି ।
ଚମ୍ପା ନାଗେଶ୍ୱର ମଲ୍ଲୀ ବକୁଳ ପାଟଳ
ଲମ୍ବାଇବୁ ସୁବାସିତ ଗୁନ୍ଥି ପୁଷ୍ପ ମାଳ ।
ଗଜମୁକୁତାର ଝରା ମାଣିକ୍ୟ ମିଶାଇ
ଝରକାରେ ତଳକତ ଲମ୍ବାଇବୁ ନେଇ ।
ଅନେକ ଶ୍ୱେତ ଚାମର ଖଞ୍ଜି ଖଞ୍ଜାମୂଳେ
ସିଞ୍ଚିବୁ ସୁବାସ ପାଣି ମିଶାଇଣ ଜଳେ ।
ଯେବଣ ସଭାରେ ବସି ବୃଦ୍ଧ ହୋଏ ଯୁବା
ସେ ସଭା ମହିମା କିସ ବ୍ୟାଖ୍ୟାନ କରିବା ।
ଧର୍ମକଥା ବିନୁ ତହିଁ ଅନ୍ୟକଥା ନାହିଁ
ତେଣୁ କରି ସେ ସଭାକୁ ସୁଧର୍ମା କହଇ ।

ସଭାସ୍ଥାନ ପରିମଳ ଦେଖି ସୁରପତି ;
ଆସ୍ଥାନେ ବସେ ଦକ୍ଷିଣ ଭାଗ ସ୍ତମ୍ଭ କତି ।
ଆସ୍ଥାନର ମଧ୍ୟେ ଅଛି ରତ୍ନ ସିଂହାସନ ।
ତହିଁ ଉପରେ ରଖିଲେ ଆଣିଥିବା ହେମ ।
ଅଷ୍ଟରତ୍ନେ ଗଜଦନ୍ତ ପଲଙ୍କ ନିବାଡ଼
ହଂସତୁଳୀ ତୂଳୀ ଉପରେ ଶେଯଗୋଟା ପାରି ।
ନେତ ପାଟର ସିନ୍ଦୁଆ ତହିଁ ବିଛାଇଲେ
କର୍ପୂରର ଗୁଣ୍ଡି ତହିଁ ଉପରେ ସିଞ୍ଚିଲେ
ଉପରେ ଟାଣିଲେ ଇନ୍ଦ୍ର ଗୋବନ୍ଦ ଚାନ୍ଦୁଆ
ଟେରା ରୂରି ପାଖେ ଦଶଅବତାର ନୂଆ
ଭାର ନିବାରଣ ଅର୍ଥେ ଆଣିଲେ ସେ ହେମ
ତହୁଁ ଅବତାର ହେବେ କୃଷ୍ଣ ବଳରାମ ।
ରଙ୍ଗାବତାରୁ ହୋଇବେ ହରି ରାମ ରଙ୍ଗେ
ଗୋପରେ ବଢ଼ିବେ ସେହି ଗୋପାଳଙ୍କ ସଙ୍ଗେ
ସମ୍ପୂର୍ଣ୍ଣ ଅଷ୍ଟବରଷେ ଅଷ୍ଟମଲ୍ଲ ମାରି
ମଥୁରା ବିଜେ କରିଣ କଂସକୁ ସଂହାରି ।
କଣବେ ସେ ପୃଥିବୀର ଭାର ନିବାରଣ
ବିଷ୍ଣୁ ଆଜ୍ଞା ପ୍ରମାଣେ ତା ରଖିଲେ ଯତ୍ନେଣ ।
ଆଜ୍ଞା ପ୍ରମାଣେ ହେମକୁ ଥୋଇ ଯତ୍ନକରି
ଯେ ଯାହାରେ ରହିଲେ ସେ ହେମ ସେବାକରି
କର୍ପୂର ବଉଁଆ ଲାଗି ଦୀପଧୂପ ଭାତି
ବିହୁଡ଼ ଇନ୍ଦ୍ର ଉଚ୍ଚଆ ଘେନ ନିତ ଖଟି ।
ନିରତେ ବାଜେ ନାନାଦ ବାଦ୍ୟଯନ୍ତ୍ର ମାନ
ତାଳ କଂସାଳ ମୃଦଙ୍ଗ ଭେରୀ ବିଦ୍ୟମାନ ।
ଏ ବିଧିରେ ଦେବତାଏ ଖଟନ୍ତି ଆବୋରି
ବେନି ହେମକୁ ଆରାଧି ଜଗାଇ ପାହାରି ।
ଏହା ମୁନ ମୁଖୁ ଶୁଣି ପରୀକ୍ଷିତ ରାଜା
ଶୁକ ମୁନଙ୍କ ଚରଣେ କଲେ ବିଦ୍ୟ ପୂଜା ।
ହେମୁନ ସେ ହେମ କଥା କହିଲେ ଯେମୋତେ
ଯେତେ କହିଲ ମୁନ ନଥାଣ୍ଟେ ମୋରଶ୍ରୋତେ
ହରିବଂଶ ଶୁଣି ମୋର ଫିଟିଯିବ ଭ୍ରାନ୍ତ
ତବ ମୁଖୁଁ ଶୁଣି ମୁହିଁ ପାଇବି ମୁକତି ।
ଅଚ୍ୟୁତଦାସ ନିରତେ କରେ ବିଷ୍ଣୁସେବା
ପ୍ରସନ୍ନ ହୋଇ ସୁଗତି ଜ୍ଞାନ ପ୍ରଭୁ ଦେବା ।
ଶ୍ରୀହରିବଂଶ ପୁରାଣ ଆଦ୍ୟ ଖଣ୍ଡ କଥା
ଶୁକମୁନ ପରୀକ୍ଷିତ ସଂବାଦ ବ୍ୟବସ୍ଥା ।

କଂସାସୁର ଜନ୍ମ ବାଣୀ ହୋଇଲା ସମ୍ପୂର୍ଣ୍ଣ
ଅଚ୍ୟୁତାନନ୍ଦ ଦୋଷ ନ ଧର ସୁଜ୍ଞଜନ ।
ଏହ୍ଠାରୁ ଦଗବଜେ ସଂପ୍ରର୍ଣ୍ଣେ କହିଲି
ଦ୍ୱିତୀୟ ଖଣ୍ଡରେ ପୁଣି ଶ୍ରଦ୍ଧା ବଳାଇଲି ।

ମହାରସ ହରିବଂଶେ କୃଷ୍ଣଜନ୍ମ ବାଣୀ
ଅଚ୍ୟୁତ ଦାସ କହଇ ଗୀତରେ ବଖାଣି ।
କଂସଜନ୍ମ ଦଗବଜେ ସଂପୂର୍ଣ୍ଣ ହୋଇଲା
ଅଚ୍ୟୁତଦାସ କହେ ଶ୍ରୀହରି ସୁମରିଲା ।

ସାମସ୍ୟାପିରଣେଭଙ୍ଗୋ ମୁନେରପିମତିଭ୍ରମ
ଯଦି ଶୁଦ୍ଧମଶୁଦ୍ଧଂ ବା ମମ ଦୋଷ ନ ଦୀୟତେ

—ଇତି ଶ୍ରୀ ହରିବଂଶ ପ୍ରଥମଖଣ୍ଡ ସଂପୂର୍ଣ୍ଣ ।—



ମୁଦ୍ରାକର—ଜାନକୀ ମହାନ୍ତି, ଶଶିକା ପ୍ରିଣ୍ଟିଂ ପ୍ରେସ୍, କଟକ-୨

